Dr. Dinanath Pathy

**BHAVAGHURA BHAVANATH**

Stories of Festival of India
1992

**Published by:**
Executive Director,
Sunanda Pathy Foundation
HIG 6/3,Chandrasekhar Pur Housing Board Colony
Phase - 1
Bhubaneswar - 751 016

**Cover:**
Ramahari Jena

**Serigraphy:**
Balakrishna Nanda

**Distributor:**
Gayatri,
Kalpana Road,
Bhubaneswar - 751 014

**D.T.P.**
Process 'n' Process
Laxmisagar, BBSR. 751 006

**Printed at:**
Sovan Printers
Acharya Vihar,Bhubaneswar.

**Price : Paper back Rs. 40.00**

ଡକ୍ଟର ଦିନନାଥ ପାଠୀ

# ଭବଘୂରା ଭବନାଥ

ଭାରତ ଉତ୍ସବ କଥା

୧୯୯୨

ପ୍ରକାଶକ

ନିର୍ବାହୀ ନିର୍ଦ୍ଦେଶକ

ସୁନନ୍ଦା ପାଠୀ ଫାଉଣ୍ଡେସନ୍

ଏଚ.ଆଇ.ଜି ୬/୩

ଚନ୍ଦ୍ରଶେଖରପୁର ହାଉସିଂ ବୋର୍ଡ଼, ଫେଜ୍ - ଏକ

ଭୁବନେଶ୍ୱର - ୭୫୧ ୦୧୬

ପ୍ରଚ୍ଛଦ

ରାମହରି ଜେନା

ସେରିଗ୍ରାଫ

ବାଳକୃଷ୍ଣ ନନ୍ଦ

ପରିବେଷକ

ଗାୟତ୍ରୀ

କଳ୍ପନା ରୋଡ଼

ଭୁବନେଶ୍ୱର - ୭୫୧ ୦୧୪

ମୁଦ୍ରଣ

ଶୋଭନ ପ୍ରିଣ୍ଟରସ୍

ଆଚାର୍ଯ୍ୟ ବିହାର ଭୁବନେଶ୍ୱର

ମୂଲ୍ୟ

ପେପରବ୍ୟାକ୍ ଟ.୪୦

ଦିନନାଥ ପାଠୀ (ଜନ୍ମ ୧୯୪୨)। ବଡ଼ ଭାଇନା ଲୋକନାଥ ପାଠୀଙ୍କ ଦିଗପହଣ୍ଡିର ଶିଳ୍ପକଳା ମନ୍ଦିରରେ ଶିକ୍ଷାନବିସ୍ ଭାବେ ଚିତ୍ରକର ଜୀବନ ଆରମ୍ଭ। ପରେ ଖଲିକୋଟ କଳା ବିଦ୍ୟାଳୟରୁ ଚିତ୍ରକଳାରେ ଡିପ୍ଲୋମା। ଉତ୍କଳ ବିଶ୍ୱବିଦ୍ୟାଳୟରୁ ଇତିହାସରେ ଏମ୍.ଏ. ଏବଂ ଓଡ଼ିଶୀ ଚିତ୍ରକଳାରେ ପି.ଏଚ୍.ଡ଼ି.। ବିଶ୍ୱଭାରତୀରୁ କଳା ଇତିହାସରେ ଦ୍ୱିତୀୟ ପି.ଏଚ.ଡ଼ି.,ସୁଇଜରଲ୍ୟାଣ୍ଡର ମ୍ୟୁଜିୟମ୍ ରିଟ୍‌ବର୍ଗ ଏବଂ ହରମନ୍ ସ୍ନାଇଡ଼ର ଅନୁଷ୍ଠାନରୁ ଯଥାକ୍ରମେ ମ୍ୟୁଜିୟମ୍ ଡ଼ିସ୍‌ପ୍ଲେ ମେଥଡ଼ସ୍ ଏବଂ ବିଜ୍ଞାପନ ବିଜ୍ଞାନରେ ସ୍ୱତନ୍ତ୍ର ତାଲିମ। କେନ୍ଦ୍ରୀୟ ବିଦ୍ୟାଳୟରେ ଚିତ୍ର ଶିକ୍ଷକ, ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ କଳାବିଭାଗର କ୍ୟୁରେଟର। ପର୍ଯ୍ୟଟନ ବିକାଶ ନିଗମରେ ପ୍ରକାଶନ ଓ ବିଜ୍ଞାପନ ବିଭାଗର ଡ଼ିଭିଜନାଲ୍ ମେନେଜର ଏବଂ ଏବେ ବିଭୂତି କାନୁନ୍‌ଗୋ ଚାରୁ ଓ କାରୁ କଳା ମହାବିଦ୍ୟାଳୟର ଅଧକ୍ଷ। ବହୁ ଜାତୀୟ ଓ ଆନ୍ତର୍ଜାତୀୟ କଳା ପ୍ରଦର୍ଶନୀର ଡ଼ିଜାଇନର ଭାବେ ସୁଇଜରଲ୍ୟାଣ୍ଡ, ସୁଇଡ଼େନ, ଆଗର ସୋଭିଏତ୍ ୟୁନିୟନ୍, ଇଂଲଣ୍ଡ, ଜର୍ମାନୀ, ଫ୍ରାନସ୍ ଓ ଇଟାଲୀ ପ୍ରଭୃତି ଦେଶ ଭ୍ରମଣ। ମ୍ୟୁଜିୟମ୍ ରିଟ୍‌ବର୍ଗ ଆନୁକୂଲ୍ୟରେ ଓଡ଼ିଶାର ଚିତ୍ରକଳା ସଂପର୍କରେ ବହୁ ବହି ପ୍ରକାଶିତ। ବହୁ ରାଜ୍ୟ ଓ ଜାତୀୟ କଳା ଅନୁଷ୍ଠାନର ସଭ୍ୟ, ଜାତୀୟ ଲଳିତକଳା ଏକାଡ଼େମୀର କାର୍ଯ୍ୟକାରୀ ସମିତିର ସଭ୍ୟ, କେନ୍ଦ୍ର ସଂସ୍କୃତି ବିଭାଗ, ବ୍ରିଟିଶ କାଉନ୍‌ସିଲ, ନେହରୁ ଟ୍ରଷ୍ଟ (ଭିକ୍ଟୋରିଆ ଆଲବର୍ଟ ମ୍ୟୁଜିୟମ୍,ଲଣ୍ଡନ)ର ଫେଲୋସିପ୍, ଗବେଷଣା ପାଇଁ ଏ.ଏଲ୍.ବାସମ୍ ସ୍ମୃତି ପୁରସ୍କାର। ଚିତ୍ରକଳାରେ ରାଷ୍ଟ୍ରପତି ରଜତ ଫଳକ ପୁରସ୍କାର। ଜାତୀୟ ଚିତ୍ରକଳା ପ୍ରଦର୍ଶନୀର ବିଚାରକ, ସପ୍ତମ ବିଶ୍ୱ ଚିତ୍ରକଳା ପ୍ରଦର୍ଶନୀ (ତ୍ରିନାଲେ)ର ଭାରତୀୟ କମିଶନର, କାଏରୋ ଠାରେ ଅନୁଷ୍ଠିତ ବାଇନାଲେ ର କମିଶନର, ଚିତ୍ରକଳା ସହିତ କଳା ଇତିହାସରେ ଗବେଷଣା ଓ ଓଡ଼ିଆ ସାହିତ୍ୟେ ସୃଷ୍ଟି।

# ଲେଖକଙ୍କ ପ୍ରକାଶିତ ବହି

ଜର୍ମାନ

* ORISSA KUNST AND KULTUR IN NORDOST INDIEN
  (With Dr. Eberhard Fischer and Dr Silakant Mohapatra)
* GITA UND HIRA DORF IN INDIEN
  (With Eberhard Fischer and Barbara Fischer)
* GITA WILL TANZERIN WERDEN
  (With Eberhard Fischer and Barbara Fischer)
* DIE PERLENKETTE DEM GELIEBETEN
  (With Dr. Eberhard Fischer)

ଇଂରାଜୀ

* TRADITIONAL PAINTINGS FROM ORISSA
* MURAL PAINTIANGS IN ORISSA
* JAGANNATHA AND THE ORIYA PAINTERS
* CULTURAL HERITAGE OF ORISSA
  (With P.C. Panda and B.K. Rath)
* SARAT CHANDRA DEBO
  (Contemporary Artists of Orissa Series)
* AVANTI
  (Anthology of Poems)
* PAINTED GODS AND GODDESSES OSAKOTHI SHRINES, THEIR RITUALAS AND THEIR PAINTERS IN SOUTH ORISSA
  (With Dr Eberhard Fischer)
* SAURA WALL PAINTINGS
* KONDH BRONZES
* TRIBAL ART, PRIMITIVISM AND MORDEN RELEVANCE
* ORISSA MURALS (TOURISM MONOGRAPH)

JAYADEVA AND GITAGOVINDA IN ORISSAN TRADITIONS
  (With Dr. Bhagabn Panda)

* ESSENCE OF ORISSAN PAINTINGS

ଓଡ଼ିଆ

* ଶିବାନନ୍ଦ ଓ ଦିବ୍ୟଜୀବନ
* ଦିବ୍ୟଜୀବନ ଭଜନାବଳୀ
* ଭଗବଦ୍‌ଗୀତା (ଅନୁବାଦ)
* ଚିୟତେ ଇତି
* ଆଦିମ ମଣିଷର କଳା
* ଓଡ଼ିଶାର କଳା ଓ ସ୍ଥାପତ୍ୟ
* ଓଡ଼ିଶାର ଲୋକକଳା
* ନୀଳହ୍ରଦର ଚିତ୍ରକର
* ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରେ
* ଭବଘୂରା ଭବନାଥ

ଭବନାଥଙ୍କ ଘନିଷ୍ଠ ବନ୍ଧୁ
ଓ ମୋର ପୂଜ୍ୟ
ପ୍ରଫେସର୍ ରାଜେନ୍ଦ୍ର ପ୍ରସାଦ ଦାସ
ଏବଂ ତାଙ୍କ ସହଧର୍ମିଣୀ
ପୂଜ୍ୟା ଶ୍ରୀମତୀ ଉତ୍କଳିକା ଦାସଙ୍କ ପାଇଁ

## ସୂଚୀ

ଭବନାଥ ମୋର ଅତି ଅନ୍ତରଙ୍ଗ। ମୁଁ ତାଙ୍କ କାୟାର ଛାୟାଭଳି। ସେ ତାଙ୍କର ଭଲ ମନ୍ଦ, ଦୁଃଖ, ସୁଖ, କ୍ରନ୍ଦନ, ପ୍ଲାବନ ସବୁକଥା ମୋତେ ହୃଦୟ ଖୋଲି କହନ୍ତି। ଏହି ବହିର କାହାଣୀ ଗୁଡ଼ିକ ତାଙ୍କରି କହିବା କଥା, ଅଙ୍ଗେ ନିଭାଇବା କଥା। କେବେଠୁଁ ସୁଇଡ଼େନରେ ଭାରତ ଉତ୍ସବ ଶେଷ ହୋଇଯାଇଛି। ଏ ଭିତରେ ପାଞ୍ଚ ଛ ବର୍ଷ ବିତି ଯାଇଛି। ଭବନାଥଙ୍କ ଜୀବନରେ ବହୁ ଝଡ଼ ଝଞ୍ଜା ବହି ଯାଇଛି। କିନ୍ତୁ ଭବନାଥ ଭାଙ୍ଗି ପଡ଼ି ନାହାନ୍ତି। ବାଲଟିକ୍‌ର ଶୀତଳ ସ୍ପର୍ଶ ଆଜି ବି ତାଙ୍କ ଭିତରେ ସତେଜ। ସେ ଏହି କାହାଣୀ ଗୁଡ଼ିକ କହିଲା ବେଳେ ମୁଁ ତାଙ୍କ ଆଖିକୁ ଚାହେଁ। ମନେହୁଏ ଦୂର ଦିଗନ୍ତରେ ସୂର୍ଯ୍ୟଟିଏ ଉଇଁ ଉଠୁଛି। ଭବନାଥ ଖୁବ୍ ଏକା। ଟିକିଏ ସ୍ନେହ ପାଇଲେ ଆପଣାର ହୋଇଯାଆନ୍ତି। ଏଇମିତି ଗୋଟିଏ ମୁହୂର୍ତ୍ତରେ ତାଙ୍କ ସହିତ ମୋର ଦେଖା। ଯେଉଁମାନଙ୍କ ହୃଦୟକୁ ଭବନାଥଙ୍କ ଗପଗୁଡ଼ିକ ଛୁଇଁବ ମୁଁ ସେମାନଙ୍କ ପାଇଁ ହିଁ ଲେଖିଛି। ଭବନାଥ ଓ ସେମାନଙ୍କ ଭିତରେ ମୁଁ କେବଳ ଛୋଟ ସେତୁଟିଏ।

ଲେଖକ

# ଭବଘୂରା ଭବନାଥ

ଭବନାଥ ଜଣେ ଆନ୍ତର୍ଜାତିକ ଶିଳ୍ପୀ ଭାବେ ପ୍ରତିଷ୍ଠା ଅର୍ଜନ କରିସାରିଲେଣି। ଆଜି ସୁଇଡ଼େନରେ ତ କାଲି ମସ୍କୋରେ। ତା ଆରଦିନ ଜୁରିକ୍‌ରେ ତ ତା ପରଦିନ ଦିଲ୍ଲୀରେ। ଏଠି ପ୍ରଦର୍ଶନୀତ ସେଠି ମିଟିଙ୍ଗ୍। ଏଠି ଭାଷଣ ତ ସେଠି ସମ୍ଭାଷଣ। ସବୁଦିନେ କିଛିନା କିଛି ଲାଗିରହିଛି। ସମସ୍ତେ ଭବନାଥକୁ ଦେଖି ହିଂସା କରୁଛନ୍ତି। ଦଳେ କହୁଛନ୍ତି, ଶଳା ଖୋସାମତି କରି ଉପରକୁ ଉଠି ଯାଉଛି। ତା ହାତରେ କିଛି ହୁଏନି। ଖାଲି ବାହାପିଆଟା। ଦିପଦ ଇଂରାଜୀରେ କଥା କହୁଛି ବୋଲି ପାରି ଯାଉଛି। ମରୁଭୂମିରେ ଗବଗଛ ଦ୍ରୁମ ବୋଲାଉଛି। ଭବେଶ ସିହ୍ନା ଭଳି ପୋଟ୍ରେଟ୍ ଆଙ୍କିପାରିବ ନା ବ୍ରଜ ମହାପାତ୍ର ଭଳି ମୂର୍ତ୍ତି ଗଢ଼ି ପାରିବ? ଆଜିକାଲି ଯୁଗକୁ ଠିକ୍ ସୁହେଇଛି। କ'ଣ ନା ମଡ଼ର୍ଣ୍ଣ ଆର୍ଟ। ନାଲି ନୀଳ କରି ଯାହା ଆଙ୍କିଲେବି ଚଳିଲା। ଏଠି ସେଠି ଧରା ଧରି କରି ଗଣ୍ଡେ ଦି ଗଣ୍ଡା ପ୍ରାଇଜ୍ ବି ଯୋଗାଡ଼ କରି ଦେଇଛି। ଆଜିକାଲି ପ୍ରାଇଜ୍ ପାଇବାରେ ବି କିଛି ବାହାଦୁରି ନାହିଁ। କିଏ କେଉଁଠୁ ଆସୁଛି ଜଜ୍‌ହେଇ ଜାଣିଲେ ହେଲା। ଖଣ୍ଡିଆ ଇଂରାଜୀରେ ଦି ଚାରି ପଦ କଥା କଳା ସଂପର୍କରେ, ଆର୍ଟିଷ୍ଟ ମାନଙ୍କ ସଂପର୍କରେ, ଏକାଡ଼େମୀ ସଂପାଦକଙ୍କ ମନମୁଖୀ କାରବାର ସଂପର୍କରେ, ହୁଏତ ବିଅର୍ କିମ୍ବା ହୁଇସ୍କି ବା ରମରୁ ମୁନ୍ଦେ ମୁନ୍ଦେ ପିଇଦେଇ ପିକାସୋ ଠାରୁ ଆରମ୍ଭ କରି ପୀତବାସଙ୍କ ପର୍ଯ୍ୟନ୍ତ ଏକା ନିଶ୍ୱାସରେ ସମଗ୍ର କଳା ଚର୍ଚ୍ଚାକୁ ଏକାଥରେ ପାକୁଳେଇ ପାରିଲେ ହେଲା।

ଯିଏ ଯାହା କହୁପଛେ, ଭବନାଥ ଲଣ୍ଡନରେ ବ୍ରେକ୍‌ଫାଷ୍ଟ କରୁଛନ୍ତି ତ ପ୍ୟାରିସ୍‌ରେ ଲଞ୍ଚ୍ ଖାଉଛନ୍ତି। ଦଳେ ଭାବୁଛନ୍ତି, ଭବନାଥ ହେଇ

ଫରେନ୍ ବାହାରିଲି କହିଦେଇ ଦିଲ୍ଲୀ ଜଗନ୍ନାଥ ମନ୍ଦିର ବାରଣ୍ଡାରେ ଶୋଇ ଶୋଇ ମାସେ ପନ୍ଦରଦିନ ପରେ ଭୁବନେଶ୍ୱର ଫେରିଆସି ବିଭିନ୍ନ ହାଓ୍ୱାମରା କଥା ଶୁଣାଉଛନ୍ତି। ଶଳା ! ପବନାଟା, ବାତ୍ରାଟା, ଥୋଡ଼େ ଡ଼ହରାମି ଶିଖିଗଲାଣିତ, କଣ୍ଢେଇ ଭଳି ବାହାଦିଟାକୁ ଏକା ସାଙ୍ଗରେ ଉପରକୁ ଉଠେଇ ଭ୍ରୂକୁଞ୍ଚନ କରି ଓଠ ଦୁଇଟିକୁ ଧନୁ ଭଳି ତଳକୁ ବଙ୍କାକରି କଥା କହିବା ଶିଖିଗଲାଣିତ, ଦିଲ୍ଲୀରୁ ଫେରିଲା ନା ଲଣ୍ଡନରୁ ଫେରିଲା ଜାଣିବା ମୁସ୍କିଲ ହେଇ ପଡୁଛି। ନ ଦେଖିଲା ଓଉ ଛପଡ଼ା। ଥୋକେ କହୁଛନ୍ତି, ଆମେ ଲଣ୍ଡନ ଦେଖିଚୁ ଯେ ତା ଡ଼ହରାମି ଧରିନେବୁ।

କାହାକୁ କ'ଣ ଲାଗିପାରେ କିନ୍ତୁ ଏକଥା ସତ ଯେ, ଭବନାଥ ଆଉ ଆଗଭଳି ନାହାନ୍ତି। ଧୋତି, ପଂଜାବୀ ପିନ୍ଧି କଳିଙ୍ଗ ଶିଳ୍ପୀ ଭଳି ଦେଖାଗଲେତ ହେବନି। ଚେହେରାଟା ମଧ ଆନ୍ତର୍ଜାତିକ ଧାରାର ହେବା ଦରକାର। ଭବନାଥ ନିଜକୁ ନୂଆ ଢ଼ଙ୍ଗରେ ସଜେଇ ନେଲେଣି। ତେଲ ନପାଇ ମୁଣ୍ଡ ବାଳଯାକ କହରା ହେଇ ଗଲାଣି। ବୟସର ପ୍ରଭାବରେ କିଛିଟା ଗ୍ରେ ଧରିଲାଣି। ବେକ ତଳକୁ ବାଳ ଲମ୍ବିଆସି କାନ୍ଧ ଉପରେ ପଡ଼ିଲାଣି। ମୁହଁରେ ଦାଢ଼ିଗୁଡ଼ିକ ଧଳାକଳା ମିଶି ମ୍ୟୁଜିୟମ୍‌ର ଆଣ୍ଟିକ ଭଳି ଦିଶୁଛି। ଜିନ୍ ପେଣ୍ଟ ଉପରେ ଖଦଡ଼ ପଂଜାବୀ ପ୍ରାଚ୍ୟ ଓ ପାଶ୍ଚାତ୍ୟର ଅପୂର୍ବ ସମନ୍ୱୟ ସୃଷ୍ଟି କରୁଛି। କାନ୍ଧରେ ଚମଡ଼ାର ବେଗ୍ ଓ ପାଦରେ ହଳେ କୋହ୍ଲାପୁରୀ ଚପଲ।

ଅନ୍ୟମାନେ ତ ଭବନାଥଙ୍କ ଉପରେ ସହଜେ ଖପା, ଭବନାଥ ନିଜେ ବି ନିଜ ଉପରେ ଷୋଳଣା ଖୁସି ନୁହଁନ୍ତି। ସେ ନିଜେ କେବେ କଳ୍ପନା କରିନଥିଲେ ଯେ, ସେ ଏଭଳି ଏକ ବିପଦ୍‌ଜନକ ଅବସ୍ଥାରେ ପହଞ୍ଚିବେ, ଯେଉଁଠୁ ସହଜରେ ଫେରିବାର ରାସ୍ତା ନାହିଁ। ଅଛି କେବଳ ତଳେ ଖସି କଚଡ଼ା ଖାଇବାର ଏକ ମାତ୍ର ରାସ୍ତା। ଥରେ ଖସିଲେ ଆଚ୍ଛାକରି କଚଡ଼ା ଖାଇ ହାତ ଗୋଡ଼ ଭାଙ୍ଗିଯାଇପାରେ। ଜୀବନ ସାରା ଲାଗି ଅକର୍ମଣ୍ୟ ହୋଇଯିବାଟା କିଛି ଅସ୍ୱାଭାବିକ ନୁହେଁ କିନ୍ତୁ ଏବେ କିଛି ଗୋଟାଏ ଉପାୟ କରି ଖସି ଯିବାର ରାହା ବି ନାହିଁ,

ଇଚ୍ଛା ବି ନାହିଁ ଆର୍ନ୍ତଜାତିକ ପ୍ରତିଷ୍ଠା ଠିକ୍ "ଦିଲ୍ଲୀ କା ଲଡ୍ଡୁ ଭଳି"। ଯେ ନ ଖାଇଛି ସେ ପସ୍ତାଉଛି, ଯେ ଖାଇଛି ସେ ବି ପସ୍ତଉଛି।

ଭବନାଥଙ୍କ ବାଲ୍ୟବଂଧୁ ବେଣୁଧର କୋରାପୁଟ ଜିଲ୍ଲାର ଗୁଣପୁର ହାଇସ୍କୁଲରେ ଡ୍ରଇଁମାଷ୍ଟର୍। ମାସକୁ କଟା କଟି ହେଇ ସାଢ଼େ ଚାରିଶ ଟଂକା ଦରମା ପାଆନ୍ତି। ଘରେ ସ୍ତ୍ରୀ, ଦୁଇପୁଅ, ଗୋଟିଏ ଝିଅ। ସ୍କୁଲରେ ଡ୍ରଇଁ ପାଠ ପଢ଼ା ଆରମ୍ଭ ହେଉ ହେଉ ଶେଷ ହେଇଯାଏ। ଆଜିକାଲି ଯାହା ଡ୍ରଇଁ। କାହାର ହେଲେ ସେ ପ୍ରତି ଭ୍ରୁକ୍ଷେପ ନାହିଁ ଡ୍ରଇଁ ଗୋଟିଏ ପାଠ! ଡ୍ରଇଁ ପଢ଼ି ଜୀବନରେ କ'ଣ ବା ହେଇପାରିବ? ଡ୍ରଇଁମାଷ୍ଟ ହେଇ ବ୍ଲାକ୍‌ବୋର୍ଡ଼ରେ ବଗ, କାଉ ଆଙ୍କିବା ଛଡ଼ା, ଗଣେଶ, ସରସ୍ୱତୀ ପୂଜାରେ ମୂର୍ତ୍ତି ଗଢ଼ିବା ଛଡ଼ା ବା ହେଡ୍ ମାଷ୍ଟ୍ରଙ୍କ ଅଫିସ୍‌ରୁମ୍ ଆଗରେ ନେମ୍ ପ୍ଲେଟ ଲେଖିବା ଛଡ଼ା ଡ୍ରଇଁମାଷ୍ଟ୍ରର ବା କି କାମ? ସ୍କୁଲରେ ତାକୁ ବା କିଏ ପଚାରେ? ନା ପାଠ, ନା ପରୀକ୍ଷା, ଡ୍ରଇଁମାଷ୍ଟ୍ର ସମସ୍ତଙ୍କର, ପିଲାଙ୍କର, ସହକର୍ମୀ ମାନଙ୍କର, ଶିକ୍ଷକମାନଙ୍କର, ଅଭିଭାବକ ମାନଙ୍କର ଦୟାରପାତ୍ର। କଳିଙ୍ଗ ଦେଶର ଶିଳ୍ପୀକୁଳର ଦାୟାଦ ବୋଲି ସମସ୍ତଙ୍କର ତାରି ପ୍ରତି ଦୟା, କରୁଣା, ଖାଲି ବାକ୍ୟରେ। କାଳେ କଳା ପ୍ରତି, ଶିଳ୍ପୀ ପ୍ରତି ଏଭଳି ଦରଦ ନ ଦେଖେଇଲେ ଦେଶର ସଂସ୍କୃତି ପ୍ରତି ନିଜ କର୍ତ୍ତବ୍ୟରେ ଅବହେଳାହେଲା ବୋଲି ସମସ୍ତେ ନିନ୍ଦା କରିବେ! ଏଣୁ ମନ୍ତ୍ରୀ ଠାରୁ ଆରମ୍ଭ କରି ଯନ୍ତ୍ରୀ ପର୍ଯ୍ୟନ୍ତ, କମିଶନ୍‌ର ଠାରୁ ଆରମ୍ଭ କରି ପ୍ରଫେସର୍ ପର୍ଯ୍ୟନ୍ତ, ଏମେଲେ ଠାରୁ ସରପଞ୍ଚ ପର୍ଯ୍ୟନ୍ତ କଥାରେ କଥାରେ କଳିଙ୍ଗ ଶିଳ୍ପୀର କଳା ଚାତୁରୀ ବୟାନ କରନ୍ତି। କୋଣାର୍କ, ରାଜାରାଣୀ କଥା କହନ୍ତି। ଏଣେ ହାଇସ୍କୁଲ ମାନଙ୍କରୁ ଡ୍ରଇଁମାଷ୍ଟ୍ର ପୋଷ୍ଟ ଉଠିଗଲାଣି। ହେଡ୍‌ମାଷ୍ଟ୍ରମାନେ କହୁଛନ୍ତି "ଡ୍ରଇଁମାଷ୍ଟ୍ରଯାକ ମୂର୍ଖ, ବୋକା ଓ ବେକାରିଆ,ସ୍କୁଲର ପାଠ ପଢ଼ାରେ, ସ୍କୁଲର ଉନ୍ନତିରେ ସେମାନଙ୍କର ଭୂମିକା ନାହିଁ"। ଏଣୁ ଡ୍ରଇଁମାଷ୍ଟ୍ର ବଦଳରେ ଡ୍ରିଲ୍ ମାଷ୍ଟ୍ରଟିଏ ମଧ ପାଇଲେ ସ୍କୁଲର ଅଶେଷ ଭାଗ୍ୟ।

ଏସବୁ ଗୋଷ୍ଠି ସମସ୍ୟାପ୍ରତି ବେଣୁଧରଙ୍କ ନିଘା ନାହିଁ ଛନ

ଛନିଆ କୋଶଳା ଶାଗ, ନାଳି ଟକ ଟକ ଟମାଟୋ, ମୁଣ୍ଡା ମୁଣ୍ଡା ବଯାଦହି, ଖାଣ୍ଟି ଗୁଆ ଘିଅ ଏତେ ସୁଲଭ ଦରରେ ମିଳୁଛି ଯେ ବେଣୁଧର ନିଜର, ନିଜ ପରିବାରର ସମସ୍ତଙ୍କ ସ୍ୱାସ୍ଥ୍ୟ ଅତୁଟ ରଖିବା ସାଙ୍ଗକୁ ମହାସୁଖରେ ଦିନ କଟଉଛନ୍ତି। ଭବନାଥ ବେଳେ ବେଳେ ବେଣୁଧର କଥା ଭାବି ଈର୍ଷାପର ହୋଇ ଉଠନ୍ତି। ମନ ଭିତରେ ହତାଶା ଓ ବ୍ୟର୍ଥତାର ବେଦନା ଅନୁଭବ କରନ୍ତି। ବେଣୁ ମେଟ୍ରିକ୍ ପାସ୍ ବି କରିନି। ଇଂରାଜୀରେ ଦିପଦ କହି ପାରିବ ନା ଲେଖିପାରିବ। ସ୍କୁଲରେ ହେଡ୍‌ମାଷ୍ଟ୍ରଙ୍କ ନୋଟିସ୍ ବି ପଢ଼ି ପାରେନି। ସମସ୍ତେ ଯେଉଁଠି ସନ୍ତକ କରନ୍ତି ସେ ସେଇଠି ବହୁକଷ୍ଟରେ ଆୟତ୍ତ କରିଥିବା ନିଜ ନାଁଟିକୁ ଲେଖିପକାଏ। ଅଥଚ ବେଣୁଧର ମହା ଆନନ୍ଦରେ ସବୁଜ ବନଘେରା ଗୁଣପୁରରେ ଏକ ଝଂଝାଳ ବିହୀନ, ଆପାତଃ ସମସ୍ୟାବିହୀନ ଜୀବନଟିଏ ଅତି ଅନାୟାସରେ ପାଇ ପାରିଛି। ଏଣେ ଆର୍ନ୍ତଜାତିକ ଖ୍ୟାତିସଂପନ୍ନ ଚିତ୍ରଶିଳ୍ପୀ ଡ଼କ୍ଟର ଭବନାଥ ପାଠୀ ଗୋଟିଏ ଏୟାର୍‌ପୋର୍ଟରୁ ଅନ୍ୟ ଏକ ଏୟାର୍‌ପୋର୍ଟକୁ, ଗୋଟିଏ ବିମାନରୁ ଅନ୍ୟ ଏକ ବିମାନକୁ, ଗୋଟିଏ ହୋଟେଲରୁ ଅନ୍ୟ ଏକ ହୋଟେଲକୁ ଧାଇଁ ଧାଇଁ ଏକ ରକମ କ୍ଳାନ୍ତ। ସେ ବି ଜାଣନ୍ତିନି ସେ କାହିଁକି ଧାଉଁଛନ୍ତି। ଇଲେକ୍‌ଟ୍ରିକ୍ ସିଡ଼ିରେ ଥରେ ପାହାଚ ଉଠି ଆସିଲେ ଆଉ ପଛକୁ ଫେରିହୁଏନି। ସେଇ ସିଡ଼ି ଉପରେ ବି ଭୀଷଣ ଭିଡ଼। ସମସ୍ତେ ଆଗକୁ ଯିବା ପାଇଁ ଭିଡ଼ା ଓଟରା, ଠେଲାପେଲା, କିଏ ପ୍ରଥମ ହେବ। ଗାର ଟଣା ହେଇଛି। ହୁଇସିଲ୍ ଓ ଷ୍ଟପ୍‌ୱାଚ୍ ଧରି ରେଫରି ଠିଆ ହୋଇଛି। ଏଇ ହୁଇସିଲ୍ ମାରିଲା, ଆରମ୍ଭ ହେଲା ଦୌଡ଼। ଚାରିନମ୍ବର ବେଳେ ବେଳେ ଆଗକୁ ମାଡ଼ି ଯାଉଛି ତ, ଦୁଇ ତାକୁ ଟପିଗଲାଣି। ତେବେ ବି ଏ ଦୌଡ଼ରେ ଅନ୍ତ ଅଛି ଓ ଏହି ବିଜୟରେ ଆନନ୍ଦ ଅଛି କିନ୍ତୁ ଭବନାଥ ତାଙ୍କ ଦଉଡ଼ର କେଉଁଠି ଶେଷ ତାର ଇସାରା ବି ପାଉ ନାହାନ୍ତି। କାଳେ ଦୁଇନମ୍ବର ବାଲା ଆଗକୁ ମାଡ଼ିଯିବ, ଏଣୁ ସେ ଦୌଡ଼ିଛନ୍ତି। ଗୋଡ଼ରୁ ବାକୁଲା ଉଠିଲାଣି। ପାଟି ଫେଣେଇ ଗଲାଣି।

ଛାତି ଧଡ଼୍ ଧଡ଼୍ ହେଲାଣି। ତଥାପି ଭବନାଥ ଧାଉଁଛନ୍ତି। ଜେଟ୍ ଇଂଜିନ୍ ଠାରୁ ଆହୁରି ବେଗରେ। ନଦୀ, ନାଳ, ବନ, ପର୍ବତ, ସପ୍ତସିନ୍ଧୁ ପାର ହୋଇ ସେ ଧାଉଁଛନ୍ତି।

ଆର୍ନ୍ତଜାତିକ ଶିଳ୍ପୀ ହେବାର ଆନନ୍ଦ କେବଳ ଭାବିବାରେ, ସ୍ୱପ୍ନ ଦେଖିବାରେ। ପନ୍ଦର ବର୍ଷତଳେ ଭବନାଥ ଏ ଦଉଡ଼ ଆରମ୍ଭ କରିବା ଆଗରୁ ଖାଲି ସ୍ୱପ୍ନ ଦେଖୁଥିଲେ, ଛିଣ୍ଡା କନ୍ଥା ଉପରେ ଶୋଇ ଶୋଇ। ଏକ ଦିଗନ୍ତବିହୀନ ନୀଳ ଆକାଶର ବକ୍ଷରେ ସେ ପକ୍ଷୀଟିଏ ଭଳି ଉଡ଼ୁଛନ୍ତି। ବେଣୁଧର, ଭବେଶ ସିହ୍ନା, ବ୍ରଜବଂଧୁ ମହାପାତ୍ର, ଜଗବଂଧୁ କାନୁନ୍‌ଗୋ କଇଁଛ ଧରି ଉଡ଼ିଯାଉଥିବା ହଂସ ଯୋଡ଼ିକୁ ଦେଖି ହିଂସାରେ ତାଳି ମାରିଥିବା ଗାଈଆଳ ଟୋକାଙ୍କ ଭଳି ଆଁ କରି ଉପରକୁ ଚାହିଁଛନ୍ତି। ଖସି ପଡ଼ନ୍ତାକି ଶଳାକୁ ରୋଷ୍ଟ୍ କରିଦିଅନ୍ତୁ। ସ୍ୱପ୍ନରେ ମଧ ଭବନାଥ ଚମକି ଉଠନ୍ତି। ତାଙ୍କର ମନେହୁଏ ନିଜ ଚିଲିକାଗଜଟି ପବନରେ ଧକ୍କାଖାଇ ପାଖେଇ ଯାଉଛି। କାଚଗୁଣ୍ଡ ଦିଆ ସୂତାରେ ବନ୍ଧା ଶହ ଶହ ଚିଲିକାଗଜ ତାଙ୍କୁ କାଟି ତଳେ ପକେଇ ଦେବା ପାଇଁ ଆଗେଇ ଆସୁଛନ୍ତି। ଭବନାଥ ହାତମୁଠାର ସୂତା ଟାଣ କରିଦିଅନ୍ତି। ପୁଣି ନିଦ ବହଳ ହୋଇଗଲେ ମେଘ ବୁକୁଚିରି ଏକାକୀ ବିହଙ୍ଗଟିଏ ନୀଳ ଆକାଶର ବକ୍ଷରେ ସ୍ୱଚ୍ଛନ୍ଦରେ ଉଡ଼ିବୁଲେ।

ସମସ୍ତେ ଚଢ଼େଇଟିକୁ ଉଡ଼ିବାର ଦେଖିଛନ୍ତି କିନ୍ତୁ କିଏ ଥରେ ଭଲା ପଚାରିଛି- ରେ, ଚଢ଼େଇ! ତୋର ତ ଟିକି ଟିକି ଡେଣା, ତୁ ଉଡ଼ୁଛୁ କିମିତି? ଉପରୁ ଆମମାନଙ୍କୁ ଦେଖି ଡ଼ରିଯାଉନୁ! ଆମେ ପରା ଚାହିଁଛୁ, ତୁ ଖସି ପଡ଼ିଲେ ତୋତେ ରୋଷ୍ଟ୍‌କରି ଖାଇବୁ। ତେବେ କହ! କହ ଚଢ଼େଇ, ତୋତେ କିଏ ଏମିତି ହିମତ୍ ଦେଲା? ତୁତ ଆମ ସାଙ୍ଗରେ ଥିଲୁ, ଖୁଦ ଖାଉଥିଲୁ, ଏକା ପଥୁରିରୁ ପାଣି ପିଉଥିଲୁ, ରେ ଚଢ଼େଇ! କାହାକୁ ଖୋସାମତ କରି ଏମିତି ଉପରକୁ ଉଡ଼ିଗଲୁ? ଚଢ଼େଇ ବା କ'ଣ ଉତ୍ତର ଦେବ? କହିବ, ତମେ ଉଡ଼ିବାକୁ ଚେଷ୍ଟାକରୁନ। ପକ୍ଷୀ ଜନ୍ମ ପାଇଚ 'ଜଗତ କରତା-ଆ, କୃଷ୍ଣ ଦାତା-ଆ'। ହୁଏତ ପଡ଼ିଯିବା ଭୟରେ ଉଡୁନ। ଉଡ଼ିବା ଆଉ ପଡ଼ିବା ସମାନ।

ପାଇବାର ଆଶା ଯେତିକି ଆନନ୍ଦଦାୟକ, ପାଇଲା ପରେ ହଜେଇବା ଭୟ ସେତିକି ଦୁଃଖଦ। ଭବନାଥ ଥରେ ଥରେ ପାଇବା ଓ ହଜେଇବାର ହିସାବ ନିକାସ କରିବସନ୍ତି। ସେ ପାଇଲେ ଆନ୍ତର୍ଜାତିକ ପଦ ଭଳି ଗୁଡ଼ାଏ ଶସ୍ତା ସମ୍ମାନ। ଆକାଶରେ ବିନା ପଇସାରେ କେତେ ଘଣ୍ଟାର ଉଡ଼ାଣ, ଭଲ ବ୍ରେଡ଼, ବଟର ଚିକ୍, ଅଙ୍ଗୁର ରସ, କମଲା ରସ, ଚକୋଲେଟ୍, କଫି, ପାରଫ୍ୟୁମ୍‌ର ତୀବ୍ର ବାସ୍ନା, ଯୌନୋଦ୍ଦୀପକ ଅର୍ଦ୍ଧ ନଗ୍ନ ଓ ନଗ୍ନ ସଫେଦ ମଣିଷମାନଙ୍କର ଶସ୍ତା ପ୍ରେମର ଦୃଶ୍ୟ, ହୁଏତ କିଛି ଅଦରକାରୀ ଅନୁଭୂତି ଓ ତଦ୍‌ଜନିତ ସ୍ମୃତି। ହଜେଇଲେ ବଂଧୁମାନଙ୍କର ବିଶ୍ୱାସ, ଶତ୍ରୁମାନଙ୍କର ଧୈର୍ଯ୍ୟ, ନିଜ ପରିବାରର ସାନ୍ନିଧ୍ୟ, ଶୈକ୍ଷିକ ସୃଷ୍ଟିର ସମୟ ଓ ଆନନ୍ଦ। ଭବନାଥଙ୍କୁ ନେଇ ରାଜଧାନୀରେ ବହୁ କଳ୍ପନାଜଳ୍ପନା। ଧୀରେ ଧୀରେ ନିନ୍ଦୁକଙ୍କ ସଂଖ୍ୟା ବଢ଼ିବାରେ ଲାଗିଲା। ଦଳେ କହିଲେ, ଭବନାଥ ସୁଇଜରଲ୍ୟାଣ୍ଡରୁ ବାକ୍ସରେ ଭରିକରି ସୁନା ବିସ୍କୁଟ୍ ଆଣୁଛି। ଭବନାଥ ଘରକୁ ଫେରିଲା ବେଳେ ଥୋଡ଼ାଏ ଏଣୁତେଣୁ ଟୁରିଜମ୍ ଫୋଲ୍‌ଡ଼ର। ଥୋଡ଼େ ଅଦରକାରୀ କାଗଜ। ମୋଟା,ପତଳା ବହି। ଖଣ୍ଡେ ଦିଖଣ୍ଡ କଣ୍ଢେଇ, ଗୋଟିଏ, ଦିଟା ଡ଼ଟ୍ କଲମ ଓ ଦୁଇଚାରିଟା ନେକ୍‌ଟାଇ ନେଇ ଫେରନ୍ତି। ଉଡ଼ାଜାହାଜ, ଭୂଇଁରୁ ଆକାଶକୁ ଉଠିବା ବେଳଠୁଁ ଭବନାଥଙ୍କ ପତ୍ନୀ ଅବନ୍ତୀ ବାପଘର ଝାଡ଼େଶ୍ୱରଙ୍କ ଠାରୁ ଆରମ୍ଭ କରି ଭଦ୍ରଖର ଆଖଣ୍ଡଳମଣି, ଯାଜପୁରର ବିରଜା, ଭୁବନେଶ୍ୱରର ଲିଙ୍ଗରାଜ ଓ ସର୍ବୋପରି ପୁରୀର ଜଗନ୍ନାଥଙ୍କୁ ହାତଯୋଡ଼ି, ମୁଣ୍ଡିଆମାରି, ଦୀପ ଜାଳି, ନଡ଼ିଆ ଭୋଗକରି, କ୍ଷୀର, ମହୁ ଢାଳି, ବେଲପତ୍ର ଚଢ଼େଇ ଜଣା କରନ୍ତି,'ସେ ଭଲରେ ଫେରି ଆସନ୍ତୁ'। ମୋର ଲିପଷ୍ଟିକ୍ ଦରକାର ନାହିଁ ପାରଫ୍ୟୁମ୍ ଦରକାର ନାହିଁ ଭଲରେ ଫେରି ଆସିଲେ ମୋର ଲକ୍ଷେ ଟଙ୍କା। ମୁହିଁ ଶିଖେଇଚି, ମୁହିଁ ଠେଲି ପେଲି ପଠେଇଚି। କେତେ ନ କହିଛି, ପାଠ ପଢ଼। ମଣିଷ ହୁଅ। କଳା ପଟାରେ କାଉ ବଗ ଆଙ୍କିଲେ କ'ଣ ହେବ? ଲୋକଟା କଥା ମାନିଲା। ଝାଡ଼େଶ୍ୱର, ଆଖଣ୍ଡଳମଣି ମୋ କଥା ଶୁଣିଲେ। ଅବନ୍ତୀ କହନ୍ତି, ''ଆମ ପଡ଼ିଶା ଘରକୁ ଥରେ ଜଣେ ବାବା ଆସିଥିଲେ।

ଦୀପ୍ତିମନ୍ତ ଚେହେରା। ଦୀପ ଭଳି ତାଙ୍କର ଆଖିଦୁଇଟି ଜଳୁଥିଲା। ଭବିଷ୍ୟତ କଥା କହୁଥିଲେ। ତାଙ୍କ କଥା ଶୁଣି ମୋର ମନ ଛକିମକ ହେଲା। ଯାଙ୍କର ଜାତକଟି ଦେଖେଇଲି। ବାବା କହିଲେ 'ତମ ସ୍ୱାମୀ ସାତ ସମୁଦ୍ର ପାର ହେଇ ବିଲାତ ଯିବ। ଖୁବ୍ ନାଁ କମେଇବ। ସେ ଦିନ ମୋ ମନ ପୂରି ଉଠିଥିଲା। ଛାତି କୁଣ୍ଢେମୋଟ ହୋଇ ଯାଇଥିଲା। ଭାବିଲି ବାବା ଝାଡ଼େଶ୍ୱର, ଆଖଣ୍ଡଳମଣି ମୋ ଡ଼ାକ ଶୁଣିଲେ। କେତେ ମାଜଣା ନ କରିଛି। ଘରକୁ ଫେରି ଯାଙ୍କୁ କହିଲି। କଥାକୁ ଉଡ଼େଇଦେଲେ। କହିଲେ, ଆମ ଭଳି କାଉ ବଗ ଆଙ୍କିଲା ବାଲା ସପତ ସମୁଦ୍ର ପାର ହେଇ ବିଲାତ ଯିବ ! ଭାବିଛକି ବିଲାତଟା ଜଳେଶ୍ୱର। ଓଡ଼ିଆ ଶିଳ୍ପୀ ଏବେ ବୈତରଣୀ ପାରହେଇ ପାରୁନାହାନ୍ତି, ସାତ ସମୁଦ୍ର ପାର ହେବେ। ରଖହେ ତମ ସରାଗ' କିନ୍ତୁ ଦିନ କେତୁଟା ଯାଇନି, ଭବନାଥ ଦଉଡ଼ିଆସି ସ୍ତ୍ରୀଙ୍କୁ ସରାଗରେ କହିଲେ, 'ଅବନ୍ତୀ ! ମୁଁ ସୁଇଜରଲ୍ୟାଣ୍ଡ ଯିବି।' ସେଦିନ ସ୍ତ୍ରୀ ଗେଲରେ ଆଉ ଅଭିମାନରେ ଭବନାଥଙ୍କ ହାତଧରି ପାଖକୁ ଆଉଜେଇ ଆଣିଲେ। କହିଲେ,'ହେଲାତ ! ବାବା ଯାହା କହିଥିଲେ ହେଲାତ !' ଏବେ ଭବନାଥ ଖାଲି ଉଡ଼ୁଛନ୍ତି। ତାଙ୍କର ଏଠି ଗୋଟିଏ ଗୋଡ଼ ତ ସୁଇଜର-ଲ୍ୟାଣ୍ଡରେ ଆଉ ଗୋଟିଏ ଗୋଡ଼। ସ୍ତ୍ରୀଙ୍କୁ କଥାଟା "ଦିଲ୍ଲୀକା ଲଡ୍ଡୁ" ଭଳି ଲାଗୁଛି। ସମସ୍ତଙ୍କୁ ପିନା କଥା କଥାରେ କୁହନ୍ତି,'ଇଏ ଯାଉଛନ୍ତି ସୁଇଡ଼େନ୍, ହଁମ, ଏଇ ଖବରସ୍ କଥା ପଢ଼ିନି ? ସେଠିକି !' କିନ୍ତୁ ଅନ୍ତର ଭିତରଟା ଦୁହିଁ ହେଇଯାଉଛି। ସେ ପାଇଲେ କ'ଣ ? ଖାଲି କ'ଣ ନାଁକୁ ଧୋଇ ଶୁଖେଇ ବଂଚିବେ। 'ଆନ୍ତର୍ଜାତିକ ଶିଳ୍ପୀ ଭବନାଥ', ଓଡ଼ିଶା ଚିତ୍ରଶିଳ୍ପୀ ଭବନାଥଙ୍କ ବିଦେଶ ଯାତ୍ରା। ହଉ, ମୁହିଁତ ବାଟ କଢ଼େଇଚି। ଭଗବାନ ତାଙ୍କ ସାହା ହୁଅନ୍ତୁ।

ଭବନାଥ ବାହାରେ ବି ହନ୍ତସନ୍ତ। ଦିନେ ଦୁଇଦିନ ଚଳେଇ ନିଅନ୍ତି। ତା ପରେ ହୋଟେଲର ମୋଟା ଗଦି, ସାୱାର, ଫୋମ୍ ବାଥ୍, ବହଳ ବଟର ଦିଆ ପାଉଁରୁଟି, ଅଙ୍ଗୁର ରସ ସବୁ ପିତା ଲାଗେ। ଚିକେନ୍ ରୋଷ୍ଟ, ପ୍ରନ୍ କରି, ଫିସ୍ ଫ୍ରାଇ ସବୁ ଅଲୋଡ଼ା।

ହୋଇଯାଏ। ଭବନାଥଙ୍କ ମନ ଟାଣିହେଇ ସପତ ସାଗର ଡ଼େଇଁ ଘର ଆଡ଼େ ଛୁଟିଯାଏ। ସ୍ତ୍ରୀଙ୍କ କଥା, ପୁଅ,ଝିଅ କଥା ମନେ ପଡ଼ି ମନଟା ଘାଣ୍ଟି ଚକଟି ହୁଏ। ବେଣୁଧର କେତେ ଆରାମରେ ତା ସ୍ତ୍ରୀ ପିଲାଛୁଆ ପାଖରେ ରହୁନି। ଶୀତ ଦିନେ ହୁଏତ ବେଣୁଧରଙ୍କ ସ୍ତ୍ରୀ ତେଲ ରସୁଣ ଗରମ କରି ଦେହକୁ ଘସା ମୋଡ଼ା କରି ଦେଉଛି। ଗୋଡ଼ ତଳିପାରେ ଗରମ ତେଲ ଲଗେଇ ଦେଉଛି। ମୁଁ ଅଭାଗା ଏଇ ପାଉଁରୁଟି ଆଉ ବଟର୍ ହାବୁଡ଼ରେ ପଡ଼ିଚି। ଖାଲି ଆଦବ କାଏଦା, ପରିଚାରିକା ଅଭିସାରିକା ସାଜି ଖାଇବା ଟେବୁଲ ପାଖରେ ଠିଆ ହେଉଛି। ସକାଳୁ ଗୋଲାପ ଉପହାର ଦେଉଚି ତ ସଂଧ୍ୟାବେଳେ ଓ୍ୱାଇନ୍ ବୋତଲ ଧରି ସ୍ୱାଗତ କରୁଛି। ଏମାନଙ୍କ ମହିମା କମ୍ ନୁହେଁ। ସବୁବେଳେ ପକେଟ୍ ଉପରେ ଲକ୍ଷ୍ୟ। ବାହାରେ ଚମଡ଼ା ସିନା କମଳା ରଙ୍ଗ ଭଳି ଲାଲ, ଭିତରଟା ଆବର୍ଜନାରେ ପୂର୍ଣ୍ଣ। ଛୁଇଁଲେ ନର୍କବାସ। ଭବନାଥଙ୍କ ସ୍ତ୍ରୀ ସତର୍କ କରିଦେଇଛନ୍ତି। ଖାଇବ,ବୁଲିବ, ମଉଜ କରିବ। ଖବରଦାର୍! ଡ଼ାହାଣୀଙ୍କ ପାଲରେ ପଡ଼ିବନି। ଭବନାଥ ବେଳେ ବେଳେ ଯନ୍ତ୍ରଣାରେ ଛଟପଟ୍ ହୁଅନ୍ତି। ଆନ୍ତର୍ଜାତିକ ଚିତ୍ରଶିଳ୍ପୀ ହେବାର ଯନ୍ତ୍ରଣା। ଏଣୁ ଆଜିକାଲି ଭବନାଥ କାମସାରି ହୋଟେଲ ରୁମ୍ ଭିତରକୁ କୁକୁଡ଼ା ଛୁଆ ଭଳି ପଶିଯାନ୍ତି। କେତେ ଅବା ଦେଖିବେ। ଏମାନେ ସ୍ତନକୁ, ନିତମ୍ବକୁ, ଚିବୁକକୁ ହାତ ଗୋଡ଼ ଠାରୁ ହୀନ କରିଦେଇଛନ୍ତି। ଉପେନ୍ଦ୍ର ଭଂଜ ଇଂରାଜୀରେ ଅନୁବାଦିତ ନ ହେଉଥିବାରୁ ଏ ଅଧୁବିଧା, ଖାଲି ଜୟନ୍ତୀ ପାଳନ କରି ଶବ୍ଦବ୍ରହ୍ମ ମାନଙ୍କୁ ଅନାୟାସରେ ଅଯାଚିତ ଭାବେ ଶୂନ୍ୟକୁ ନିକ୍ଷେପ ନକରି ଯଦି ଭଲା ଇଂରାଜୀରେ ଅନୁବାଦ କରାଯାଇଥାନ୍ତା, ତା ହେଲେ ସ୍ତନର ମହତ୍ୱ, ଜଘନ, ନିତମ୍ବ ଓ ଚିବୁକର କାବ୍ୟିକ ମୂଲ୍ୟ ବୁଝିବାରେ ଏମାନଙ୍କ ଅସୁବିଧା ହୁଅନ୍ତାନି। ଭବନାଥଙ୍କ ଇଂରାଜୀ ଭାଷାରେ ସେଭଳି ଦକ୍ଷତା ଥିଲେ ପଦେ ଦିପଦ ଭଂଜୀୟ କାବ୍ୟକୁ ଅନୁବାଦ କରି ଶୁଣେଇ ଦିଅନ୍ତେ। ଏତେ ଦିନର ବିଦେଶ ରହଣିରୁ ଯେଉଁ ସିଦ୍ଧାନ୍ତରେ ପହଞ୍ଚିଛନ୍ତି, ତା ହେଲା ଶ୍ୱେତକାୟ ମାନେ ପ୍ରେମଭଳି

ସ୍ୱର୍ଗୀୟ, ଦୁର୍ଲଭ ବସ୍ତୁକୁ ରାସ୍ତା ଘାଟରେ, ବସ୍‌ରେ, ପାର୍କରେ ଯତ୍ର ତତ୍ର ଶ୍ୱାନୀୟ ପର୍ଯ୍ୟାୟକୁ ଖସାଇ ଆଣିଛନ୍ତି। ଭବନାଥ ସିନା କାବ୍ୟିକ ସିଦ୍ଧାନ୍ତରେ ପହଞ୍ଚି ଅବାଧ ଚୁମ୍ବନ, ସ୍ତନ ଜଘନ ନଗ୍ନ ପ୍ରଦର୍ଶନ ଇତ୍ୟାଦି ଅବାଞ୍ଛନୀୟ ବୋଲି ଘୋଷଣା କରିସାରିଛନ୍ତି, ତଥାପି ବେଳେବେଳେ ଏହି ଦୃଶ୍ୟମାନଙ୍କରୁ ଉଦ୍‌ଗୀର୍ଣ ଉତ୍ତାପରେ ତାଙ୍କ ଦେହ ମନ ଗରମ ହୋଇ ଉଠେ। ଆହା ! ଶିଳ୍ପୀ ବଂଧୁ ବେଣୁଧର ଗୁଣପୁରର ଲମ୍ୱାଲମ୍ୱା ଶାଳ ପିଆଶାଳ ଦ୍ରୁମ ମାନଙ୍କର ଶୀତଳ ଛାଇରେ ସମୟ କଟାଇ ନିଜକୁ ଏକ ରକମ ଯନ୍ତ୍ରଣା ମୁକ୍ତ କରିପାରିଚି। ଯାହା ଚାହୁଁଚି ହାତ ପାଆନ୍ତାରେ ପାଇ ଯାଉଛି।

ଭବନାଥ ଅଧିକାଂଶ ସମୟ ମ୍ୟୁଜିୟମ୍ ମାନଙ୍କୁ ଯିବାରେ, ଆର୍ଟ ଗ୍ୟାଲେରୀ ମାନଙ୍କରେ ଚିତ୍ର ଓ ଭାସ୍କର୍ଯ୍ୟ ଉପଭୋଗ କରିବାରେ କଟାନ୍ତି। କିନ୍ତୁ ଏମାନେ କେଉଁଠି ପହଞ୍ଚିଲେଣି। ରେମ୍ବ୍ରାଁ, ଡ଼ାଭିଚ, ରୁବେନ୍‌ସରୁ ଆସି ପିକାସୋ, ବ୍ରାକ୍, ଡ଼ାଲି ଦେଇ ଶେଷରେ ପପ୍ ଆର୍ଟ, ଅପ୍ ଆର୍ଟ. ସଫ୍‌ଟ ଆର୍ଟ ପୁଣି ହୋଲ୍ ଆର୍ଟରେ ପହଞ୍ଚିଲେଣି। ଯେତେ ପ୍ରକାର ଅକଥ୍ୟ, ଅବୋଧ୍ୟ, ଅଜବ, ଅସୁନ୍ଦର, ଅତୁଆ, ସେତେ ନବୀନ, ସେତେ ସୃଷ୍ଟିଶୀଳ ଆଉ କୁଆଡ଼େ ସେତେ ସାର୍ଥକ। ପାଖରେ କିଏ ବିଦେଶୀ ସାଙ୍ଗ ଥିଲେ ଭବନାଥ ବାଧ୍ୟ ହୋଇ କହନ୍ତି, ବାସ୍ତବିକ! ଚମତ୍କାର। କିନ୍ତୁ ମନ ଭିତରୁ ଧକ୍‌କା ମାରିଲା ଭଳି ସତ କଥାଟି ବାହାରି ଆସେ, ''ଶଳେ, କଳାକୁ କ'ଣ କଲେଣି! ବ୍ୟସ୍ତ ହୁଅନି ଆମେ ବି ତମ ପଛରେ ଅନ୍ଧ ଭଳି ଦୌଡ଼ୁଛୁ। ଦିଲ୍ଲୀ, ବମ୍ବେ, ବରୋଦାରେ ଏହି କଳାର ତୀର୍ଥ ଗଢ଼ା ସରିଲାଣି। ଲମ୍ୱା ଦାଢ଼ି ବାଲା, ଜିନ୍ ପେଣ୍ଟ ବାଲା, ଢ଼ିଲା ପଞ୍ଜାବୀ ବାଲା, ଲମ୍ୱା ବାଳ ରଖିଲାବାଲା। ବ୍ରେସିଅର ନ ପିନ୍ଧି ମୁକ୍ତ ସ୍ତନକୁ ଦୋଳାୟିତ କରି ଚାଲୁଥିବା ଶିଳ୍ପୀମାନେ ଏ ନବ କଳା ବିପ୍ଲବର ସରସୀରେ ଅବଗାହନ କରି ନୀଳ ଶୃଗାଳ ରୂପ ଧାରଣ କରି ଜାତୀୟ ଓ ଆନ୍ତର୍ଜାତୀୟ ଶିଳ୍ପୀ ହେବାର ଗୌରବ ଅର୍ଜନ କରିସାରିଲେଣି''। ଭବନାଥ ଦ୍ୱନ୍ଦ୍ୱରେ ପଡ଼ନ୍ତି। ମୁଁ ସେମାନଙ୍କ ଦଳର ନା କୋଣାର୍କ ଦେଶର! ଭାବନାଥଙ୍କ ଏକମାତ୍ର କ୍ଷୋଭ- ଏ

ଦଳଙ୍କ କୋଣାର୍କ ଦେଶର ଶିଳ୍ପୀଙ୍କୁ ହତାଦାର କରିଛନ୍ତି । ହସରେ ଉଡ଼ାଇ ଦେଇଛନ୍ତି କୋଣାର୍କ ଶିଳ୍ପୀର ପରାକାଷ୍ଠା । ଏଣୁ ଭବନାଥ ଏମାନଙ୍କ ଦଳରେ ସାମିଲ ହୋଇଛନ୍ତି, ଦରକାର ବେଳେ ଉପଯୁକ୍ତ ଶିକ୍ଷା ଦେବା ପାଇଁ । ସେମାନଙ୍କ ଦଳରେ ନ ଥିଲେ ଏତେ ଶିଘ୍ର ଆନ୍ତର୍ଜାତିକ କେମିତି ବନି ଯାଇଥାନ୍ତେ ।

ଖାଲି ସୁନାମ ଯାହା କେବଳ ପବନ ସହିତ ତୁଳନୀୟ, ସେଭଳି ଏକ ବାୟବୀୟ ବସ୍ତୁର ପ୍ରଲୋଭନରେ ପଡ଼ି ଭବନାଥ ହନ୍ତସନ୍ତ ହେଉଛନ୍ତି । ଆନ୍ତର୍ଜାତିକ ଶିଳ୍ପୀ ଭବଘୁରା ଭବନାଥ ଆଜି "କ୍ରାଇସିସ୍ ଅଫ୍ ଭ୍ୟାଲୁଜ୍" ଭିତରେ ପଡ଼ି ହତବାକ୍ । ସେ ଭାବୁଛନ୍ତି, ଆଉ କେତେ ଦିନ ତାଙ୍କୁ ଘୁରିବାକୁ ପଡ଼ିବ ।

ବେଣୁଧର କେବେ ଭୁବନେଶ୍ବର ଆସନ୍ତିନି । ତାଙ୍କର ଭୁବନେଶ୍ୱରରେ ବା କି କାମ । ଠିକ୍ ଭାବେ ଦରମା ଗଣ୍ଡାକ ଗୁଣୁପୁରରେ ମିଳିଗଲେ ବେଣୁଧର ସ୍କୁଲ କଥା, ଶିଳ୍ପୀଭାଇ ମାନଙ୍କ କଥା ବା ଦେଶ ଜାତି କଥା କାହିଁକି ବା ଚିନ୍ତା କରିବେ । କ'ଣ ଅସୁବିଧା ହେଲା କେଜାଣି ବେଣୁଧର ଭୁବନେଶ୍ବର ଆସି ପହଞ୍ଚିଲେ । ସମସ୍ୟା ହେଲା ଢେଙ୍କାନାଳ, ଜିଲ୍ଲାର ଚିତ୍ର ଶିକ୍ଷକ ମାନେ ନୂଆ ଦରମାରେ ସିଲେକ୍ସନ୍ ଗ୍ରେଡ୍‌ଠାରୁ ଅଧିକ ଦରମା ପାଉଥିବା ସ୍ଥଳେ, କୋରାପୁଟ ଜିଲ୍ଲାର ଚିତ୍ର ଶିକ୍ଷକ ମାନେ ସେଇ ପୁରୁଣା ଦରମା ପାଉଛନ୍ତି । ତାଙ୍କର ଧାରଣା ହେଲା, ଭବନାଥ ନିଶ୍ଚୟ ଏହାର ପ୍ରତିକାର କରି ପାରିବେ ବା ପ୍ରତିକାରର ବାଟ ବତାଇ ଦେବେ । ଭୁବନେଶ୍ବରରେ ପହଞ୍ଚି ବେଣୁଧର ବାଲ୍ୟବନ୍ଧୁ ଭବନାଥଙ୍କୁ ଖୋଜିଛନ୍ତି । ଭୁବନେଶ୍ୱରର ୟୁନିଟ୍, ନଗର ବା ନମ୍ବର ଭିତରେ ଏତେ କ'ଣ ସହଜ ହୋଇଛି ଭବନାଥଙ୍କୁ ପାଇବା । ଯାହାହେଉ ବସ୍‌ଷ୍ଟାଣ୍ଡରେ ଆଉ ଜଣେ ରାଜଧାନୀରେ ଚାକିରୀ କରୁଥିବା ଶିଳ୍ପୀ ବନ୍ଧୁଙ୍କ ଠାରୁ ଠିକଣା ଯୋଗାଡ଼ କରି ତାଙ୍କ ସ୍କୁଟର ପଛପଟେ ବସି ଭବନାଥଙ୍କ ଫ୍ଲାଟ ପାଖରେ ହାଜର ।

ବେଣୁଧର ବନ୍ଧୁ ପତ୍ନୀଙ୍କୁ ଆଗରୁ କେବେ ଦେଖି ନ ଥିଲେ । ଭବନାଥଙ୍କ ସ୍ତ୍ରୀ ଅବନ୍ତୀ ଏଭଳି ଅଜ୍ଞାତକୁଳଶୀଳ ଶିଳ୍ପୀମାନଙ୍କ ଆଗମନରେ

ନିଜର କର୍ତ୍ତବ୍ୟ ବନ୍ଧୁ ଆଗରୁ ସ୍ଥିର କରି ଦେଇଛନ୍ତି। ଭୁବନେଶ୍ୱର ଜାଗା, କିଏ କେତେ ରକମର ମନ ନେଇ ଆସିଥିବେ। କେତେ ବା ତାଙ୍କ ଦୁଆରକୁ ନ ଆସୁଛନ୍ତି। ସକାଳୁ ସନ୍ଧ୍ୟା ଯାଏ ଭବନାଥଙ୍କ ଦୁଆରେ ଲୋକଙ୍କ ସୁଅ। ଅଯଥା ଲୋକଗୁଡ଼ାକ। କେଉଁ କାମକୁ ନୁହଁନ୍ତି। କାହାର ଟ୍ରାନ୍ସଫର୍ ହେବ, ଭବନାଥ ଯାଇ ତାଙ୍କ ସେକ୍ରେଟେରୀଙ୍କୁ ଭେଟିବେ। କାହାର ବାହାଘର ହେବ ଭବନାଥ ବେଦୀ ସଜାଇବେ, ଗେଟ୍ ଲଗାଇବେ, ନିମନ୍ତ୍ରଣ ପତ୍ର ଛାପିବେ। କାହାର କଭର ଡିଜାଇନ୍ ଦରକାର ତ କାହାର ଷ୍ଟାଇପେଣ୍ଡ ଦରକାର। ଚିତ୍ର ପ୍ରଦର୍ଶନୀ ଠାରୁ ଆରମ୍ଭ କରି ଗୁହାଳ ଘର ପର୍ଯ୍ୟନ୍ତ ଯେତେ ଅଜବ କାମ। ସାଇନବୋର୍ଡ଼ ଲେଖା ଠାରୁ ଆରମ୍ଭ କରି ପ୍ରବନ୍ଧ ଲେଖା ପର୍ଯ୍ୟନ୍ତ ଯେତେ ବରାଦ କାମ ଭବନାଥଙ୍କ କପାଳରେ ଲେଖା। ଭଲା ସେତିକିରେ କଥା ସରନ୍ତା। ଭବନାଥ ଲୋକଙ୍କୁ ଦେଖିଲେ ଖାଇବା ପିଇବା ଭୁଲିଯାଆନ୍ତି। ଚୁପ୍‌କିନା ଘର ଭିତରକୁ ପଶି ଆସି ଅବନ୍ତୀଙ୍କୁ ବରାଦ କରିଯାଆନ୍ତି, ଚା କର। ଅବନ୍ତୀ ଚା କରି କରି ବେଦମ୍। ଏଣୁ ଅତିଥିମାନଙ୍କର ଆଗମନ ସମ୍ବାଦରେ ଅବନ୍ତୀ ସବୁବେଳେ ବୀତସ୍ପୃହ। ହଁ ଭଲା, ଏମାନେ ସେମିତିକା ସାଙ୍ଗ ହୋଇଥାନ୍ତେ। ସତରେ ଭବନାଥଙ୍କୁ ଭଲ ପାଉଥାନ୍ତେ। ତାହାହେଲେ ଅବନ୍ତୀ ଚା କ'ଣ ରସଗୋଲା ଫ୍ରିଜ୍‌ରେ ରଖି ଏମାନଙ୍କ ଆସିବା ବାଟକୁ ଅନାଇ ବସନ୍ତେ। ଟିକେ ବିଗିଡ଼ି ଯାଉ ଦେଖିବ, ସାଙ୍ଗ ନା ଫାଙ୍ଗ, ଗୋଟାଏ ବିଲେଇ ପିଲାର ବି ଦେଖା ହେବନାହିଁ। ବିଶେଷ କରି ଭବନାଥ ବିଦେଶ ଗସ୍ତରେ ଥିବାବେଳେ କିଏ ହେଲେ ଦୁଆର ମାଡ଼ନ୍ତି ନାହିଁ। ଇଏ ପୁଣି କିଏ? ଅବନ୍ତୀ ବାରି ନେଲେ, ଇଏ ନିଶ୍ଚେ ରାଜଧାନୀର ସାଙ୍ଗ ନୁହନ୍ତି। ବେଣୁଧର ଚା ପାଣି ଖାଆନ୍ତିନି। ଭବନାଥ ଘରେ ନାହାନ୍ତି, ଭୁବନେଶ୍ୱରରେ ବି ନାହାନ୍ତି, ଏତିକି ଖବର ପାଇବା ପରେ ତାଙ୍କ ମନଟା ଟିକେ ଫିକା ପଡ଼ିଗଲା। ବେଣୁଧର ବାରଣ୍ଡାରୁ ତଳକୁ ଗୋଡ଼ ବଢ଼ଉ ବଢ଼ଉ ପଛକୁ ଘୁରି ପଡ଼ି ବନ୍ଧୁ ପତ୍ନୀଙ୍କୁ କହିଲେ, ମୁଁ ଭବନାଥଙ୍କ ବାଲ୍ୟବନ୍ଧୁ। ଖଲ୍ଲିକୋଟରେ ଏକା ସାଙ୍ଗରେ ପଢୁଥିଲୁ। ଏକା ହଷ୍ଟେଲରେ ରହୁଥିଲୁ। ଭବନାଥଙ୍କ ସହିତ

କୋଡ଼ିଏ ବର୍ଷ ହେଲା ଦେଖା ହେଉନାହିଁ। ଯଦି ଆପଣ କହୁଛନ୍ତି, ଭବନାଥ ସୁଇଜ୍‌ରଲ୍ୟାଣ୍ଡ ଯାଉଛନ୍ତି ମୋ ପାଇଁ ଆପଣ ଗୋଟାଏ କାମ କରିଦେବେ। ମୁଁ ଇଂରାଜୀ ପାଠ ପଢ଼ିନି। ଚିଠି ଲେଖା ଲେଖି ମୋର ଅଭ୍ୟାସ ନାହିଁ। ଭବନାଥଙ୍କୁ ଚିଠି ଲେଖି ଜଣାଇ ଦେବେ-ତାଙ୍କ ବନ୍ଧୁ ବେଣୁଧରଙ୍କ ଝିଅ ବାହାଘର ଆଉ ଦୁଇମାସ ପରେ, ତାଙ୍କ ଜ୍ୱାଇଁ ପାଇଁ ହାତଘଣ୍ଟାଟେ ଦରକାର, ସୁଇଜରଲ୍ୟାଣ୍ଡରେ କୁଆଡ଼େ ସବୁଠାରୁ ଭଲ ଘଣ୍ଟା ମିଳୁଛି। ତାଙ୍କ ପାଇଁ ନିଶ୍ଚୟ ଗୋଟିଏ ବାଛି କରି ଆଣିବେ। ବେଣୁଧରଙ୍କ ନାଁ ଶୁଣି ଅବନ୍ତୀଙ୍କ କୌତୂହଳ ବଢ଼ିଲା। ତାହାହେଲେ ଏଇ ସେ ବେଣୁଧର। ଯା'ଙ୍କ କଥା ଭବନାଥ ଅଧିକାଂଶ ସମୟରେ କହନ୍ତି। ଇଏ କୁଆଡ଼େ ବଡ଼ ନିରଳସ, ନିର୍ଲୋଭ, ନିସ୍ୱାର୍ଥପର ଓ ସାଧାସିଧା ଜୀବନ କଟାନ୍ତି। ପୁଣି ସୁଇଜ୍‌ରଲ୍ୟାଣ୍ଡ ଘଣ୍ଟା କ'ଣ ହେବ? ଅବନ୍ତୀ କ'ଣ କହିବାକୁ ଯାଉଥିଲେ, ବେଣୁଧର ଚଟାପଟ୍ କଥାଟକ କହିଦେଇ ରାସ୍ତା ଉପରକୁ ଉଠିଲେଣି। ହୁଏତ୍ ସ୍କୁଟରଟା ଚାଲିଗଲେ ରିକ୍ସା ଭଡ଼ା ଅଡୁଆରେ ପଡ଼ିବାକୁ ହେବ। ଅବନ୍ତୀ ବୋଧହୁଏ କହିଥାନ୍ତେ, ଭବନାଥତ ଆଉ ସାତ ଦିନ ପରେ ଫେରିବେ, ଚିଠି କ'ଣ ଏତେ ଶିଘ୍ର ପହଞ୍ଚିପାରିବ? ଏକଥା ବେଣୁଙ୍କୁ କହିବା କି ଲାଭ? ବେଣୁଧର ଭବନାଥଙ୍କ ଫେରିବା ବିଷୟ ଭୁବନେଶ୍ୱରରେ ସଂଗ୍ରହ କରିବା ପାଇଁ ଅସୁବିଧା ହେଲାନାହିଁ ଭାବିଲେ, ଏତେ ପଇସା ଖର୍ଚ୍ଚ କରି ଗୁଣୁପୁରରୁ ଏଠାକୁ ଆସିଛନ୍ତି। ଭବନାଥ ସାତ ଦିନ ପରେ ଫେରିବେ। କିଛି କାମ ନ ହେଲେ ବି ଘଣ୍ଟାଟିଏ ନେଇତ ଫେରିହେବ। ଭୁବନେଶ୍ୱରରେ ଖଲ୍ଲିକୋଟ ପଢ଼ାବେଳର ଏତେ ସାଙ୍ଗସାଥି ଯେ ରହିବା ସେମିତି ଅସୁବିଧା ହେବନି।

ଭୁବନେଶ୍ୱରରେ ବେଣୁଧର ବିଭିନ୍ନ ସାଙ୍ଗମାନଙ୍କୁ ଦେଖାକଲେ। ବିଭିନ୍ନ କଥା ଆଲୋଚନା ଭିତରେ ସବୁଠି ଶୁଣିଲେ ଭବନାଥଙ୍କ କଥା। ଜଣେ ଭବନାଥଙ୍କୁ ପ୍ରଶଂସାରେ ଗଛରେ ଚଢ଼େଇଦେଲା ବେଳକୁ ଦଳେ ଚୋର ଚଣ୍ଡାଳ କରି ଶୋଧୁଛନ୍ତି। ବେଣୁଧର ଭାବିଲେ, ତା ହେଲେ ଯେଉଁ ଭୁବନେଶ୍ୱରକୁ କଳାର ତୀର୍ଥ ବୋଲି ସେ ଭାବିଥିଲେ, ଯେଉଁ

ଭୂଇଁରେ ପାଦ ଦେବାପାଇଁ ସେ ବିଗତ ଦୁଇ ଦଶନ୍ଧି ଧରି ସ୍ୱପ୍ନ ଦେଖି ଆସିଥିଲେ ତାହେଲେ ଏଇ ସେହି ଭୁବନେଶ୍ୱର ଯେଉଁଠି ଖଇ ଟିଏ ଫୁଟିଲେ ବୋମାଟିର ଶବ୍ଦ ହୁଏ। ଯେଉଁଠି ଚାରାଟିଏ ପୋତିଦେଇ ଦଣ୍ଡକାରଣ୍ୟର ବାହାଦୁରି ନିଆଯାଏ। ଯେଉଁଠି ଛବି ନ ଆଙ୍କି ମଧ ଶିଳ୍ପୀ ହେବାର ଆସ୍ପର୍ଦ୍ଧା ଅଛି ସେହି ରାଜ୍ୟରେ ପୁଣି ଏତେ ନିନ୍ଦୁକ। ହଁ, ଯେଉଁମାନେ ଜୀବନରେ କିଛି ଭଲ କରିନାହାନ୍ତି, କରିବାର ମଧ କିଛି ସମ୍ଭାବନା ନାହିଁ, ଅନ୍ୟର ଗୋଡ଼ ଧରି ତଳକୁ ଟାଣିବା ପାଇଁ ପଛେଇବେ କାହିଁକି ? ବେଣୁଧରଙ୍କ ଭିତରେ ଅନେକ ଦିନ ଧରି ଶୋଇଥିବା ଅଜଗରଟି ଗରଜି ଉଠିଲା- କିହୋ! ତମେ ଖାଲି ଛବି ଆଙ୍କୁଛ। କଟକ, ଭୁବନେଶ୍ୱରରେ ରହିଚ ବୋଲି, ଦି ଚାରିଟା ପୁରସ୍କାର ଯୋଗାଡ଼ କରି ପକେଇଚ ବୋଲି ବଡ଼ ଶିଳ୍ପୀର ବାହାଦୁରି ମାରୁଚ। ଦେଖିବା, ଶହ ଶହ ପିଲାଙ୍କ ଆଗରେ ଚକ୍ ଧରି ବ୍ଲାକ୍‌ବୋର୍ଡ଼ରେ ଆଙ୍କିଲ। କ'ଣ ନା କଥା କଥାରେ ପିକାସୋ, ନହେଲେ ଡ଼ାଲି। ବେଣୁଧର ମନେ ମନେ ଭାବିଲେ, ରଖହେ ତମର ସେ ଡ଼ାଲି, ମାଲି, ଢ଼ାଲି ତମକୁ ବଡ଼। ତମେ ତାହେଲେ ଭାବିଚ ଆମେ ମୋଚି। ଆମେ ବି ତମ ଭଳି ଆଙ୍କି ପାରିବୁ। ତମେ ଗୁଣୁପୁର ଆସି ଦିନେ ରହିପାରିବ କି? ଗୋଳିଆ ପାଣି ତମକୁ ସୁହାଏ। ଗୁଣୁପୁରରେ ଗୋଳିଆ ପାଣି ନାହିଁ। ବଂଶଧାରାର ନିର୍ମଳ ଧାରା ସେଠି ବୋହୁଛି। ତଥାପି ବେଣୁଧର କରିପାରିବେ ବା କ'ଣ? ତାଙ୍କ ଭଳି ଏମିତି ଶହ ଶହ ହଜାର ହଜାର ନିର୍ବୋଧ ମଣିଷ, ମଫସଲି ହୁଣ୍ଡା ଭୁବନେଶ୍ୱରର ରାଜପଥରେ ମନ୍ତ୍ରୀଙ୍କ ଫାଟକ ଆଗରେ, ସେକ୍ରେଟେରିଏଟ୍‌ର ଲିଫଟ୍ ପାଖରେ ପାଟି କରି କରି ଥୋବଡ଼ା ହୋଇ ଫେରିଯାଉଛନ୍ତି। ବେଣୁଧରଙ୍କୁ କିଏ ପଚାରେ ?

ଆଜି ଭବନାଥଙ୍କ ଫେରିବାର ଦିନ। ବେଣୁଧର ବଂଧୁଙ୍କ ସ୍କୁଟର ପଛରେ ବସି ଭୁବନେଶ୍ୱର ବିମାନବନ୍ଦରରେ ପହଞ୍ଚିଲେ। ଭାବିଲେ ଦି କଥା ହେବ। ଭବନାଥଙ୍କ ସଂଗେ ଦେଖା ଓ ଘଣ୍ଟା ଓ ତାପରେ ଉଡ଼ାଜାହାଜ ଦେଖା। ବେଣୁଧର ଉଡ଼ାଜାହାଜ ଉପରେ ଉଡ଼ିବାର ଦୃଶ୍ୟ

ଯାହା ଗୁଣୁପୁରରେ ବେଳେବେଳେ ଦେଖିଛନ୍ତି ଓ ଶବ୍ଦ ଶୁଣିଛନ୍ତି । ବାସ୍ତବିକ୍ ଉଡ଼ାଜାହାଜ ଦେଖିବାର ସୁଯୋଗ ସେ ଜୀବନରେ ପାଇନାହାନ୍ତି । ଉଡ଼ାଜାହାଜର ଛବି ସେ ପିଲାଙ୍କୁ ଶିଖେଇଛନ୍ତି କିନ୍ତୁ ଜୀଅନ୍ତା ଉଡ଼ାଜାହାଜ ଦେଖିବାରେ ଏହି ହେଉଛି ଜୀବନରେ ପ୍ରଥମ ସୁଯୋଗ । ଭବନାଥଙ୍କ ପତ୍ନୀ ଓ ପିଲାମାନେ ମଧ୍ୟ ଭବନାଥଙ୍କୁ ପାଛୋଟି ଆଣିବା ପାଇଁ ବିମାନ ବନ୍ଦର ଯାଇଛନ୍ତି । ନିର୍ଦ୍ଦିଷ୍ଟ ସମୟର ଦେଢ଼ଘଣ୍ଟା ବିଳମ୍ବରେ ବିମାନ ଭୁବନେଶ୍ୱରରେ ଓହ୍ଲେଇଲା । ବେଣୁଧର ଭବନାଥଙ୍କୁ ଚିହ୍ନିବାରେ ସମୟ ଲାଗିଲା, କିନ୍ତୁ ଭବନାଥ ବେଣୁଧରଙ୍କୁ ହଠାତ୍ ଚିହ୍ନି ପାରି କୁଣ୍ଢେଇ ପକେଇଲେ । ବେଣୁଧର ଭବନାଥଙ୍କୁ ଲାଉଞ୍ଜର ଗୋଟିଏ କୋଣକୁ ଡ଼ାକି ନେଇ ଫୁସ୍‌ଫୁସ୍ ହୋଇ କିଛି କହିବାର ଦେଖାଗଲା । ତାପରେ ଭବନାଥ ନିଜ ହାତରୁ ଖୋଲି ବୋଧହୁଏ ଘଣ୍ଟାଟି ବେଣୁଧର ହାତକୁ ବଢ଼ାଇ ଦେଲେ । ଘର ଆଡ଼େ ଆସ, କହି ଅବନ୍ତୀଙ୍କ ପାଖକୁ ଫେରିଆସିଲେ । ଅବନ୍ତୀ ଭବନାଥଙ୍କୁ ଟିକିଏ ଛିଗୁଲେଇ କହିଲେ, ''ତା' ହେଲେ ଏଇ ତମର ବାଲ୍ୟବନ୍ଧୁ ବେଣୁଧର । ତମେତ ଆନ୍ତର୍ଜାତିକ ଶିଳ୍ପୀ ହୋଇଗଲ, ବେଣୁଧରଙ୍କୁ ଟିକିଏ ବୁଲେଇ ଆଣନ୍ତୁ ।''

# ସିଟିହଲ୍ ଟାୱାର ଓ ନୋବେଲ୍ ପୁରସ୍କାର

ଓଡ଼ିଶାର ଲଳିତକଳା ଏକାଡ଼େମୀର ସଂପାଦକ ପଦ ଯେତେବେଳେ ଅଣଚିତ୍ରକରଙ୍କ ଅକ୍ତିଆରରେ ଥିଲା ସେତେବେଳେ ଥରେ କଥାରେ କଥାରେ ଜନୈକ ସଂପାଦକ ମହାଶୟ ଭବନାଥଙ୍କୁ ଟିକିଏ ଛିଗୁଲେଇ କହି ପକେଇଲେ ''ଭବନାଥ ! ତମେ ତ ଚିତ୍ରଶିଳ୍ପୀଙ୍କ ସଂପର୍କରେ ଏତେ ଲମ୍ବା ଚଉଡ଼ା ବଖାଣୁଛ, ତମେ ବୋଧହୁଏ ଜାଣିନ ତମର ପିକାସୋ ମଧ୍ୟ ନୋବେଲ ପୁରସ୍କାର ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇନାହାନ୍ତି''। ଚିତ୍ରଶିଳ୍ପୀଙ୍କୁ ନୋବେଲ ପୁରସ୍କାର ମିଳେକି ନାହିଁ ଏସଂପର୍କରେ ଭବନାଥ ବାସ୍ତବିକ ସଚେତନ ନଥିଲେ। ସଂପାଦକଙ୍କୁ ଉତ୍ତର ଫେରାଇବା ପାଇଁ ଭବନାଥଙ୍କ ପାଖରେ କିଛି ଉପାଦାନ ନଥିଲା, ଏଣୁ ଭବନାଥ ଲାଙ୍ଗୁଳ ଯାକି ସେଦିନ ସଂପାଦକଙ୍କ ଅଫିସରୁ ଫେରିଆସିଲେ। ଭାବିଲେ, ଶିଳ୍ପୀଙ୍କ ଭାଗ୍ୟରେ ଅପମାନ ଛଡ଼ା ଆଉ କ'ଣ ବା ଥାଇପାରେ ? ଅବଶ୍ୟ ଭବନାଥ ଯଦି ଜୋରକରି ସଂପାଦକଙ୍କୁ ପଚାରିଥାନ୍ତେ ''ଆପଣ କ'ଣ କହିପାରିବେ ଯେତେ ଯେତେ ଆଜି ଯାଏଁ ନୋବେଲ ପୁରସ୍କାର ପାଇଛନ୍ତି ସମସ୍ତେ କ'ଣ ସାହିତ୍ୟିକ ? ଏଥିରେ ଜଣେ ହେଲେ ବି ଚିତ୍ରକର ନାହାନ୍ତି ?''

ସଂପାଦକଙ୍କ ପାଟି ଖନେଇ ଯାଆନ୍ତା ନିଶ୍ଚୟ। ନୋବେଲ ପୁରସ୍କାରର ତାଲିକା ସଂପାଦକଙ୍କ ପାଖରେ ବି ନଥିଲା।

ଏମିତି କହିବାମାନେ ସାହିତ୍ୟିକମାନଙ୍କ ବିରୋଧରେ ଯୁଦ୍ଧ ଘୋଷଣା କରିବା। ଚିତ୍ରଶିଳ୍ପୀ ଓ ସାହିତ୍ୟିକମାନଙ୍କୁ ଏକା ତରାଜୁରେ ଓଜନ କରିହେବନି। ତାଙ୍କ ହାତରେ କଲମ। କୁହାଯାଇଛି "କଲମ ଅସି ଠାରୁ ଶକ୍ତିଶାଳୀ"। ଯଦି କୁହାଯାଇଥାନ୍ତା "ତୂଳୀ ଅସିଠାରୁ ଶକ୍ତିଶାଳୀ" ତା'ହେଲେ ଏକଥାକୁ ପାଥେୟ କରି ଭବନାଥ ଆଗେଇ ଯାଆନ୍ତେ।

ଭବନାଥ କିନ୍ତୁ ବିଭିନ୍ନ ପ୍ରକାରର ଯୁକ୍ତି ଖୋଜି ବସିଲେ। ଯାହାକୁ ନେଇ ପ୍ରମାଣ କରିହେବ ଚିତ୍ରକଳା ଓ ଚିତ୍ରଶିଳ୍ପୀ ସାହିତ୍ୟ ଓ ସାହିତ୍ୟିକମାନଙ୍କ ଠାରୁ ଉତ୍କୃଷ୍ଟତର। ଭବନାଥଙ୍କର ହଠାତ୍ ମନେ ପଡ଼ିଲା ଆଲତାମିରା ଗୁହାର ଆହତ ବାଇସନ୍‌ର କରୁଣାନ୍ତକ ଚିତ୍ର "ଯତ୍ କ୍ରୌଞ୍ଚ ମିଥୁନାଦ୍ ଏକଂ...." ଠାରୁ ପୁରାତନ। ଏହା ଇତିହାସ ସିଦ୍ଧ କିନ୍ତୁ ଭବନାଥଙ୍କର ସନ୍ଦେହ ହେଲା କାଳେ ସାହିତ୍ୟିକ ମାନେ କହିପାରନ୍ତି ଶୂନ୍ୟରୁ ଶବ୍ଦ, ଶବ୍ଦରୁ ସାହିତ୍ୟର ଜନ୍ମ, ତାହେଲେ ସେମାନେ ଆଲତାମିରା ଅତିକ୍ରମ କରି କାହିଁନା କାହିଁ ଆଗକୁ ଚାଲିଯିବେ। ଏଣୁ ଭବନାଥ "କଳା ମଣିଷର ପ୍ରଥମ ଅଭିବ୍ୟକ୍ତି" କଥାଟିକୁ ଆପାତତଃ ନିଜ ପାଖରେ ରଖିଲେ।

ଚିତ୍ରଶିଳ୍ପୀ ଭବନାଥ କିନ୍ତୁ ସନ୍ତୁଷ୍ଟ ରହିପାରିଲେନି। ଉପରକୁ ଶାନ୍ତ ମନେ ହେଉଥିଲେ ମଧ୍ୟ ମନ ଭିତରେ ଶହ ଶହ ଲହଡ଼ି ମୁଣ୍ଡ ପିଟୁଥିଲା। ଖାଲି ଖୋଜି ବସିଲେ ଯୁକ୍ତି।

ହଁ, ଏଭିତରେ ହଠାତ୍ କିଛି ଉପାୟ ନପାଇ ଦଳେ ସାହିତ୍ୟିକବଂଧୁଙ୍କୁ ଚିତ୍ରକଳାରେ ଦୀକ୍ଷିତ କରାଇନେଲେ। ଭାବିଲେ ଦରକାର ବେଳେ ଏମାନେ ଭବନାଥଙ୍କୁ ସାହାଯ୍ୟ କରିବେ। ସାହିତ୍ୟିକ ଓ ଚିତ୍ରଶିଳ୍ପୀଙ୍କ ଭିତରେ ଭାବ ଏକବାରେ ନାହିଁ ତା ନୁହେଁ।

ସମସ୍ତେ କହୁଚନ୍ତି ସାହିତ୍ୟ ଓ କଳା ପରସ୍ପର ପରିପୂରକ। ଭବନାଥଙ୍କ ଏବେ ମନେ ପଡ଼ିଲା ସାହିତ୍ୟ ଚିତ୍ରକଳାକୁ ଛାଡ଼ି ତିଷ୍ଠି ପାରିବନି। ସାହିତ୍ୟିକ ଜଣେ ଗପଟିଏ, କବିତାଟିଏ ବା ଉପନ୍ୟାସଟିଏ ଲେଖା ଆରମ୍ଭ କଲାଦିନଠାରୁ ଚିତ୍ରଶିଳ୍ପୀଟିଏ ମନେ ମନେ ଠିକଣା କରିଦେଇଥାଏ, ଯେମିତି ଝିଅ ଗୃହଯୁକ୍ତ ନ ହେଉଣୁ ବାପ ମନେ ମନେ ବର ଖୋଜି ବସେ। ସେହି ଚିତ୍ରଶିଳ୍ପୀଙ୍କ ସାଙ୍ଗେ ବେଳେ ବେଳେ ଦେଖାହେଲେ ବହି କଭର କଥା। କେତେ ରଙ୍ଗର କଭର ହେବ, ପ୍ରକାଶକ ଚାହୁଁନି ତିନି ରଙ୍ଗରେ ଛାପିବ; ଏଣୁ ବାଇ କଲର୍ ବ୍ଲକ୍‌କୁ ଟ୍ରାଇକଲର୍ କରିବାକୁ ହେବ। ସାହିତ୍ୟିକଙ୍କ ପାଇଁ ହୁଏତ ଯାଦୁ ବିଦ୍ୟା। ଶିଳ୍ପୀଜାଣେ ସେ ଗୋଟେ ଦିଟା ସ୍କ୍ରିନ୍ ପକେଇଦେବ। ସାହିତ୍ୟିକ ଭାବନ୍ତି ତାଙ୍କର ସବୁଗପର ବା ସବୁ କବିତାର ନିର୍ଯ୍ୟାସ ଡ଼ିମେଇ ବହିର କ୍ଷୁଦ୍ର କଳେବର ଉପରେ ରୂପାୟିତ ହୋଇଯିବ। ଏମିତି ହଉ ହଉ ଯାହା ହେଲା ରୀତିରେ କଭର୍ ଡ଼ିଜାଇନଟିଏ ଶିଳ୍ପୀ ଆଙ୍କି ଦିଅନ୍ତି। ତାପରେ ଦେଖାଯାଏ ଯିମିତି କଳା ପାହାଡ଼କୁ ଦେଉଳ ଦୁଆରେ ବସେଇ ଦେଇ ରାମଚଣ୍ଡୀ ଚଂପଟ୍। କଭର୍ ଉପରେ ସାହିତ୍ୟିକଙ୍କ ନାଁ ଦାଉ ଦାଉ ହେଇ ଜଳୁଥାଏ, ସତେ ଯିମିତି ଡ଼ିଜାଇନ୍‌ଟି ତାଙ୍କର। ଶିଳ୍ପୀ ବିଚରା ବେଳେବେଳେ ଛାପାଖାନାର ନାଁ ଉପର ଧାଡ଼ିରେ ବା କବି ଟିକିଏ ଭାବପ୍ରବଣ ହେଇଥିଲେ 'ମୁଖବନ୍ଧ'ରେ ଅମରହୋଇ ଗଲି ଭାବନ୍ତି। କବି ରାମଚଣ୍ଡୀଙ୍କ ଭଳି ନଦୀର ଗଭୀର ପାଣିରେ ଅବଗାହନ କରି ରସାସ୍ୱାଦନ କରନ୍ତି। କଳାକାରଙ୍କୁ ଟୋପେ ପାଣି ମଧ୍ୟ ମିଳେନି। ବହି ଛାପା ହେଲାପରେ ପ୍ରକାଶକ ଶିଳ୍ପୀଙ୍କ ପାଉଣା ଦେବାକଥା ସଂପୂର୍ଣ୍ଣ ଭୁଲିଯାଆନ୍ତି। ଛାପା ବହି ଖଣ୍ଡିକ ବି ଶିଳ୍ପୀଙ୍କୁ ମିଳେନି। ଏଣେ ସାହିତ୍ୟିକ ଜଣଙ୍କ ନବଜାତ ଶିଶୁର ଅଭ୍ୟର୍ଥନା ଓ ଲାଳନ ପାଳନରେ ଲାଗିପଡ଼ନ୍ତି। ବିଚରା ଶିଳ୍ପୀ ସେମିତି ଦୁଆର

ଆଗରେ ବସିରହିଥାଏ ହୁଏତ ରାମଚଣ୍ଡୀ ଫେରିବ। ଏଇ ହେଲା ଶିଳ୍ପୀ ସାହିତ୍ୟିକଙ୍କ ଆପାତତଃ କାବ୍ୟିକ ସଂପର୍କ। ଶିଳ୍ପୀ ଭାବେ 'ମୋର ତ ନିଜର ପାଟି ନାହିଁ ହୁଏତ କବି ଦେଇ ପ୍ରସ୍ଫୁଟିତ ହୋଇଯିବି''।

ଭବନାଥ ନୋବେଲ ପୁରସ୍କାର ଘଟଣାଟିକୁ ଏକ ସମାଲୋଚକର ଦୃଷ୍ଟିଭଙ୍ଗିରେ ବିବେଚନା କରିବାକୁ ଲାଗିଲେ। ଯଦିଓ ନୋବେଲ ପୁରସ୍କାର ବାଲା ଶିଳ୍ପୀମାନଙ୍କୁ ପୁରସ୍କାର ଦେଉନାହାନ୍ତି ଅନ୍ତତଃ ଆମ ଦେଶର ଜ୍ଞାନ ପୀଠ ବାଲାତ ଦେଇ ପାରନ୍ତେ। କାହିଁ, ଜଣେ ହେଲେ ଓଡ଼ିଆ ଶିଳ୍ପୀତ ଜ୍ଞାନପୀଠ ପାଇନାହାନ୍ତି। ଗୋପୀବାବୁ, ସଚ୍ଚି ବାବୁ, ବେଶ୍ ଦୁଇଜଣ ସାହିତ୍ୟିକ। ଭବନାଥଙ୍କର ମନେହୁଏ ଚିତ୍ରଶିଳ୍ପୀଙ୍କ ବିରୋଧରେ ସାହିତ୍ୟିକମାନଙ୍କର ଏ ଏକ ବିରାଟ ଦେଶ ବ୍ୟାପୀ ଷଡ଼ଯନ୍ତ୍ର। ଏକ ଆନ୍ତର୍ଜାତିକ ଷଡ଼ଯନ୍ତ୍ର।

ଭବନାଥଙ୍କର ଦୃଷ୍ଟି ବର୍ତ୍ତମାନ ସାରଳା ପୁରସ୍କାର ଉପରେ ନିବଦ୍ଧ ହେଲା। ଏଠିବି ସେଇ ଏକାକଥା। ସାହିତ୍ୟିକମାନେ ଟଂକା ଥଳି ପାଇଲା ବେଳକୁ ଶିଳ୍ପୀଙ୍କ ବେଳରେ କେବଳ ଗାମୁଛା। ସାରଳା ପୁରସ୍କାର କମିଟିର ପ୍ରତିଷ୍ଠାତା, ପ୍ରତିଷ୍ଠାତ୍ରୀଙ୍କ ଠାରୁ ଆରମ୍ଭକରି ସଂପାଦକ ପର୍ଯ୍ୟନ୍ତ ସମସ୍ତେ ଭବନାଥଙ୍କର ପରିଚିତ, ଅତିଜଣାଶୁଣା କିନ୍ତୁ ଭବନାଥ କ'ଣ ସେମାନଙ୍କୁ ଯାଇ କହିବେ " ଆପଣମାନେ ଚିତ୍ରଶିଳ୍ପୀ ମାନଙ୍କୁ କାହିଁକି ସାରଳା ପୁରସ୍କାର ଦେଉନାହାନ୍ତି ?" କଥାଟା ଭିକ ମାଗିଲା ପରିହେବ। ଏମିତିରେ ପାଇବା ନପାଇବା ସମାନ ହେଇଯିବ। ଏଣୁ ଭବନାଥ ସଂଭ୍ରମରେ ନିରବ ହେଇଯାଆନ୍ତି। ମୁରଲୀ ବାବୁଙ୍କୁ ଦିପଦ କହିବାକୁ ଇଚ୍ଛାହୁଏ " ଆପଣ ଇଲ୍ଲା ପଣ୍ଡାଙ୍କ ଗୁରୁ ହୋଇ ମଧ ପ୍ରବର୍ତ୍ତେଇଲେନି ଯେ ସାରଳା ପୁରସ୍କାର ଚିତ୍ରଶିଳ୍ପୀମାନଂକୁ ଦିଆଯାଉ''। ମୁରଲୀ ବାବୁ ଗୁରୁ ସ୍ଥାନୀୟ ଶିଳ୍ପୀ। ତାଙ୍କ ଆଗରେ ଏକଥା କହିହେବନି। ଆଛା। ଶ୍ରୀମତୀ ପଣ୍ଡା

ତ ନିଜେ ଜଣେ ଚିତ୍ରଶିଳ୍ପୀ। ଶ୍ରୀନିକେତନ ଓ ଶାନ୍ତି ନିକେତନର ଆବହାଓ୍ୱା ତାଙ୍କ ଦେହରେ ଲାଗିଛି, ଏଣୁ ଅନ୍ତତଃ ସେବି ଭାବି ପାରିଥାନ୍ତେ ଚିତ୍ରଶିଳ୍ପୀଙ୍କ କଥା। ଛାଡ଼ କାହାକୁ ବା କହିବା।

ଭବନାଥ ଥରେ ଥରେ ଭାବନ୍ତି ଦଳେ ଟୋକା ଚିତ୍ରଶିଳ୍ପୀଙ୍କୁ ନେଇ ରଜ ସଂକ୍ରାନ୍ତିରେ ସୂଚନା ଭବନ ଗେଟ୍ ଆଗରେ ବିକ୍ଷୋଭ ପ୍ରଦର୍ଶନ କରିବେ। ବଂଶୀ ପଣ୍ଡାଙ୍କ ଲମ୍ବା ଗାଡ଼ି ଆଗରେ ଶୋଇ ଯିବେ। ପୁଣି ଭାବନ୍ତି ଯାହା ଗାମୁଛା ଖଣ୍ଡେ ଖଣ୍ଡେ ମିଳୁଛି ତାହା ମଧ୍ୟ ବନ୍ଦ ହେଇଯିବ। ଶିଳ୍ପୀମାନଙ୍କର ମଧ୍ୟ ସାରଳା ବାଲାଙ୍କୁ ପ୍ରବଳ ଡ଼ର। ମଝିରେ ମଝିରେ ଜଣେ ଅଧେ ଶିଳ୍ପୀ କ୍ୟାଲେଣ୍ଡର ଚିତ୍ର କରିବା ପାଇଁ ବରାଦ ପାଉଛନ୍ତି। ତାହା ମଧ୍ୟ ବନ୍ଦ ହୋଇଯାଇପାରେ। ମୋଟାମୋଟି ଦେଖିବାକୁ ଗଲେ ଭବନାଥଙ୍କ କଥାରେ ଚିତ୍ରଶିଳ୍ପୀ ମାନେ ସୂଚନା ଭବନ ରାସ୍ତାକୁ ମଧ୍ୟ ଆସିବେ କି ନାହିଁ ସନ୍ଦେହ। ଅତଏବ ଏସବୁ କାର୍ଯ୍ୟକ୍ରମ ସର୍ବଥା ବର୍ଜନୀୟ। ଭବନାଥ ଚୁପ୍‌ଚାପ ରହନ୍ତି। ଶିଳ୍ପୀଙ୍କ ଭାଗ୍ୟଟା ହେଲା ସେଇଆ। କାହାକୁ ନେଇ ଯୁକ୍ତି କରିବ।

ଥରେ ବସି ଏମିତି ବହୁତ କଥା ଭାବୁ ଭାବୁ ଭବନାଥଙ୍କ ଭାଗ୍ୟାକାଶରେ ସାମାନ୍ୟତମ ଆଶାର ଆଲୋକ ଦେଖାଗଲା। ଭବନାଥଙ୍କ ମନେପଡ଼ିଲା ରବୀନ୍ଦ୍ର ନାଥ ତ ନୋବେଲ ପୁରସ୍କାର ପାଇଛନ୍ତି। ତାଙ୍କର ଶ୍ରେଷ୍ଠ କାବ୍ୟ ଗୀତାଞ୍ଜଳି ପାଇଁ। ବର୍ତ୍ତମାନ ପ୍ରଶ୍ନହେଲା ପ୍ରଥମ - ରବୀନ୍ଦ୍ର ନାଥ କେବଳ ସାହିତ୍ୟିକ ଭାବେ ନୋବେଲ ପୁରସ୍କାର ପାଇଛନ୍ତି? ପ୍ରଶ୍ନଟିକୁ ଆଉ ଟିକେ ସ୍ପଷ୍ଟ କରି କହିଲେ, କବି ରବୀନ୍ଦ୍ର ନାଥ କେବଳ ନୋବେଲ ପୁରସ୍କାର ପାଇଛନ୍ତି ନା ଭାରତର ଜଣେ ଆଧୁନିକ ଚିତ୍ରକଳାର ପ୍ରବର୍ତ୍ତକ ଚିତ୍ରଶିଳ୍ପୀ ଓ କବି ରବୀନ୍ଦ୍ର ନାଥ ଗୀତାଞ୍ଜଳି ପାଇଁ ନୋବେଲ ପୁରସ୍କାର ପାଇଛନ୍ତି। ଦ୍ୱିତୀୟ - ଗୀତାଞ୍ଜଳି କାବ୍ୟ କଭର ସହିତ

ପୁରସ୍କାର ପାଇଛି ନା ନୋବେଲ ପୁରସ୍କାର ବାଲା ପୁରସ୍କାର ଦେବା ଆଗରୁ କବିତା ବହିରୁ କଭରଟିକୁ ଚିରି ଦେଇ କେବଳ କବିତାଗୁଡ଼ିକୁ ପୁରସ୍କାର ଦେଇଛନ୍ତି। ଏହି ଦୁଇଟି ପ୍ରଶ୍ନର ଉତ୍ତର ପାଇବା ପାଇଁ ଭବନାଥ ଚେଷ୍ଟାକଲେ କିନ୍ତୁ ଉତ୍ତର ପାଇବେ କେଉଁଠୁ ?

ଠିକ୍ ଏଭଳି ଏକ ଘଡ଼ି ସନ୍ଧି ମୁହୂର୍ତ୍ତରେ ଭାରତ ସରକାରଙ୍କ ଠାରୁ ଭବନାଥଙ୍କ ପାଖକୁ ଚିଠି ଆସିଲା ଯେ ସେ ସୁଇଡ଼େନରେ ଭାରତ ଉତ୍ସବ ପ୍ରଦର୍ଶନୀର ଆୟୋଜନ କରିବା ପାଇଁ ମନୋନୀତ ହେଇଛନ୍ତି। ତାଙ୍କୁ ଖୁବ୍ ଶୀଘ୍ର ଭାରତୀୟ ବିଶେଷଜ୍ଞଙ୍କ ଦଳରେ ସାମିଲ ହୋଇ ସୁଇଡ଼େନ୍ ପରିଭ୍ରମଣରେ ଯିବାକୁ ହେବ। ସୁଇଡ଼େନ କଥାଟି ଶୁଣିଲା ପରଠୁ ଭବନାଥଙ୍କ ମନ ଭିତରଟା କୁରୁଳି ଉଠିଲା। ଏ ଭିତରେ ଭବନାଥ ସଂଗ୍ରହ କରିସାରିଛନ୍ତି ଯେ ସୁଇଡ଼େନ ଦେଶର ରାଜଧାନୀ ଷ୍ଟକ୍‌ହୋମ୍ ସହରରେ ନୋବେଲ ପୁରସ୍କାର ଦିଆଯାଏ। ସୁଇଡ଼େନ ହେଉଛି ବାସ୍ତବିକ ନୋବେଲ ପୁରସ୍କାରର ଦେଶ। ଏତେବଡ଼ ଖୁସି ଖବରଟା ଭବନାଥ ଦାଦାଙ୍କୁ ଜଣେଇବାକୁ ଚାହିଁଲେ। ଦାଦାଙ୍କ ପୁରା ନାଁ ହେଲା ଅସୀମ ବସୁ। ଓଡ଼ିଶାର ଜଣେ ବିଶିଷ୍ଟ ଚିତ୍ରଶିଳ୍ପୀ। ସମସ୍ତଙ୍କର ଦାଦା। ଦାଦାଙ୍କୁ ଭେଟିବାକୁ ହେଲେ ତାଙ୍କ ଠିକଣା ଭୁବନେଶ୍ୱରର ରବୀନ୍ଦ୍ର ମଣ୍ଡପ। ଭବନାଥ ସେଦିନ ସଂଧ୍ୟାରେ ଦାଦାଙ୍କୁ ରବୀନ୍ଦ୍ର ମଣ୍ଡପ ପାଖ ଚା ଦୋକାନରେ ଧରିଲେ। ଭବନାଥ ଏକା ନିଶ୍ୱାସରେ କହିଗଲେ ‘‘ଦାଦା ! ଷ୍ଟକ୍‌ହୋମ୍ ରେ ଭାରତ ଉତ୍ସବ ପାଳିତ ହେଉଛି। ଭାରତର ଲୋକପ୍ରିୟ କଳା ସଂପର୍କରେ ପ୍ରଦର୍ଶନୀ ହେଉଛି। ମୋତେ ଦିଲ୍ଲୀରୁ ଡ଼କରା ଆସିଛି। ମୁଁ ଆସନ୍ତା ସପ୍ତାହରେ ଷ୍ଟକ୍‌ହୋମ୍ ଯିବି। ବର୍ତ୍ତମାନ ପ୍ରଦର୍ଶନୀ ଜାଗା ଦେଖାଦେଖି କରି ଆସିଲା ପରେ ଆମେ ପ୍ରଦର୍ଶନୀ ସାମାନ ନେଇ ସେଠି ସଜେଇବା ପାଇଁ ଯିବା। ମୁଁ ଶୁଣିଛି

ସୁଇଡ଼େନ ନୋବେଲ ପୁରସ୍କାରର ଦେଶ। ସେମାନେ ଆମକୁ ନୋବେଲ ପୁରସ୍କାର ମଧ ଦେବେ। ଭବନାଥ ଭାବପ୍ରବଣ ହୋଇ କଥା କହିଚାଲିଛନ୍ତି। ରବୀନ୍ଦ୍ର ମଣ୍ଡପ ପାଖର ଚା ଦୋକାନ କ'ଣ, ପାନ ବିଡ଼ି ଦୋକାନ ସବୁ ଗୋଟିଏ ଗୋଟିଏ ସଂସ୍କୃତିର ତୀର୍ଥ। ଏଠି ବିଶିଷ୍ଟ ଅଭିନେତା, ଅଭିନେତ୍ରୀଙ୍କ ଠାରୁ ଆରମ୍ଭ କରି ସିନେମା ପ୍ରଡ୍ୟୁସର, କ୍ୟାମେରା ମ୍ୟାନ୍, ନାଟ୍ୟକାର, କବି, ସାହିତ୍ୟିକଙ୍କ ଖଟି ବସେ। କଥାରେ କଥାରେ ଏଠି ନାଟକ ହୁଏ। ଚା କପ୍‌ରେ ସାଂସ୍କୃତିକ ଝଡ଼ ସୃଷ୍ଟି ହୁଏ। ଭବନାଥଙ୍କ ଅବାନ୍ତର କଥାଗୁଡ଼ିକ ଅନ୍ୟ କାହାର କାନରେ ପଡ଼ିଯିବ, ଏଣୁ ଦାଦା ଭବନାଥଙ୍କ ପିଠି ଥାପୁଡ଼େଇ ଚା ଦୋକାନ ବାହାରକୁ ନେଇ ଆସିଲେ। ଚାପା ଗଳାରେ କହିଲେ, ''ଭବନାଥ, ତମ କଥା ଶୁଣିଲେ ଲୋକ ହସିବେ। ଲୋକେ ତମକୁ ପାଗଳ କହିବେ। ତମେ କେବେ ଶୁଣିଚ ଚିତ୍ରଶିଳ୍ପୀ ନୋବେଲ ପୁରସ୍କାର ପାଇଛନ୍ତି? ତମର ବୋଧହୁଏ ସେହି ଦିନଠାରୁ ମୁଣ୍ଡ ଖରାପ ଧରିଲାଣି। ଅନ୍ତତଃ ଏବେ ପାଇଁ ଚୁପ୍ ରହ। ଷ୍ଟକ୍‌ହୋମ୍‌ରୁ ଫେରିଲା ପରେ ନୋବେଲ ପୁରସ୍କାର କଥା ଆଲୋଚନା କରିବା''। ଭବନାଥ ଦାଦାଙ୍କ ଠାରୁ ସ୍ନେହ ମିଶା ତାଗିଦ ଶୁଣି ଚୁପ୍ ହେଇଗଲେ। ଭାବିଲେ ଦାଦା ଡ୍ରାମା ସେଟ୍‌ରେ ବ୍ୟସ୍ତ ଥିବାରୁ ତାଙ୍କ କଥାର ଗୁରୁତ୍ୱ ଘେନି ପାରିଲେ ନାହିଁ କିନ୍ତୁ ଦାଦାଙ୍କୁ କହିଦେଲେ। ପରେ ଭବନାଥଙ୍କ ଆଉ କିଛି କରିବାର ନ ଥିଲା।

ସପ୍ତାହକ ପରେ ଭବନାଥ ଦିଲ୍ଲୀ ଦେଇ ଷ୍ଟକ୍‌ହୋମ୍ ଅଭିମୁଖେ ଯାତ୍ରା କଲେ। ଷ୍ଟକ୍‌ହୋମ୍ ବିମାନ ବନ୍ଦରରେ ଭାରତରୁ ଯାଇଥିବା ବିଶେଷଜ୍ଞ ଦଳକୁ ଭବ୍ୟ ସଂବର୍ଦ୍ଧନା ମିଳିଲା। ଭାରତୀୟ ଦୂତାବାସର ପ୍ରଥମ ସଚିବ ଭବନାଥଙ୍କୁ ''ଷ୍ଟକ୍‌ହୋମ୍ ହୋଟେଲ'' ଦୁଆର ପାଖରେ ଛାଡ଼ିଦେଇ ଫେରିଗଲେ। ହୋଟେଲର ପରିଚାରିକା

ଭବନାଥଙ୍କୁ ବାଟ କଢ଼େଇ ନେଇ ତାଙ୍କ ପାଇଁ ଉଦ୍ଦିଷ୍ଟ ରୁମ୍ ଖୋଲି ଦେଲା। ସେତେବେଳକୁ ଘଣ୍ଟାରେ ବେଳ ନଇଁ ଆସିଲାଣି। ଷ୍ଟକ୍‌ହୋମ୍ ଆକାଶରେ ସୂର୍ଯ୍ୟଅସ୍ତ ଯାଇ ନାହାନ୍ତି। ପରିଚାରିକା ଝରକା ପରଦା ଆଢ଼େଇ ଦେଉ ଦେଉ ସୂର୍ଯ୍ୟକିରଣରେ ଝଲକୁଥିବା ଗୋଟିଏ ଗମ୍ବୁଜ ଭବନାଥଙ୍କ ଆଖିରେ ପଡ଼ିଲା। ଭବନାଥ ପରିଚାରିକାକୁ ପଚାରୁ ନ ପଚାରୁ ପରିଚାରିକା ନିଜ ଆଡୁ କହି ପକେଇଲା, 'ଏଇଟା ସିଟି ହଲ୍ ଟାୱାର'' ଏଇଠି ନୋବେଲ ପୁରସ୍କାର. ବିଜେତାମାନଙ୍କୁ ସମ୍ବର୍ଦ୍ଧନା ଦିଆଯାଏ। ''ଏନ୍‌ଜଏ'' କହି ବିଦାୟ ନେଇ ପରିଚାରିକା ଫେରିଗଲା। ଭବନାଥଙ୍କ ଉନ୍ମାଦନା ଆଉ ଦେଖେ କିଏ। ଝରକାର କାଚ କବାଟ ଖୋଲିଲେ ଦମକାଏ ଶୀତଳ ପବନ ଘର ଭିତରକୁ ପଶିଆସିଲା। ବୋଧହୁଏ ତିନିଶହ ଚାରିଶହ ବର୍ଷ ତଳର ପୁରୁଣା କୋଠା। ଗୋଟିଏ କଣକୁ ନଭଶ୍ଚୁମ୍ବୀ ଟାୱାର। ଟାୱାରର ଗୋଟିଆ ଅଂଶତକ ବି ସୁନା ପାତରେ ଛାଉଣି ହେଲାଭଳି ଦିଶୁଚି। ଅସ୍ତଗାମୀ ସୂର୍ଯ୍ୟଙ୍କ କିରଣ ଟାୱାର ଉପରେ ପ୍ରତିଫଳିତ ହେଇ ମାରଲନ୍ ହ୍ରଦରେ ସୁନାର ଲହଡ଼ି ସୃଷ୍ଟି କରୁଚି। କି ଲୋଭନୀୟ ସେହି ଦୃଶ୍ୟ। ଭବନାଥ ନିଜକୁ, ନିଜ ଭାଗ୍ୟକୁ ଧନ୍ୟ ମଣିଲେ। ମନ ଭିତରେ ଆତ୍ମପ୍ରତ୍ୟୟ ଜାଗ୍ରତ ହେଲା। ମରି ଆସୁଥିବା ଚାରାଟି ପ୍ରଥମ ବର୍ଷାର ସ୍ପର୍ଶରେ ମୁଣ୍ଡଟେକି ଠିଆ ହେଲାଭଳି ଭବନାଥଙ୍କ ଭିତରର ଚିତ୍ରଶିଳ୍ପୀଟି ଭବନାଥଙ୍କୁ ତାହଲ୍ୟ କଲାପରି ଯାତ୍ରାର ଡ଼ାଇଲଗ୍ ଆରମ୍ଭ କଲା :

''ଶୁଣ ! ଶୁଣ ! ମୋର ସାହିତ୍ୟିକ ଗଣ''
ଶୁଣ ନୋବେଲର କଥା
ହେ ବଂଧୁ ! ଶୁଣ, ପୁରସ୍କାର କଥା
ଏଇଠି ମିଳୁଛି ସୁନାର ପଦକ, ଚିତ୍ର ପାଇଁ,
ହେ କବି ବଂଧୁ ! ଛବି ପାଇଁ

ସେକଥା ପଡ଼ିଲା ଜଣା ମୋତେ ସେକଥା ଗଲାଣି ଜଣା''

ଭବନାଥ ନିଜକୁ ନିଜେ ଅଟ୍ଟହାସ୍ୟ କଲେ ହାଃ...ହାଃ....ହାଃ... ହସର ଲହରୀ ମାରଲନ୍ ହ୍ରଦର ସୁନାର ଲହଡ଼ିରେ ପ୍ରତିଧ୍ୱନିତ ହେଲା। ଏବେ ମାରଲନ୍ ବି ହସିଲା ଓ ତାକୁ ସମର୍ଥନ କଣେଇ ମୁଣ୍ଡ ହଲେଇଲା ସିଟି ହଲ୍ ଟାୱାର୍। ଶୁଣ। ହେ ନୋବେଲ ଦେଶର ମୋର ପ୍ରିୟ ଭାଇ ଓ ଭଉଣୀ ମାନେ। ତୁମେ ଆଜି ଯାଏଁ ଯେଉଁ ଅନ୍ୟାୟ କରିଛ ଚିତ୍ରଶିଳ୍ପୀ ମାନଂକ ପାଇଁ, ଏବେ ତାହା ତୁମେହିଁ ସଂଶୋଧନ କର। ତମେ ବୋଧହୁଏ ଇତିହାସର ପୃଷ୍ଠା ଓଲଟାଉ ଓଲଟାଉ ଭୁଲିଯାଇଛ, ବୀର ଓଡ଼ିଆ ଜାତିକୁ। ତୁମେ ରବୀନ୍ଦ୍ରନାଥଙ୍କୁ ପୁରସ୍କୃତ କରି ସାରିଛ ଏଣୁ ପଛକୁ ଫେରି ଜୟଦେବ, ସାରଳା କି ଜଗନ୍ନାଥ ଦାସଙ୍କୁ ପୁରସ୍କାର ଦେଇ ପାରିବନି କିନ୍ତୁ ''କୋଣାର୍କ। ପୃଥିବୀର ସପ୍ତାଶ୍ଚର୍ଯ୍ୟ ମଧ୍ୟରୁ ଗୋଟିଏ। ନିହଣ ମୁନର ଅନବଦ୍ୟ ସୃଷ୍ଟି। ଯେଉଁଠି ପଥର କଥା କହେ। ଗୋଟିଏ ନିହଣ ମୁନର ଦାଗ ଗୋଟିଏ କବିତା। ଯେଉଁଠି ବାରଶହ ଓଡ଼ିଆ ଶିଳ୍ପୀର ସୃଷ୍ଟିଶୀଳ ପ୍ରାଣ ଏକାଠି ହେଇ ରୂପ ନେଇଛି - ବିଶ୍ୱର ମହାର୍ଘ୍ୟ ସୃଷ୍ଟି'' ଥରେ ଭଲ କରି ଭାବି ଦେଖ ତମେ ଅନ୍ୟାୟ କରିନ? ହଁ କରିଦିଅ। ଗୋଳା ବାରୁଦର ଧନ ତ? କାର୍ପଣ୍ୟ କାହିଁକି। ଏବେ ସେହି ବୀର ଓଡ଼ିଆ ମାନଂକ ଦାୟାଦ ମାନେ ଅଳ୍ପଦିନ ପରେ ଷ୍ଟକ୍‌ହୋମ୍ ଆସିବେ, ନିଜର ଶିଳ୍ପ ଚାତୁରୀ ତମ ଆଗରେ ପ୍ରଦର୍ଶନ କରିବେ। ଏଭଳି ସୁଯୋଗ ହୁଏତ ଆଉ ଆସିବନି ତାଙ୍କ ପାଇଁ ଆଉ ତମ ପାଇଁ ମଧ୍ୟ। ଏଇଥର ତମର କର୍ତ୍ତବ୍ୟ ପାଳନରେ ହେଳା କରନି। ପୁରସ୍କାରଟା ଦେଇ ଦିଅ। ଚିତ୍ରଶିଳ୍ପୀଙ୍କ ଟେକ ରହୁ।

ତା ପରଦିନ ଭବନାଥ ସିଟି ହଲରେ ହାଜର। ନୋବେଲ ପୁରସ୍କାର ପାଇଲା ପରେ ଏଠିକାର ସୁନା ବଖରାରେ ବିଜେତାକୁ

ସମ୍ବର୍ଦ୍ଧନା ଦିଆଯାଏ। ଏଠି କାନ୍ଥ, ଛାତ, ସବୁଆଡ଼େ ସୁନାର ଛାଉଣି। ତା ଉପରେ ପୁଣି କମ୍‌କୁଟିର କାମ। କି ଅପୂର୍ବ ତାର ଶୋଭା। ସ୍ୱର୍ଗରେ ମେନକା ନାଚୁଥିବା ଅଡ଼ିଟୋରିଅମ୍ ଏମିତିକା ହୋଇଥିବ ପରା। ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରେ ଭବନାଥ ନିଜକୁ ବିଶ୍ୱାସ କରିପାରୁ ନ ଥିଲେ। ସେ ଯାଇ ଯାଇ ସୀତାନୁସନ୍ଧାନ ନାଟକର ରାବଣ ଦରବାର ନିକଟରେ ପହଞ୍ଚୁଥିଲେ। ତା ପରେ ତାଙ୍କର ଆଉ ଆଖି ପାଉ ନ ଥିଲା। ସିଟି ଟାୱାରର ଗଢ଼ଣ ତଦତୋଧିକ। ଟାୱାରର ପାଉଛ ଚଢୁ ଚଢୁ ଭବନାଥ କେତେ ନା କେତେ କଥା ଭାବିଗଲେ। ସତେ କ'ଣ ତାଙ୍କ ସ୍ୱପ୍ନ ସଫଳ ହେବ। ଭାବିଲେ ଦାଦା ଏଇଠି ଦେଖାଯାଇଥିଲେ କହନ୍ତେ, ''ହାଇ !'' ତା ପରେ ଚୁମା ପରେ ଚୁମା ଦାଦାଙ୍କ ଦାଢ଼ିଆ ଗାଲରେ ଭର୍ତ୍ତି କରି ଦିଅନ୍ତେ।

ସେଦିନ କୁଇଟର ହ୍ୟୁସେଟ୍ (ସଂସ୍କୃତି ଭବନ)ରେ ଦୀପକଙ୍କ ସଙ୍ଗେ ପରିଚୟ ହେଲା। କଲିକତାର ଶିଳ୍ପୀ। ଷ୍ଟକ୍‌ହୋମ୍‌ରେ ବାହାଚୁଡ଼ା ହେଇ ରହି ଯାଇଚନ୍ତି। କଥାରେ କଥାରେ ଜଣା ପଡ଼ିଲା ସେ ନୋବେଲ ପୁରସ୍କାର ପାଇଲା ବାଲାଙ୍କ ସାଇଟେସନ୍ ଲେଖନ୍ତି। ଚମତ୍କାର ତାଙ୍କର କ୍ୟାଲିଗ୍ରାଫି। ଭବନାଥ ଧରିନେଲେ ଦୀପକ ବୋଧହୁଏ ସେମାନଙ୍କ ପାଇଁ ସାଇଟେସନ୍ ଲେଖିବେ କିନ୍ତୁ ଏକଥା ପ୍ରକଟ କରିବା ଅସୌଜନ୍ୟ ହେବ। ଏଣୁ ମନ କଥା ମନରେ ମାରି ଭବନାଥ ନିରବ ରହିଲେ।

ଦୁଇ ସପ୍ତାହ ରହଣି ପରେ ଭବନାଥ ଭୁବନେଶ୍ୱର ଫେରିଲେ। ପୁଣି ରବୀନ୍ଦ୍ର ମଣ୍ଡପ ଛକରେ ଦାଦାଙ୍କ ସହିତ ଦେଖା, ଦାଦା ଟିକିଏ ରସିକତା କରି କହିପକେଇଲେ ''ଭବନାଥ କ'ଣ ହେଲା, ନୋବେଲ ପୁରସ୍କାର ତମେ ପାଇଲ ?'' ଭବନାଥ ଠିକ୍ ଏକଥା ହିଁ ଦାଦାଙ୍କ ଠାରୁ ଆଶା କରୁଥିଲେ। ''ଦାଦା ଧୈର୍ଯ୍ୟ ଧରନ୍ତୁ।

ସବୁ କଥା ମୁଁ ଦେଖିଆସିଛି ପୁରସ୍କାର ଅଲବତ୍ ମିଳିବ'' ତା ପରେ, ଦାଦା ବିଂଶି ଆଙ୍ଗୁଠି ଓ ମଝି ଆଙ୍ଗୁଠି ମଝିରେ ସିଗାରେଟ୍କୁ ଧରି, ପାପୁଲିକୁ ମୁଠା କରି ପୁଳାଏ ଧୁଆଁ ପେଟ ଭିତରକୁ ନେଇ, କଡ଼ା ଚା'ରୁ ଢ଼ୋକେ ପିଇଲେ। ଗଳା ସଫାକରି ଭବନାଥଙ୍କୁ ପଚାରିଲେ, ''ଭବନାଥ ଯିବା କଥା କଣ ହଉଛି?'' ଭବନାଥ ଉତ୍ତର ଦେଲେ, ''ଆସନ୍ତା ମାସ ତରିଶି ତାରିଖ''।

ଚାହୁଁ ଚାହୁଁ ଦିନ କେଇଟକ ପାଣିଭଳି ବୋହିଗଲା। ଓଡ଼ିଆ ଶିଳ୍ପୀ ଦଳ ଭବନାଥଙ୍କ ନେତୃତ୍ୱରେ ଭାରତ ଉତ୍ସବରେ ଯୋଗ ଦେବା ପାଇଁ ଷ୍ଟକ୍ହୋମ୍ ଯିବେ। ଏକଥା ଭୁବନେଶ୍ୱରରେ ବିଜୁଳି ଭଳି ଖେଳିଗଲା। ରବୀନ୍ଦ୍ର ମଣ୍ଡପ ଛକରେ ଖୁବ୍ ସରଗରମ ଆଲୋଚନା ହେଲା। ''ଶଳେ। ଚାନସ୍ ମାରିନେଲେ।'' ସଂସ୍କୃତିର ଭିତର, ବାହାର ଏଇଠି ହିଁ ପାଛୋଡ଼ା ଯାଏ। ପାଛୋଡ଼ା ଚାଲିଲା।

ଯେଉଁ ଦିନ ଓଡ଼ିଆ ଶିଳ୍ପୀଦଳକ ଷ୍ଟକ୍ହୋମ୍ ଯିବେ, ସେଦିନ ଭୁବନେଶ୍ୱରର ବିମାନ ବନ୍ଦର ସରଗରମ ହେଇ ଉଠିଲା। ଏହି ଦଳରେ ଅସୀମ ଦା, ରୋହିତ-ପୁରୀ ଜଗନ୍ନାଥଙ୍କ ପଣ୍ଡା, ପ୍ରଦୀପ - କଟକ କାଠଗଡ଼ା ସାହିର ମାଟିକାରିଗର, ସଂଗ୍ରାମ - ଡ୍ରିକେ କଲେଜର ଗ୍ରାଫିକ୍ ଡ଼ିପାର୍ଟମେଣ୍ଟର ଛାତ୍ର ଆଉ ନୃସିଂହ, ଦାଦାଙ୍କ ରୂପକାର ସଂସ୍ଥାର ବଢ଼େଇ। ଆଗରୁ ଏତେବଡ଼ ଓଡ଼ିଆ ଶିଳ୍ପୀ ଦଳ ଷ୍ଟକ୍ହୋମ୍ କେବେ ଯାଇ ନ ଥିଲେ। ସାହିତ୍ୟିକଙ୍କ ଦଳ କଥା ମୋଟେ ଉଠୁନି। ଅତଏବ ଏହାକୁ ପ୍ରଥମ ଏଭେରେଷ୍ଟ ଅଭିଯାନକାରୀ ଦଳ ହିସାବରେ ସମ୍ମାନ ଦେବା ଅସମୀଚୀନ ହେବନାହିଁ। ଶିଳ୍ପୀ ଦଳଙ୍କୁ ଭବ୍ୟ ସଂବର୍ଦ୍ଧନା ଦିଆଗଲା। ସମସ୍ତଙ୍କ ଜଣାଶୁଣା, ବଂଧୁବାନ୍ଧବ ହେଉ ହେଉ ଭୁବନେଶ୍ୱର ଏୟାର ପୋର୍ଟରେ ଛୋଟ ଲାଉଞ୍ଜଟି ପୁରି ଉଠିଲା।

ଷ୍ଟକ୍ହୋମ୍ ଏରଲଣ୍ଡା ବିମାନ ବନ୍ଦରରେ ମଧ୍ୟ କୁଳଟର୍

ହ୍ୟୁସେଟ୍‌ର କ୍ୟୁରେଟର୍ ଶିଶି ଓ ମାର୍ଗାରେଏତା ଏମାନଙ୍କୁ ପାଛୋଟି ନେଲେ। ଦଳ ଭିତରେ ଭବନାଥ ଓ ଦାଦାଙ୍କର ମୋଟାମୋଟି ଅନ୍ତତଃ ଜାତୀୟ ସ୍ତରର ବାକ୍ସ ଓ ଏଟାଚି ଥିଲା। ବାକି ସମସ୍ତଙ୍କର ବାକ୍ସରେ ଓଡ଼ିଆ ସଂସ୍କୃତିର ଏକ ସ୍ୱତନ୍ତ୍ର ଛାପ ରହିଯାଇଥିଲା। ନୃସିଂହ ଓ ସଂଗ୍ରାମଙ୍କ ବାକ୍ସ ଭିତରୁ କରତ ଦୁଇ ତିନି ଇଂଚ ଲେଖା ପଦାକୁ ବାହାରି ରହିଥିଲା। ସେମିତି ରୋହିତ ତାଙ୍କର ଏଟାଚିର ଲକ୍ ନଷ୍ଟ ହେଇଯାଇ ଥିବାରୁ ତାରରେ ମୋଡ଼ା ମୋଡ଼ି କରି ଏକ ନୂଆ ପ୍ରକାରର ଲକ୍ ପକେଇଥିଲେ। ପ୍ରଦୀପ କଟକରେ ମିଳୁଥିବା ମଲାଟ ଓ ଚମଡ଼ା ମିଶା ଏକ ସ୍ୱତନ୍ତ୍ର ଧରଣର ସୁଟକେଶ୍ ସାଂଗରେ ନେଇଥିଲେ। ତା ଉପରେ କାଠଗଡ଼ା ସାହି, କଟକ ଖୁବ୍ ବଡ଼ ଅକ୍ଷରରେ ବାର୍ଣ୍ଣିସ୍ ରଂଗରେ ଲେଖାହେଇଥିଲା। ମାଛ ଜାଲରୁ ଫିଟିଗଲେ ଯିମିତି ପାଣିକୁ ଓଟାରି ହୁଅନ୍ତି। ଶିଳ୍ପୀଦଳ କଷ୍ଟମସ୍ ପାରିହେଉ ନ ହେଉଣୁ କନ କନ ହେଲେ। ସଂଧ୍ୟା ହେଇସାରିଥାଏ। ବାହାରେ ରଙ୍ଗ ବେରଙ୍ଗ ଆଲୁଅର ଦୀପାବଳୀ ଓ ତା ସାଙ୍ଗକୁ ଶିତୁଆ ପବନ। ବାହାରେ ଅପେକ୍ଷା କରିଥିବା ଟ୍ୟାକ୍ସିରେ ବସି ସିଧା ଚାଲିଲେ "ମହାରାଜା ରେସ୍ତୋରାଁ"କୁ। ସେଇଠି ଓଡ଼ିଆ ଶିଳ୍ପୀଦଳଙ୍କ ପାଇଁ ରାତ୍ରି ଭୋଜନର ବ୍ୟବସ୍ଥା ହେଇଥାଏ। ତା ପରଦିନ ଠାରୁ କୁଲଟର୍ ହ୍ୟୁସେଟ୍‌ରେ ଲୋକପ୍ରିୟ କଳା ପ୍ରଦର୍ଶନୀ ପାଇଁ କାମ ଆରମ୍ଭ ହେଲା। ସକାଳୁ ବ୍ରେକ୍‌ଫାଷ୍ଟ୍ ଖାଇଲାପରେ ଶିଳ୍ପୀଦଳ କୁଲଟର୍ ହ୍ୟୁସେଟ୍‌ରେ ପ୍ରାୟ ନଅ ପାଖପାଖି ପହଞ୍ଚି ଯେଝା କାମ ଆରମ୍ଭ କରି ଦିଅନ୍ତି, ବାରଟା ବେଳେ ଲଞ୍ଚ୍। ପୁରୁଣା ଷ୍ଟକ୍‌ହୋମ୍‌ର ହରେକୃଷ୍ଣ ରେସ୍ତୋରାଁ ରେ। ମଝିରେ ଦୁଇ ତିନିଥର ଚା କୁଲଟର୍ ହ୍ୟୁସେଟ୍ ଭିତରେ ହିଁ ମିଳିଯାଉଥାଏ। ସଂଧ୍ୟା ଛ'ରେ କାମ ଶେଷ। ହୋଟେଲ ତ ନୁହେଁ ସେମାନେ ରହୁଥିଲେ ହଷ୍ଟେଲରେ। ଭବନାଥ ରହୁଥିଲେ ତାଙ୍କର ପୁରୁଣା

ଯାଗା ହୋଟେଲ ଷ୍ଟକହୋମ୍। ପ୍ରତି ସଂଧ୍ୟାରେ ଭବନାଥ ଟ୍ରେନ୍ ଷ୍ଟେସନ ପର୍ଯ୍ୟନ୍ତ ନିଜ ବଂଧୁମାନଙ୍କୁ ବାଟେଇ ଦେଇ ଆସନ୍ତି। ହଷ୍ଟେଲକୁ ଯିବା ପୂର୍ବରୁ ଶିଳ୍ପୀଦଳ ଷ୍ଟେସନ ପାଖ ଅଣ୍ଡରଗ୍ରାଉଣ୍ଡ ଡ଼ିପାର୍ଟମେଣ୍ଟାଲ୍ ଷ୍ଟୋରରୁ ଭଲ ବାସୁମତି ଚାଉଳ, ହରଡ଼ ଡ଼ାଲି, ଡ୍ରେସିଙ୍ଗ୍ କରାହୋଇଥିବା ବୋନ୍‌ଲେସ୍ ଚିକେନ୍, ବଟର୍ ଓ ମସଲା ନେଇ ଯାଆନ୍ତି। ରାତିରେ ଛୁଙ୍କ୍ ଦିଆ ରୋଷେଇଟି ହୁଏ। ହଷ୍ଟେଲ ପରିବେଶ ତେଲ, ରସୁଣ, ଲଙ୍କା ବାସ୍ନାରେ ଭରିଯାଏ। ଦୁଇ ଦିନ ଛାଡ଼ି ମେଡ୍ରାସ୍‌ରୁ ଆସିଥିବା ସିନେମୋ ବ୍ୟାନର ପେଣ୍ଟର ଭେଦାଚଳମ୍ ମଧ ଏହି ଓଡ଼ିଆ ଦଳରେ ସାମିଲ ହେଲା। ଏବେ ମଝିରେ ମଝିରେ ଡ଼ାଲମା ବଦଳରେ ସାମ୍ବାର ରନ୍ଧା ହେଲା।

ଆଜି ରବିବାର। ଛୁଟି। କୁଲଟର୍ ହ୍ୟୁସେଟ୍‌ରେ କାମ ଦାମ ବନ୍ଦ। ଭବନାଥଙ୍କ ମନ ଭିତରେ ରହିଛି, ଟିକିଏ କାମରୁ ଫୁରସତ ପାଇଲେ ଦାଦାଙ୍କୁ ସିଟିହଲ୍ ଟାୱାର ଦେଖେଇ ନେବେ। ଓପରଓଳି ଦଳକ ବାହାରିଲେ ସିଟି ଟାୱାର ପରିଦର୍ଶନରେ। ଠିକ୍ ହେଲା ଚାଲି ଚାଲି ଗଲେ ଷ୍ଟକହୋମ୍ ସହର ଭଲଭାବେ ଦେଖାହୋଇପାରିବ। ରବିବାରତ, ଏତେ ତରତର ବି କ'ଣ ଅଛି। ସ୍କୁଲ ପିଲାଙ୍କୁ ମ୍ୟୁଜିୟମ୍ ଦେଖେଇ ନେଲା ପରି ଆଗରେ ଚାଲିଲେ ଭବନାଥ ଓ ତାଙ୍କ ପଛେ ପଛେ ଦାଦା, ରୋହିତ, ସଂଗ୍ରାମ, ପ୍ରଦୀପ, ନୃସିଂହ। ଭେଦାଚଳମ୍ ମେଡ୍ରାସି ଲୋକ। ଷ୍ଟକ୍‌ହୋମ୍‌ରେ ପହଞ୍ଚୁ ପହଞ୍ଚୁ ଥଣ୍ଡା ଧରିନେଲା। ଏଣୁ ସେ ଦଳରେ ସାମିଲ ହୋଇପାରି ନ ଥିଲେ। ସମୁଦ୍ର କୂଳେ କୂଳେ ବିଭିନ୍ନ ଦେଶର ଜାହାଜ ଓ ଡ଼ଙ୍ଗା ଗୁଡ଼ିକ ଦେଖିଦେଖି ପାର୍କରେ ବସିଥିବା ବିଭିନ୍ନ ଦେଶର ପର୍ଯ୍ୟଟକ ମାନଂକ ଆଡ଼େ ଆଖି ପକେଇ ପକେଇ ଚାଲିଲେ ଓଡ଼ିଆ ଶିଳ୍ପୀ ଦଳ ମାରଲନ୍ ହ୍ରଦ କୂଳରେ ଠିଆ ହୋଇଥିବା ବିରାଟ ଅଟ୍ଟାଳିକା ଆଡ଼କୁ। ଦାଦା ଭବନାଥଙ୍କୁ ପଚାରିଲେ- 'ଭବନାଥ'

ଏଇ ଟାୱାର କଥା ତମେ ତା ହେଲେ କହୁଥିଲ। ସତେ କ'ଣ ଏଇଠି ନୋବେଲ ପୁରସ୍କାର ଦିଆଯାଏ? ଏମିତି କଥା ହେଉ ହେଉ ସେମାନେ ଅଗଣା ଭିତରକୁ ଚାଲିଗଲେଣି। ସେଇଠି ଠିଆ ହେଇ ଚାହିଁଲେ ଉପର ମହଲାର "ଗୋଲଡ଼େନ୍ ହଲ୍"ର କିଛି କିଛି ଝଲକ ଆଖିରେ ପଡ଼ୁଛି। ଭବନାଥ କହିବା ଆରମ୍ଭ କଲେ, "ଦାଦା ଆମ ଆଗରେ ଯେଉଁ ମାର୍ବଲ ପଥରର ସିଡ଼ି ପଡ଼ିଛି ତା ଉପର ଦେଇ ଆମେ ଗୋଲଡ଼େନ୍ ହଲ୍ ଦେଖିବାକୁ ଯିବା। ଏଠି ନୋବେଲ ପୁରସ୍କାର ବିଜେତାଙ୍କୁ ସମ୍ବର୍ଦ୍ଧନା ଦିଆଯାଏ। ତାଙ୍କରି ସମ୍ମାନାର୍ଥେ ଭୋଜି ଓ ନୃତ୍ୟର ଆୟୋଜନ କରାଯାଏ।"ଶିଳ୍ପୀଦଙ୍କକ ଗୋଲଡ଼େନ୍ ହଲର ବିଭିନ୍ନ ସୁନାର କଲେଇ କରା ଚୌକି ମାନଙ୍କରେ ବସିବା ଆରମ୍ଭ କରିଦେଲେ। ରୋହିତ କହିଲେ, "ଏଗୁଡ଼ିକ ଡ୍ରାମାର ସେଟିଙ୍ଗ୍ ଭଳି ଦିଶୁଛି"। ଭବନାଥ ଚୌକିରେ ବସିବା ପାଇଁ ବାରଣ କଲେ। ଏଗୁଡ଼ିକ କେବଳ ପର୍ଯ୍ୟଟକଙ୍କ ଦେଖିବାପାଇଁ ରଖାଯାଇଛି। ଦାଦା ବୋଧହୁଏ ଭାବୁଛନ୍ତି। ଏଇ ହଲକୁ ରବୀନ୍ଦ୍ର ନାଥ ନିଶ୍ଚୟ ଆସିଥିବେ, ତାଙ୍କର ଶ୍ୱେତ ଶ୍ମଶ୍ରୁ ଓ ଲମ୍ବା ଆଲ୍‌ଖାଲ୍ଲା ଚାରିପଟର ସୁନାର କାନ୍ଥକୁ ବେଶ୍ ମାନିଥିବ। ରୋହିତଙ୍କର ବୋଧହୁଏ ଇଚ୍ଛା ହେଉଥିଲା କାର୍ପେଟ ଉପରୁ ପାଦଧୂଳି ନେବାପାଇଁ। ଏଇ ଧୂଳିରେ ବିଶ୍ୱର ବହୁ ନୋବେଲ ଲରେଟଙ୍କ ପଦରେଣୁ ମିଶିଥିବ। ପରେ ଭାବିଲେ ଏମାନେ ତ ଭେକ୍ୟୁମ୍ କ୍ଲିନରରେ ବହୁବାର କାର୍ପେଟକୁ ସଫା କରି ସାରିଥିବେ। ଏଣୁ ସେମାନଙ୍କ ପଦରେଣୁ କ'ଣ ଏଇଠି ପାଇହେବ? ଗୋଲଡ଼େନ୍ ହଲ ଦେଖା ସରିଲା। ତା' ପରେ ସଂଗ୍ରାମ ପ୍ରସ୍ତାବ ଦେଲେ ଟାୱାର ଉପରେ ଚଢ଼ିବା। ଟାୱାର ନୋବେଲ ପୁରସ୍କାର ପାଇବା ଅନୁଭୂତିର ଚରମ ପର୍ଯ୍ୟାୟ। ରୋହିତ ଏତେ ଉପରକୁ ଚଢ଼ିବା ପାଇଁ ପ୍ରଥମେ ଟିକିଏ ଅମଙ୍ଗ ହେଲେ। ଭବନାଥ ଭାବିନେଲେ ଯଦି ଟାୱାର ଚଢ଼ିବା କୌଣସି

କାରଣରୁ ନ ହୁଏ ତା'ହେଲେ ବହୁଦିନ ଧରି ପାଳି ଆସିଥିବା ମନର କଳ୍ପନାଟି ଏଠି ଫସରଫାଟିଯିବ। ସତେ ଯିମିତି ନୋବେଲ୍ ପୁରସ୍କାରଟି ଟାୱାର ଉପରେ ଥୁଆ ହେଇଛି ଏବଂ ଏ ଦଳକ ପହଞ୍ଚିଲେ ତାଙ୍କ ଗଳାରେ ଲମ୍ୱେଇ ଦିଆଯିବ। ଭବନାଥଙ୍କ ଯୋଜନା ସଫଳ ହେବାପାଇଁ ଆଉ ଅଳ୍ପ ସମୟ ବାକି। ରୋହିତଙ୍କ ମନରେ ସାହସ ଦେବାପାଇଁ ଭବନାଥ କହିଲେ- ତମେତ ବାଇଶି ପାହାଚ ଉପରେ ଦିନକୁ ଶହେ ଥର କି ହଜାରେ ଥର ତଳ ଉପର ହେଉଛ, ଏ ଟାୱାର କେତେ ଉଚ୍ଚକି? କିନ୍ତୁ ବାସ୍ତବିକ ତଳୁ ଠିଆ ହୋଇ ଟାୱାରକୁ ଚାହିଁଲାବେଳକୁ ଆଖି ପାଉନି। ରୋହିତ ଟିକିଏ ଗୋଲ ଗାଲିଆ। ଥନ୍ତଲା ପେଟକୁ ନେଇ ଏତେ ଉପରକୁ ଉଠି ହେବକି ନାହିଁ ଏହାହିଁ ତାଙ୍କର ଭୟର କାରଣ।

ଦାଦା ଚାଲିବା ଆରମ୍ଭ କଲେ ଟାୱାର ଆଡ଼କୁ। ଅନ୍ୟମାନଙ୍କୁ ତାଙ୍କ ପଛେ ପଛେ ଯିବାକୁ ତର ରହିଲାନି। ପାହାଚ ପରେ ପାହାଚ ଉଠି ସମସ୍ତେ ଚାଲିଛନ୍ତି, ଉପରକୁ ଉପରକୁ। ପାହାଚ ସରୁନି। ରୋହିତ ଥକି ଗଲେଣି। ହେଉ ହେଲାତ କହି ଓହ୍ଲେଇ ପଡ଼ିବା ପାଇଁ ତିଆର। ସତେ ଦେଖିବାକୁ ଗଲେ ଭିତରେ କିଛି ନାହିଁ, ଯାହା କେବଳ ଛୋଟ ଛୋଟ ଝରକା ଦେଇ ବାହାରକୁ ଦେଖିହେବ। ଭବନାଥ ସମସ୍ତଙ୍କ ପଛରେ। ମିଛରେ କହିଲେ କ'ଣ କିହେ "ଜଗନ୍ନାଥଙ୍କ ବଡ଼ ପଣ୍ଡାହେଇ ଥକି ଯାଉଚ? ତମେ କ'ଣ ବାଇଶି ପାହାଚ, ରଥ, ପହଣ୍ଡି ସବୁ ଭୁଲିଗଲଣି"। ଜଗନ୍ନାଥଙ୍କ ନାଁ ପଡ଼ିବାରୁ ରୋହିତ ଆଗକୁ ମାଡ଼ି ଚାଲିଲା। ଦାଦା ପତଳା ଲୋକ। ଧଡ଼ ଧଡ଼ିଆ ସିନା ବେଶ୍ ଟପ୍‌ଟାପ୍ ଗୋଡ଼ ପକେଇ ସୁନା ଛାଉଣି ଦିଆ ଗମ୍ବୁଜର ପାଖାପାଖି ହେଇଗଲେଣି। ଆଉ ଦଶ ପନ୍ଦର ପାହାଚ ପରେ ଗମ୍ବୁଜର ଚୂଡ଼ା ପଡ଼ିବ। ଆଉ ଆଳସ୍ୟ ନାହିଁ। ଏକା ନିଶ୍ୱାସରେ ଏବେ ସମସ୍ତେ ଚାଲିଲେ।

ଭବନାଥଙ୍କ ମନ ପୂରି ଉଠୁଛି। ସେ ଯେ ଓଡ଼ିଶାରୁ ଶିଳ୍ପୀଦଙ୍କୁ ନେଇ ସିଟି ଟାୱାରର ଗମ୍ବୁଜ ଉପରେ ପହଞ୍ଚି ଯାଇଛନ୍ତି। ପରେ ପରେ ସମସ୍ତେ ଛାତ ଉପରେ ପହଞ୍ଚିଲେ। ଏଇଠି ଗମ୍ବୁଜ ମୁଦମରା ହେଇଛି। ଉପରକୁ ସୁନା ଛାଉଣି ଦିଆ ଶିଖର। ଛାତ ଉପରେ ସବୁଆଡ଼େ ତମ୍ବାର ଛାଉଣି। ଗମ୍ବୁଜ ଚାରିପଟେ ତମ୍ବାର ବେଞ୍ଚ।

ସମୟ ସଂଧ୍ୟା। ଭୁବନେଶ୍ୱର ହେଇଥିଲେ ଅନ୍ଧାର ଘୋଟି ଆସନ୍ତାଣି। ମୁହଁକୁ ମୁହଁ ଦିଶିବା ଅଡୁଆ ହୋଇଯାଆନ୍ତାଣି। ଘଡ଼ିରେ ଏଠି ଆଠଟା ବାଜିଲାଣି କିନ୍ତୁ ବିଳମ୍ବିତ ସଂଧ୍ୟାର ସୁନେଲି କିରଣ ଚାରିଆଡ଼େ ବିଛାଡ଼ି ହେଇ ପଡ଼ିଛି। ତମ୍ବାର କାଛଗୁଡ଼ିକ ସୁନା ପାଲଟି ଯାଇଛି। ତା ସହିତ ବେଞ୍ଚ। ଗମ୍ବୁଜ କଥା ନିଆରା। ମନେ ହେଉଛି ଏକ ଦେଦୀପ୍ୟମାନ ଅଗ୍ନି ଶିଖା ଆକାଶକୁ ଉଠିବାକୁ ଉପକ୍ରମ କରୁଛି। ପାହାଚ ଉଠିବାରେ ସମସ୍ତେ କ୍ଲାନ୍ତ। ବେଞ୍ଚ ଉପରେ ଦାଦା ଓ ଭବନାଥଙ୍କୁ ଘେରି ବସିଗଲେ।

ସମସ୍ତେ ଶିଳ୍ପୀ। ସହଜ ଭାବପ୍ରବଣତାରେ ଭାସିଗଲେ। ପୃଥିବୀର ମାଟି ଉପରର ସବୁ ଗ୍ଲାନି, ବିଭେଦ, ସଂକୀର୍ଣ୍ଣତା, ଜାତି, ବର୍ଣ୍ଣ ସବୁ ଭୁଲି ଯାଇ ଏକ ମହାମାନବୀୟ ଭାବରେ ମଜିଗଲେ। ଦାଦା ନାଟୁଆ ଲୋକ। ମଂଚ ଯିମିତି ସଜାନ୍ତି, ଡ଼ାଏଲଗ୍ ସେମିତି ଚମତ୍କାର। ଦାଦା ଆରମ୍ଭ କଲେ ମୁଖ୍ୟତଃ ଭବନାଥ ଓ ରୋହିତଙ୍କୁ ସମ୍ବୋଧନ କରି "ବାସ୍ତବିକ ଏହା ସ୍ୱର୍ଗ, ଏଠି ରହିଲେ ସବୁ ଭୁଲି ହେଇଯାଉଛି। ଏଇଠି କେବଳ ନିର୍ମଳ ଆକାଶ ଆଉ ଆମେ। ଆମେ ଆଉ ଆକାଶ।" ରୋହିତ କ୍ଲାନ୍ତି ଅପନୋଦନ ପାଇଁ ପତ୍ର ପୁଡ଼ିଆ ଖୋଲି ଟେକେ ଭାଙ୍ଗ ପକେଇଲେ। କାନ୍ଧ ଝୁଲା ବେଗ୍‌ରୁ ନେତ ଦଉଡ଼ି ଟକ କାଢ଼ିଲେ ଓ ହାତରେ ଗୁଡ଼େଇ ଧରିଲେ।

ଅସ୍ତଗାମୀ ସୂର୍ଯ୍ୟଙ୍କର ସୁନେଲି କିରଣରେ ଦାଦାଙ୍କର ଦାଢ଼ି

ସୁନା ହୋଇଗଲା। ତାଙ୍କ କୁରୁତା ମଧ୍ୟ ସୁନେଲି ରଙ୍ଗ ଧଇଲା। ତାହା ବଦଳିଗଲା ପରି ଲାଗିଲେ। ଛଣେ ରକ୍ତ ମାଂସର ସାଧାରଣ ମଣିଷରୁ କେତେ ଶହ ବର୍ଷ ତଳର ଏକ୍ଟିକ ବ୍ରୋଞ୍ଜ ଭଳି। ସମୁଦ୍ର ଉପରର ନୈସର୍ଗିକ ପରିବେଶ। ସୂର୍ଯ୍ୟାସ୍ତର ମନଲୋଭା ଦୃଶ୍ୟ, ପୁଣି ଷ୍ଟକ୍‌ହୋମ୍ ସହରର ବିସ୍ତାରିତ ସୌନ୍ଦର୍ଯ୍ୟରେ ସମସ୍ତେ ଭାବ ବିହ୍ୱଳ ହୋଇ ଉଠିଲେ। ରୋହିତ ଟେକା ପକେଇ ସାରିଲା ପରେ ଟିକିଏ ଗୁମ୍ ହୋଇ ବସି ରହିଲେ। ତାପରେ ହଠାତ୍ ଝାଡ଼ିଝୁଡ଼ି ହୋଇ ଉଠି ଠିଆ ହେଲେ ଏବଂ ପୂର୍ବ ଦିଗ୍‌ବଳୟକୁ ଚାହିଁ ଚିଲ୍ଲେଇ ଉଠିଲେ, ''ଦାଦା ଏଇଠିକି ନୀଳଚକ୍ର ଓ ପତିତପାବନ ବାନା ଦେଖାଯାଉଛି। ଏଇ ସମୁଦ୍ରଟା ତ ପାରିହେଲେ ପୁରୀ ପଡ଼ିବ।'' ରୋହିତଙ୍କୁ ବୋଧହୁଏ ନିଶା ଧରିଆସିଲାଣି। ଜଗନ୍ନାଥଙ୍କ ପଣ୍ଡା, ମନ ଖୁସିରେ କହୁଚି। ଏଣୁ ଭବନାଥ ଓ ଦାଦା ମନ ଚୁଟିବା ପାଇଁ ହଁ ଭରିଲେ। ଅନ୍ୟମାନେ ବା କାହିଁକି ଏ ସମାନ୍ୟ କଥାରେ ବିରୋଧ କରନ୍ତେ। ଏତକ କହିସାରି ରୋହିତ ପୁଣି ବେଞ୍ଚ ଉପରେ ବସିପଡ଼ି ଘୁମେଇବାକୁ ଆରମ୍ଭ କଲେ।

ଭବନାଥଙ୍କୁ ଦାଦା ଏବେ କିମିତି କେଜାଣି ବିଶ୍ୱକବି ରବୀନ୍ଦ୍ର ନାଥଙ୍କ ଭଳି ମନେ ହେଲେ। ଶିଳ୍ପୀମାନେ କଳ୍ପନାରେ ବହୁତ କିଛି ରୂପ ସର୍ଜନା କରିପାରନ୍ତି। ଦାଦା ତ ସହଜେ ଶିଳ୍ପୀ ଓ ବଂଗାଳୀ ଲୋକ। ଏବେ ସିନା ପୁରୁଷେ ଦିପୁରୁଷ ହେଲା ଓଡ଼ିଶାରେ ରହି ଓଡ଼ିଆ ପାଲଟି ଯାଇଛନ୍ତି, ହେଲେ ରକ୍ତରେ କିଛି ରବୀନ୍ଦ୍ର ଛିଟା ରହିଯାଇଚି। ଦାଦା ମନକୁ ମନ ଗୀତାଞ୍ଜଳିର କବିତା ଆବୃତ୍ତି କରିବାକୁ ଲାଗିଲେ।

''ଚିତ୍ତ ଯେଥା ଭୟ ଶୂନ୍ୟ ଉଚ୍ଚ ଯେଥା ଶିର
ଜ୍ଞାନ ଯେଥା ମୁକ୍ତ ଯେଥା ଗୃହେର ପ୍ରାଚୀର

ଆପନାରେ ରାଖେ ନାହିଁ       ଖଣ୍ଡ କ୍ଷୁଦ୍ର କରି....''
ଦାଦଙ୍କ ଗଳା ଠିକ ଶ୍ରାବଣ ମେଘ ଭଳି ଗମ୍ଭୀର। ରବି ଶଙ୍କରଙ୍କ ସିତାରରୁ ମେଘ ମଲ୍ଲାର ଭଳି ଝଂକୃତ ହେଉଉଠିଲା। ପଂକ୍ତି ପରେ ପଂକ୍ତି ଅନର୍ଗଳ ଗଡ଼ି ଚାଲିଲା। ମନେ ହେଲା ରବୀନ୍ଦ୍ର ନାଥ ଶାନ୍ତିନିକେତନର ଆମ୍ର କୁଞ୍ଜରେ ବସି ଗୀତାଞ୍ଜଳି ରଚନା କରୁଛନ୍ତି ଓ ଦରଦୀ ହୃଦୟରେ, ରସ ସିକ୍ତ ପ୍ରାଣରେ ପୁଲକିତ ହେଇ ପଂକ୍ତି ପରେ ପଂକ୍ତି ଆବୃତ୍ତି କରି ଚାଲିଛନ୍ତି। ଆଉ ଶିଷ୍ୟାଦଳକ ଗୁରୁଦେବଙ୍କ ଚରଣ ତଳେ ବସି କାବ୍ୟ ରସ ପାନ କରିବାରେ ଲାଗିଛନ୍ତି। ଚାରିଆଡ଼େ ଶୂନ୍ୟତା ବିରାଜୁଛି। ଖାଲି ନୀଳିମାର ଗଭୀରତା ଆଉ ଅସ୍ତଗାମୀ ସୂର୍ଯ୍ୟର ଶେଷ ଝଲକ। ମନେ ହେଉଥିଲା ରୋହିତ ଘୁମେଇ ପଡ଼ିଛନ୍ତି। ବଂଗାଳୀ ଯାତ୍ରୀଙ୍କ ପଣ୍ଡା ବଂଗଳା ବେଶ୍ ଜଣା। ବୋଧହୁଏ ଗୀତାଞ୍ଜଳି ମଧ୍ୟ ପଢ଼ିଛନ୍ତି। ହଠାତ୍ ଉଠିପଡ଼ି ଦାଦାଙ୍କ ପାଖକୁ ଘୁଞ୍ଚି ଆସିଲେ ଓ ତାଙ୍କ ବେକରେ ଜଗନ୍ନାଥଙ୍କ ନେତ ଦଉଡ଼ିର ମାଳ ଲମ୍ୱେଇ ଦେଲେ। ଦାଦାଙ୍କୁ କୁଣ୍ଢେଇବା ପାଇଁ ଇଚ୍ଛାଥିଲା, କିନ୍ତୁ ଦୁଲ୍‌ଦାଲ୍ ହେଇ ତାଙ୍କ ଉପରେ ଅଜାଡ଼ି ହେଇଗଲେ। ଦାଦା ଭାବପ୍ରବଣତାରେ ଶିଶ୍ୟଙ୍କୁ ଆଶୀର୍ବାଦ କଲା ଢଙ୍ଗରେ ବୋଧହୁଏ କହିଥାନ୍ତେ ''ବତ୍ସ! ଉତିଷ୍ଠତ ଜାଗ୍ରତ....'' କିନ୍ତୁ ଆବୃତ୍ତିରେ ଲାଗି ରହିଲେ। ରୋହିତ କଷ୍ଟେ ମଷ୍ଟେ ପୁଣି ଉଠି ପଡ଼ି ଡ଼ାହାଣ ହାତର ଦୁଇଟି ଆଙ୍ଗୁଠିକୁ ବିଜୟ ସଂକେତରେ ଟେକି ଧରି ଚିଲ୍ଲେଇ ଉଠିଲେ ''ନବଲ୍ ନବଲ୍ ଡ଼ବଲ୍ ଡ଼ବଲ୍''। ବୁଝିବାଲୋକ କଥାର ମରମ ବୁଝିଲେ। ଭବନାଥ ଦାଦାଙ୍କୁ କୁଣ୍ଢେଇ ପକେଇଲେ। ଆନନ୍ଦର ଆତିଶଯ୍ୟରେ ଭବନାଥଙ୍କ ଆଖିରୁ ଦୁଇଧାର ଲୁହ ଗଡ଼ିଗଲା। ଏହି ହେଉଛି ମାହେନ୍ଦ୍ର ବେଳା। ଏଥିପାଇଁ ବର୍ଷ ବର୍ଷ ଧରି ପ୍ରତୀକ୍ଷାରେ ଥିଲେ। ଆଉ ଅଧିକା କ'ଣ ବା ହେଇଥାନ୍ତା। ଦାଦା ତ ଜୀବନରେ

ବହୁ ଜିନିଷ ହରେଇଛନ୍ତି। ଆଉ କ'ଣ ଟଂକା ସୁନାରେ ତାଙ୍କ ଲୋଭ ରହନ୍ତା? ଏ ଜାତିର ନମସ୍ୟ ଜଗନ୍ନାଥଙ୍କୁ ସାକ୍ଷୀ ରଖି ରୋହିତ ଯାହା କରିଦେଇ ଗଲେ ତାହା କାଳକାଳକୁ ରହିଗଲା। ସମସ୍ତେ ଆବାକ୍ ହେଇ ଚାହିଁରହିଛନ୍ତି। କ'ଣ ତାଙ୍କ ଆଖିରେ ଘଟିଗଲା। ଠଉରେଇ ନ ପାରି ଲମ୍ବ ଲମ୍ବ ହେଇ ଦାଦାଙ୍କ ଗୋଡ଼ତଳେ ପଡ଼ିଗଲେ। ପରିସ୍ଥିତି କରୁଣାନ୍ତକ ହେଇ ଉଠିଲା। ଦାଦା ଓ ଭବନାଥ ପ୍ରକୃତିସ୍ଥ ହେଇ କହିଲେ, "ରାତିହେଲାଣି। ଚାଲ ଫେରିଯିବା।"

ସେତେବେଳକୁ ରାତି ଦଶଟା ହେଇଗଲାଣି। ଚାରିଆଡ଼େ ଅନ୍ଧାର ଘୋଟି ଗଲାଣି। ସୁନାରଙ୍ଗର ଖରା କେତେବେଳୁ ଲିଭିଗଲାଣି। ଦୀପାବଳୀ ଭଳି ଆଲୁଅରେ ଷ୍ଟକ୍‌ହୋମ୍ ସହର ଭରିଗଲାଣି। ସମୁଦ୍ରରୁ ଭାସି ଆସୁଥିବା ଶିତୁଆ ପବନ ଦେହକୁ ଶିର ଶିର କରି ଦେଉଥାଏ। ଓଡ଼ିଆ ଶିଳ୍ପୀଦଳଙ୍କ ଆରମ୍ଭ ହେଲା ବାହୁଡ଼ା ପର୍ବ। ଟାଓ୍ୱାରର ପାହଚ ପରେ ପାହଚ ଓହ୍ଲେଇ ଦଳକ ସିଟି ହଲ ଟାଓ୍ୱାରର ତଳ ଅଗଣାରେ ପହଞ୍ଚିଲେ। ଏ ଭିତରେ ପନ୍ଦର କୋଡ଼ିଏ ମିନିଟ୍ ବିତିଗଲାଣି। ରାତି ଦଶ ବେଳକୁ ସିଟି ଟାଓ୍ୱାରର ମୁଖ୍ୟ ଦୁଆର ବନ୍ଦ। ଭବନାଥଙ୍କ ସମେତ ପୂରା ଦଳ ଏକବାରେ ହଡ଼ବଡ଼େଇ ଗଲେ। ବର୍ତ୍ତମାନ କ'ଣ କରାଯାଇପାରେ। ସଂଗ୍ରାମ, ନୃସିଂହ ଅଗଣା, ବାରଣ୍ଡା, ପାହାଚ, ତଳ ଉପର ଏଣେ ତେଣେ ବୁଲିବାକୁ ଲାଗିଲେ। ନିରାପତ୍ତା ରକ୍ଷା ପାଇଁ ଖଞ୍ଜା ଯାଇଥିବା ଅଲଟ୍ରା ଭାଓଲେଟ୍ ରଶ୍ମୀ ବାଧାପ୍ରାପ୍ତ ହେଲା। ନିକଟବର୍ତ୍ତୀ ପୁଲିସ ଥାନାରେ ସତର୍କ ଘଣ୍ଟି ବାଜି ଉଠିଲା। ପ୍ରାୟ ପାଞ୍ଚମିନିଟ୍ ଅନ୍ତରରେ ପୁଲିସ୍ ଭ୍ୟାନ୍, ଦମକଳ ଆଉ ଗୋଟିଏ ଜିପ୍ ଆସି ଠିଆହେଲା। ପୁଲିସ ଭ୍ୟାନ୍‌ରୁ ଖପା ଖପ୍ ଷ୍ଟେନ୍‌ଗନ୍ ଧରିଥିବା ଗୋରା ସାଇବ କେତେଟା ଡ଼େଇଁପଡ଼ି ଗେଟ୍ ତାଲା ଖୋଲି ଭିତରକୁ ମାଡ଼ି ଆସିଲେ।

ମୁହୂର୍ତ୍ତକ ଭିତରେ କ'ଣ ଯେ ହୋଇଗଲା କିଏ ବୁଝିପାରିଲେନି। ଭବନାଥ ପରିସ୍ଥିତିର ଗୁରୁତ୍ୱ ବୁଝିପାରିଲେ ଏବଂ ପୁଲିସବାଲାଙ୍କୁ ବୁଝେଇବାକୁ ଲାଗିଲେ ଯେ ସେମାନେ ଓଡ଼ିଶା ଦେଶର ଶିଳ୍ପୀ। ଭାରତ ଉତ୍ସବ ପାଇଁ ଷ୍ଟକ୍‌ହୋମ୍‌ରେ ପ୍ରଦର୍ଶନୀ କରିବା ପାଇଁ ଆସିଛନ୍ତି। ସେମାନେ ସମସ୍ତେ ସୁଇଡ଼ିସ୍ ସରକାରଙ୍କ ଅତିଥି। ପୁଲିସ ବା କଣ ବୁଝେ। ତଥାପି ଭବନାଥଙ୍କ କଥାରେ ଆଠଣା ଯାଏ ବିଶ୍ୱାସ କରି ହାତକଡ଼ା ପକେଇଲା ନାହିଁ କିନ୍ତୁ, ସାରା ଦଳଙ୍କୁ ଭ୍ୟାନ୍‌ରେ ବସେଇ ଥାନାକୁ ନେଇଗଲା। ଭ୍ୟାନ୍ ଭିତରେ ସମସ୍ତେ ସମସ୍ତ ମୁହଁକୁ ଚାହୁଁଛନ୍ତି ଅଥଚ କାହା ମୁହଁରୁ କଥା ବାହାରୁନି। ଅଗତ୍ୟା ସମସ୍ତେ ଥାନାରେ ପହଞ୍ଚିଲେ। ରୋହିତଙ୍କ ଭାଙ୍ଗନିଶା ପନ୍ଦର ଅଣାଯାଏ ଛାଡ଼ି ଆସିଲା। ଥାନାରେ ବ୍ୟକ୍ତିଗତ ଭାବେ ସମସ୍ତଙ୍କୁ ପଚାରା ପଚାରି ଆରମ୍ଭ ହେଲା। ରୋହିତଙ୍କ ଇଂରାଜୀ ମା ଗଙ୍ଗେ ଜାଣନ୍ତି। ହଠାତ୍ ତାଙ୍କୁ ନ ପଚାରଣୁ ସେ ବଖାଣି ବସିଲେ ନୋବେଲ ପୁରସ୍କାର କଥା। ନୋବେଲ ପୁରସ୍କାର ଟାୱାର ଉପରେ ଦିଆନିଆ ହେଉ ହେଉ ଡ଼େରି ହେଇଗଲା। ନ ହେଲେ ବହୁତ ଆଗରୁ ସେମାନେ ସିଟି ହଲ୍ ଟାୱାର ଛାଡ଼ି ନିଜ ହଷ୍ଟେଲକୁ ଯାଇସାରନ୍ତେଣି। ରୋହିତ ସେତିକିରେ ନ ସାରି ପୂରା ଧାରା ବିବରଣୀ ଦେବା ଆରମ୍ଭ କଲେ। ରୋହିତଙ୍କ ଇଂରାଜୀ ଓ ତାଙ୍କ କଥାର ଢ଼ଙ୍ଗ ପୁଲିସ ବାଲାକୁ ବେଶ୍ ମଜା ଲାଗିଲା।ମଝି ମଝିରେ ରୋହିତଙ୍କ ଇଂରାଜୀ ଅବୁଝା ରହିଯାଉଛି ବିଚାରି ଭବନାଥ ଟୀକା ଟିପ୍ପଣୀ ଦେବା ଦରକାର ପଡ଼ିଲା। ରୋହିତ ଶେଷରେ ସାରାଂଶରେ କହିଲେ ଆମେ କୋଣାର୍କ ଦେଶର ଶିଳ୍ପୀ। ପୁଲିସବାଲା ବିଭିନ୍ନ ଆଡ଼େ ଫୋନ ଫାନ କରି ଠିକଣା କରିନେଲେ ଯେ ଏ ଦଳକ ଚୋର ବା ତସ୍କର ନୁହଁନ୍ତି। ଖୋଦ୍ ସୁଇଡ଼େନ୍ ସରକାରଙ୍କ ରାଜଅତିଥି। ଭାରତର ପ୍ରତିନିଧି। ଲୋକପ୍ରିୟ ପ୍ରଦର୍ଶନୀର କାରିଗର।

ନୋବେଲ ପୁରସ୍କାର ମୋହରେ ପଡ଼ି ଏକ ରକମ ସିଟିହଲ୍‌ରେ ବନ୍ଦୀ ହେଇଯାଇଥିଲେ। ଶିଳ୍ପୀ ଦଳଙ୍କୁ ସସମ୍ମାନେ ପୁଲିସ୍ ଗାଡ଼ିରେ ହଷ୍ଟେଲରେ ଛାଡ଼ି ଦିଆଗଲା। ପୁଲିସ୍‌ଙ୍କ ମୁଖିଆ ଏସବୁ ଘଟଣା ପାଇଁ କ୍ଷମା ମାଗିନେଲେ।

ତା ପରଦିନ ଭବନାଥ ପ୍ରଦର୍ଶନୀ ଗୃହରେ ପହଞ୍ଚୁ ପହଞ୍ଚୁ ପରିହାସରେ ଶିଶି ଅଭ୍ୟର୍ଥନା ଜଣେଇବା ପାଇଁ ହାତ ବଢ଼େଇଲେ। ମାର୍ଗାରିଏଟା ସୁଇଡ଼ିସ୍ ଖବର କାଗଜରେ ବଡ଼ ବଡ଼ ଅକ୍ଷରରେ ଛପା ହେଉଥିବା ପଂକ୍ତିକୁ ଭବନାଥଙ୍କୁ ଦେଖେଇ କହିଲେ, "ତାହେଲେ ପ୍ରଦର୍ଶନୀ ନ ସରୁଣୁ ନୋବେଲ ପୁରସ୍କାର"। ଚାଲ ଏବେ ଚା ଭୋଜିରେ ତମମାନଙ୍କୁ ଆପ୍ୟାୟିତ କରିବା। ଭବନାଥ ଦାଦାଙ୍କ ଆଡ଼କୁ ହାତ ଦେଖେଇ ମୁରୁକି ହସାଦେଲେ। ଭାବିଲେ ଲଳିତ କଳାର ସାହିତ୍ୟିକ ସଂପାଦକ ଏଠିଥିଲେ ତାଙ୍କ ମୁହଁ ପୋଡ଼ିଯାଇଥାନ୍ତା।

# ପ୍ରତୀକ୍ଷା

ପ୍ରତୀକ୍ଷା ବଡ଼ ଯନ୍ତ୍ରଣା ଦାୟକ। ପ୍ରତୀକ୍ଷାରେ ପାଇବା ଓ ନ ପାଇବା ଭିତରେ ଲୁଚକାଳି ଖେଳିବା ଘୋର ବେଦନା ଦାୟକ। ଯାହା ପାଅନା କାହିଁକି ପାଇଗଲେ ଏକରକମ ପ୍ରତୀକ୍ଷାରୁ ନିସ୍ତାର। କିନ୍ତୁ ଏଇ ଆସିଗଲା, ଉଁ, ହୁଁ। ଆଉ ଅଳ୍ପ ସମୟ ବାକି। ନା ଏଥର ନିଶ୍ଚୟ ଆସିବ। ଏଇ ଆସିଗଲା ଧରାଯାଉ। ଧେତ୍ ଡେରି ଆହୁରି ଘଣ୍ଟାଏ ଡେରି ହେବ। ହୁଏତ ଦଶଘଣ୍ଟା, ଦଶଦିନ ବି ଡ଼େରି ହୋଇପାରେ। ପ୍ରତୀକ୍ଷାରେ ସମୟର ସ୍ରୋତ ଅନନ୍ତ। ଏଠି ବର୍ଷ, ମାସ, ପକ୍ଷ, ଦିନ, ଘଣ୍ଟା, ମିନିଟ୍, ସେକେଣ୍ଡର ଅର୍ଥ ନାହିଁ। ବରଂ ସେଗୁଡ଼ିକୁ ଫୋପାଡ଼ି ଦେବା ଉଚିତ୍ ବା ଡାଲିଙ୍କ ଚିତ୍ରର ଘଣ୍ଟା ଭଳି ଚେପ୍‌ଟା କରି ଶୁଖିଲା ଗଛ ଡାଳରେ ଝୁଲେଇ ଦେବା ଭଲ। ପ୍ରତୀକ୍ଷା କରିବ ପରା ଆସ। ପାଟି ଆଁ କରି ଆକାଶକୁ ଚାହଁ। ଅପେକ୍ଷା କର। ଝୁଲୁଛି। ଖସିବ। ଅଙ୍ଗୁର ପେଛା। ନା ଅଙ୍ଗୁର ଯାକ ଭୀଷଣ ଖଟା। ବରଂ ଏହି ସତ୍ୟରେ ଉପନୀତ ହେବା ଭଲ। ପ୍ରତୀକ୍ଷା- ଗଜୁରି ଉଠୁଥିବା ଗଛଟିକୁ ପଥର ଲଦି ଦେଇ ଚାପି ଦେବା ସଙ୍ଗେ ସମାନ। ପାଟି ପାଖକୁ ଚା କପ୍‌ଟିକୁ ଉଠାଇ ନେଇ ପିଇବାକୁ ଗଲାବେଳକୁ କପ୍‌ରୁ ଚା ଟକ ଟକେ ଢ଼ାଳି ଦେଇ, ଅପେକ୍ଷା କର ଚା ଆସିବ କହିବା ସଙ୍ଗେ ସମାନ। ବା ବେଦୀ ଉପରୁ ବାତୁଅ କନିଆକୁ ଉଠେଇ ଆଣି, ଅପେକ୍ଷା କର, ତୋର ପରେ ବାହାଘର ହେବ କହିବା ବା ବର୍ଷ ବର୍ଷ ମରଣାନ୍ତକ ଯନ୍ତ୍ରଣାରେ ଛଟପଟ

ହେଉଥିବା ରୋଗୀକୁ ଅପେକ୍ଷା କର, କାଲିକୁ ମରିବୁ କହିବା ସଙ୍ଗେ ସମାନ। ପ୍ରତୀକ୍ଷାର ବୟସ ନେଇ ତାର ପ୍ରଭାବ ଓ ତାର ଯନ୍ତ୍ରଣା ମାପିହେବ। କିନ୍ତୁ ଥରେ ଥରେ ଟିକି ନାଗସାପର ବିଷ ଟାଣ ରୀତିରେ ମୁହୂର୍ତ୍ତକର ଯନ୍ତ୍ରଣା ବି ଅସହ୍ୟ।

ରାଧାଙ୍କ ଠାରୁ ଆରମ୍ଭ କରି ଭବନାଥଙ୍କ ପର୍ଯ୍ୟନ୍ତ ପ୍ରତୀକ୍ଷାର ଅନନ୍ତ ଯନ୍ତ୍ରଣାର ସୁଅ ଛୁଟିଛି। ରାଧା ଯମୁନା କୂଳରେ ତାଳ, ତମାଳ କୁଞ୍ଜରେ ବକୁଳ, ମଲ୍ଲି, କଦମ୍ବ, କାମିନୀ ପୁଷ୍ପ ସୁଗନ୍ଧରେ ମହକିତ ହିଲ୍ଲୋଳରେ ମତୁଆଳ ହୋଇ ପ୍ରତୀକ୍ଷା କରୁଥିଲେ। ରାଧାଙ୍କର ଅନେକ ସୁବିଧା ଥିଲା ଆଜି ଶ୍ୟାମ ଆସିଲେନି ତ କାଲିକି ଲଳିତା ବା ବିଶାଖା ହାତରେ ପ୍ରେମପତ୍ର ''ଶୀଘ୍ର ଆସ ମୁଁ ଅଥୟ।'' ନଦୀ ଏ ପଟରୁ ସେପଟ କେତେବା ସମୟ ଲାଗିବ। କୃଷ୍ଣ କେତେ ଆଉ ମିଛଟାରେ ବଂଶୀ ବଜେଇବେ ବା ଗାଈ ଚରେଇବେ। ରାଧାଙ୍କ ପ୍ରେମର ଗଭୀରତା, ହୃଦୟର ସ୍ପନ୍ଦନ, ଦେହର ଉଷ୍ଣତା ସବୁ ଶ୍ୟାମଙ୍କୁ ଆଗରୁ ଜଣା। ଏଣୁ ଆଜି ନ ହେଲେ କାଲି ସକାଳୁ, ନ ହେଲେ ଏକୁଟିଆ ମଧ୍ୟାହ୍ନରେ, ଛାଇ ଲେଉଟାଣି ଅପରାହ୍ନରେ ବା ଗୋଧୂଳି ସନ୍ଧ୍ୟାରେ ବା ରାତିର ତିମିର ଭେଦ କରି କୌଣସି ନା କୌଣସି କୁଞ୍ଜରେ ମିଳନ ହେଇଯାଉଥିଲା।

ଭବନାଥ ବର୍ତ୍ତମାନ ନାଚାର। କରିବେ ବା କ'ଣ। ଭୁବନେଶ୍ୱର ହେଇଚି କି କହିବେ ଯା ଡାକିଆଣ, ସ୍କୁଟରରେ ବସେଇ ନେଇ ଆ, ନ ହେଲେ ଧରି ଆଣ, ବାନ୍ଧି ଆଣ। ଯେମିତି ହେଲେ ନେଇ ଆସ। ଏ ପ୍ରତୀକ୍ଷାର ଅନ୍ତ ହେଉ। ଏଠି ହାତ ଗୋଡ଼ ପାଉନି। ଭବନାଥଙ୍କ ମନେପଡ଼େ ଯେନତେନ ପ୍ରକାରେଣ ବିତି ଯାଇଥିବା କୋଡ଼ିଏଟି ବର୍ଷର ପ୍ରତୀକ୍ଷାର ଇତିହାସ। ସେତେବେଳେ ନୂଆ ନୂଆ ବାହାଘର। ଭବନାଥଙ୍କ ପତ୍ନୀ ବାଲେଶ୍ୱରରେ, ଭବନାଥ

ଭୁବନେଶ୍ୱରରେ। ସନ୍ଧ୍ୟା ହେଲେ ଭବନାଥ ରେଳ ଷ୍ଟେସନ୍ ଆଡ଼େ ବୁଲି ବାହାରନ୍ତି। ଏକା ଏକା। ଷ୍ଟେସନ୍‌ର ଅପେକ୍ଷାକୃତ ନିଛାଟିଆ ଅଞ୍ଚଳରେ ପଡ଼ିଥିବା ସିମେଣ୍ଟ ବେଞ୍ଚ ଉପରେ ବସି ବାଣେଶ୍ୱର ଆଡ଼େ ଅନେଇ ରହନ୍ତି। ଯେତେ ଅପ୍ ପାସେଞ୍ଜର୍, ଏକ୍ସପ୍ରେସ୍, ମେଲ୍ ଆସେ ଡ୍ରାଇଭର୍ ଠାରୁ ଆରମ୍ଭ କରି ଗାର୍ଡ଼ ଡବା ପର୍ଯ୍ୟନ୍ତ ସବୁଗୁଡ଼ିକ ଡବା ଏ ମୁଣ୍ଡରୁ ସେ ମୁଣ୍ଡ ଆଖି ବୁଲେଇ ଆଣନ୍ତି। ଥରେ ଥରେ ମନ ଭିତରେ କ'ଣ ସନ୍ଦେହ ହୁଏ କେଜାଣି ପରୀକ୍ଷକ ପରୀକ୍ଷା ଖାତାର ନମ୍ବର ଏମୁଣ୍ଡରୁ ଥରେ ଆଉ ସେ ମୁଣ୍ଡରୁ ଥରେ ଗଡ଼େଇ ଆଣିଲା ଭଳି ଗାର୍ଡ଼ ଡବା ଆଡୁ ଇଞ୍ଜିନ୍ ପର୍ଯ୍ୟନ୍ତ ପୁଣି ଆଖି ଦୋହରେଇ ଆଣନ୍ତି। ମନ ଫିକା ପଡ଼ିଯାଏ। ପତ୍ନୀଙ୍କ ଉଦ୍ଦେଶ୍ୟରେ ମନ ଭିତରେ କୋହ ଉଠେ। ପୁଣି ଥମିଯାଏ। ଭବନାଥଙ୍କର ଦିନକର ପ୍ରତୀକ୍ଷା ଶେଷ ହୁଏ। କିନ୍ତୁ ଏ ପ୍ରତୀକ୍ଷାର ଯନ୍ତ୍ରଣା ପାଇଁ ଭବନାଥ ହିଁ ନିଜେ ଦାୟୀ। ସେ କେବେ ପତ୍ନୀଙ୍କୁ ଆସିବାପାଇଁ ଚିଠି ଲେଖି ନ ଥାନ୍ତି। ବା ତାଙ୍କ ପତ୍ନୀ ଭବନାଥଙ୍କ ନିକଟକୁ ଖବର ପଠେଇ ନ ଥାନ୍ତି ଯେ ସେ ଅମୁକ ଦିନ ଅମୁକ ଏକ୍ସପ୍ରେସ୍ ବା ପାସେଞ୍ଜରରେ ଆସିବେ। ଭବନାଥ ସନ୍ଧ୍ୟାବେଳଟାରେ ବସାରେ ବା କରନ୍ତେ କ'ଣ। ସବୁ ସାଙ୍ଗସାଥୀ, ଛାଇ ଫିଟି ଗଲେ ମାଛ ଫିଟିଗଲା ଭଳି ସନ୍ଧ୍ୟାହେଲେ ଆଉ ବସାରେ ନ ରହନ୍ତି। ଭବନାଥ ଭାବନ୍ତି ହୁଏତ ପ୍ଲାଟଫର୍ମ ବେଞ୍ଚ୍ ଉପରେ ଦୁଇ ତିନିଘଣ୍ଟା କଟେଇଦେଲେ ପ୍ରତୀକ୍ଷାର ଯନ୍ତ୍ରଣା ଟିକିଏ ଲାଘବ ହୋଇଯିବ। ସନ୍ଧ୍ୟା ଘନେଇ ଆସିଲେ ପ୍ଲାଟଫର୍ମର ଲାଇଟ୍ ଗୁଡ଼ିକ ଟିକିଏ ତେଜି ଉଠିଲେ ପତ୍ନୀଙ୍କ ଉଦ୍ଦେଶ୍ୟରେ ଦୀର୍ଘ ନିଶ୍ୱାସଟିଏ ଛାଡ଼ି ଭବନାଥ ବେଞ୍ଚରୁ ଉଠି ଠିଆ ହୁଅନ୍ତି ଓ ଘରମୁହାଁ ହୁଅନ୍ତି। ପ୍ରତୀକ୍ଷା ଜନିତ କ୍ଲାନ୍ତି ହେତୁରୁ ବସାକୁ ସହଜ ବାଟଟିରେ ଗୋଟିଏ ଦୁଇଟା ରେଳ ଲାଇନ୍ ପାର ହୋଇ ଧୀରେ ଧୀରେ ପାଦ ପକେଇ ଆଗାନ୍ତି। ବାଟରେ ବାଁପଟକୁ ତେଲଙ୍ଗା ବସ୍ତି ଓ କୁଷ୍ଠ

ରୋଗୀଙ୍କ କଲୋନୀ-ଗୋପବନ୍ଧୁ ସେବାସଦନ। ସେବା ସଦନର ଅନ୍ତେବାସୀମାନେ ଭୋର୍ ଭୋର୍‌ରେ ଖଞ୍ଜଣି ମାଡ଼ କରି ନିଜ ଜଞ୍ଜାଳରୁ ମୁକ୍ତି ପାଇବାପାଇଁ ଚେଷ୍ଟିତ ଥିବାବେଳେ ତେଲେଙ୍ଗା ପଡ଼ାର ଟିଣ, ଛପା, ଚାଞ୍ଚ, ଛିଣ୍ଡା ଟାରପଲିନ୍ ଓ ପ୍ଲାଷ୍ଟିକ୍ ଢରିଦିଆ କୁଡ଼ିଆ ଘର ଗୁଡ଼ିକର ନିଷ୍ପ୍ରଭ କିରୋସିନି ଡିବିଗୁଡ଼ିମାନ ଢାକିଦେଇ ନାଲି ନୀଳ ଛାପା ଶସ୍ତା ଶାଢ଼ିରୁ ଖଣ୍ଡେ ଖଣ୍ଡେ ପିନ୍ଧି ଦେଇ ମୁଣ୍ଡରେ କାଗଜର ନାଲିଆ ଫୁଲଟିମାନ ଖୋସି ସେମାନେ ଗରାଖଙ୍କ ପ୍ରତୀକ୍ଷାରେ ଠିଆ ହୋଇଥାନ୍ତି। ଭବନାଥଙ୍କୁ ଯେମିତି ଲାଗେ ସେଇ ଏକା ପ୍ରତୀକ୍ଷା। ଦି-ଟଙ୍କିଆ ଶ୍ୟାମ ନାଗର ମାନଙ୍କର କାମ ବାସନାକୁ ସନ୍ତୁଷ୍ଟ କରିବାପାଇଁ, ଟିକିଏ ଗରମ ପାଣି ମୁନ୍ଦେକ ପାଇଁ, ରାଧାଙ୍କର ଶହ ଶହ କଳଙ୍କିତ ପ୍ରେତ ନିଜର ଯୌନ ବିକାରଗ୍ରସ୍ତ ଶ୍ଳଥ ମାଂସ ପଲେ ଧରି ଠିଆ ହୋଇଛନ୍ତି ଶସ୍ତା ପ୍ରେମର ହାଟରେ। ଏଇଠି ସଉଦା ବିକା କିଣା ହେବ। ପଇସା ବିନିମୟରେ ରୋଗ କିଣାଯିବ। ମଦର ବାସ୍ନାରେ ପ୍ରେତିନୀ ମାନଙ୍କୁ ରସସିକ୍ତ କରି ଦୀର୍ଘ ପ୍ରତୀକ୍ଷାର ଅନ୍ତ କରାଯିବ। ଭବନାଥ ଚିତ୍ରଶିଳ୍ପୀର ଦୃଷ୍ଟିନେଇ ସେ କୁହେଳିକାମୟ ରଙ୍ଗ ରୂପର ସମ୍ଭାରକୁ ଗ୍ରହଣ କରନ୍ତି ଏବଂ ବିବେକର ତଉଲରେ କସି ଦେଇ ଫିଙ୍ଗି ଦିଅନ୍ତି ପୁଣି ଭାବନ୍ତି ବରଂ ପ୍ରତୀକ୍ଷା ଶତ ଗୁଣେ ଭଲ। ପ୍ରତୀକ୍ଷାରେ ଯନ୍ତ୍ରଣା ବି ଅଛି, ଆନନ୍ଦ ବି ଅଛି। ଭବିଷ୍ୟତରେ ପାଇବାର ଆନନ୍ଦ। ଶୀତରେ ବସନ୍ତର ପ୍ରତୀକ୍ଷା ନିଶ୍ଚୟ ଆଶାଦାୟକ।

ଭୁବନେଶ୍ୱରରେ ଲେମୁର କମ୍ପାନୀର ପ୍ରତିନିଧି ଏକରକମ ଅଭୟବାଣୀ ଶୁଣେଇ ଦେଇଥିଲେ, "ଭବନାଥ ବାବୁ ! ଆଉ ଚିନ୍ତା ନାହିଁ। ସବୁତକ ଚିନ୍ତା ମୋତେ ଦେଇ ଦେଇ ଆପଣ ନିଶ୍ଚିନ୍ତ ରୁହନ୍ତୁ। ମୁଁ ଆପଣଙ୍କ ପାଇଁ ରାତି ଅନିଦ୍ରା ରହେ। ଆପଣ ଆରାମରେ ଶୁଅନ୍ତୁ। ଭାବନ୍ତୁ ଆପଣଙ୍କ ଜାହାଜ

ବଙ୍ଗୋପସାଗରର ବକ୍ଷଭେଦି ଛୁଟି ଚାଲିଛି ସ୍ୱିଡେନ ଅଭିମୁଖେ। ଜାହାଜ ନିଶ୍ଚୟ ପହଞ୍ଚୁଛି, ଜୁଲାଇ ଶେଷ ବେଳକୁ ଦେଖିବେ ଜାହାଜ ଷ୍ଟକ୍‌ହୋମ୍‌ରେ ପହଞ୍ଚି ଯାଇଥିବ।'' ଭବନାଥ ଜାଣିଥିଲେ ବ୍ୟବସାୟ କରିବାବାଲାଙ୍କ କଥାଯାକ ଏମିତି ପାଣିରେ ସର ପଡ଼ିଲା ଭଳି। ଖାଲି କଥାରେ ପେଟ ପୂରିଯିବ। ପ୍ରତିନିଧି ନା ଜାହାଜ ଦେଖିଛନ୍ତି ନା ଜିନିଷ ଲଦିଛନ୍ତି। ଭବନାଥ ଯେଉଁଠି ସେ ମଧ ସେଇଠି। ଉଭୟେ ହୁଏତ ଦେଖିଛନ୍ତି ଟ୍ରକ୍‌ରେ ଲଦା ହୋଇ ଜିନିଷ ଗୁଡ଼ିକ ଭୁବନେଶ୍ୱର ଛାଡ଼ିଲା। ତାପରେ ନଖ ଦର୍ପଣରେ ଯେମିତି ସବୁ ଦେଖାଯାଏ ହୁଏତ ପ୍ରତିନିଧିଙ୍କୁ ସେମିତି ସବୁ ଦେଖାଗଲା। ଏଇ ଜାହାଜ କଲିକତାର ଡକ୍‌ରେ ଆସି ଲାଗିଲା। ଟ୍ରକ୍‌ରୁ ମାଲ୍ ଖଲାସ କରାଯାଇ ଜାହାଜରେ ଲଦା ହେଲା। ଭକ୍ ଭକ୍ ଧୂଆଁ ଛାଡ଼ି ଜାହାଜ ଚାଲିଲା। ଲହଡ଼ି କାଟି କାଟି ଜାହାଜ ଆଗେଇଲା ସମୁଦ୍ର ଭିତରକୁ ଯେଉଁଠି ପାଣି ଆଉ କୂଳର ସମ୍ପର୍କ ନାହିଁ। ପ୍ରତିନିଧି ହୁଏତ କଲିକତାରୁ ଖବର ପାଇଲେ ଜାହାଜ ଛାଡ଼ିବ ବା ଛାଡ଼ିବାର ସମ୍ଭାବନା ଅଛି ବା ଜାହାଜ ଆଜି ସନ୍ଧ୍ୟାରେ ଛାଡୁଛି। ଭବନାଥଙ୍କୁ ଖୁସି କରାଇବା ପାଇଁ ଆଉ ପାଞ୍ଚକଥା ଯୋଡ଼ି ବନେଇ ଚୁନେଇ କହିଦେଲେ। କୁହାଯାଇପାରେ। ଭବନାଥଙ୍କ ପୂର୍ବ ପୁରୁଷ ହୁଏତ ପାଲୁର ବନ୍ଦରରୁ ହଂସମୁଖିଆ ଜାହାଜର ପାଲଟାଣି ବେପାର କରିବାପାଇଁ ଜାଭା ସୁମାତ୍ରା ଯାଉଥିଲେ। କିନ୍ତୁ ଭବନାଥଙ୍କ ମନରେ ସେଇ ସ୍ମୃତି ଇତିହାସ ଓ କିମ୍ବଦନ୍ତୀ କଥା ହୋଇ ରହିଛି। ଲେମ୍ବୁର୍ ପ୍ରତିନିଧିଙ୍କ କଥା କିମିତି ବେଖାପିଆ ଲାଗୁଥିଲେ ମଧ ଚିନିବୋଳା କୁଇନାଇନ୍ ବଟିକା ଭଳି ସେବନ କରାଯାଇପାରେ। ନ ଢୋକି ଚାରା ନାହିଁ। ଭବନାଥଙ୍କ ଅନ୍ୟାନ୍ୟ ବନ୍ଧୁ ଓ ଶୁଭେଚ୍ଛୁମାନେ ପ୍ରତିନିଧିଙ୍କ କଥାକୁ ଅନ୍ୟ ଦୃଷ୍ଟିକୋଣରୁ ବିଚାର କଲେ। ସେମାନେ ଭାବିଲେ ଟଙ୍କା

ଦିଆହୋଇଛି ଯେତେବେଳେ ତାହାଙ୍କ ଷ୍ଟକ୍‌ହୋମ୍ ନ ପହଞ୍ଚି ଯିବ କୁଆଡ଼େ ? ନ ହେଲେ ପ୍ରତିନିଧି ଶହୀଦ ନଗରରେ ରହୁଛି, ଶଳା ବେକରେ ଗାମୁଛା ପକେଇଦେବା।

ଭବନାଥ ଏଭଳି ଅବସ୍ଥାରେ କରନ୍ତେ ବା କ'ଣ ? ଘଟଣାଟିକୁ ଖେଳୁଆଡ଼ ମନୋବୃତ୍ତି ନେଇ ଗ୍ରହଣ କରିଯିବାପାଇଁ ମନସ୍ଥ କଲେ। ମନେ ମନେ ବିଭିନ୍ନ ଦିଅଁ ଦେବତାଙ୍କୁ ମନାସିଲେ। ମଣିଷ ବିପଦରେ ପଡ଼ିଲେ ଦିଅଁ କଥାଟି ଆପେ ଆପେ ମନେ ପଡ଼ିଯାଏ। ଭବନାଥ ଆଗରୁ ବହୁ ପ୍ରଦର୍ଶନୀ ଆୟୋଜନ କରିଛନ୍ତି। ପ୍ରଦର୍ଶନୀର ସାଜ ସରଞ୍ଜାମ ଭୁବନେଶ୍ୱରରୁ ବାହାରକୁ ପଠେଇଛନ୍ତି। କିନ୍ତୁ ପାଣି ତାହାଙ୍କର ଅନୁଭୂତି ସମ୍ପୂର୍ଣ୍ଣ ନୂଆ। ଏଣୁ ଟ୍ରକ୍‌କୁ ବିଦାୟ ଦେଇସାରି ସେ ଯନ୍ତ୍ରଣାରେ ଛଟପଟ ହେଉଛନ୍ତି। ବେଳେବେଳେ ଭବନାଥଙ୍କ ମନ ଟ୍ରକ୍ ପଛେ ପଛେ ଧାଇଁଯାଏ। ଅକ୍‌ଟ୍ରାଇ ଗେଟ୍ ପାଖରେ ଟ୍ରକ୍ ଅଟକିଲେ ତାଙ୍କ ମନ ସେଇଠି ଅଟକେ। ତେଲ ପକାଇବା ପାଇଁ ଟ୍ରକ୍ ପେଟ୍ରୋଲ୍ ପମ୍ପରେ ଅଟକିଲେ ମନ ସେଇଠି ଠିଆହୋଇ ମିଟର୍‌କୁ ଚାହିଁରହେ। ଡ୍ରାଇଭର୍ ଢାବାରେ ପହଞ୍ଚି ଦଉଡ଼ିଲଗା ଖଟିଆ ଉପରେ ଥକା ମାରି ପଡ଼ିଗଲେ ଭବନାଥଙ୍କ ମନ କାୟା ସଙ୍ଗେ ଛାୟା ଭଳି ସେଇ ଖଟିଆ ପାଖରେ ଶୋଇ ରହେ। ଡ୍ରାଇଭର୍ ଯଦି ଦେଶୀ ସୋଡ଼ା ବୋତଲ ଖୋଲିଲା ଭବନାଥ ହଡ଼ବଡ଼େଇ ଯାଆନ୍ତି। ଶଳା ମାଇଲା। ଭବନାଥଙ୍କ ମନ ସେଠି ନଥାଇ ସେ ନିଜେ ଯଦି ସେଠି ଥାଆନ୍ତେ ଶଳାର ଡ୍ରାଇଭର ପଣିଆ ଛଡ଼େଇ ଦିଅନ୍ତେ। ଶଳାକୁ ପୋଲିସ୍ ଦ୍ୱାରା ବନ୍ଧେଇ ଦିଅନ୍ତେ। ଭବନାଥ ଭାବନ୍ତି, ଶଳା ପିଉଚି ତ ପିଉ, ହେଲେ ସେତିକି ଆଉ ଅଧିକା ସୋଡ଼ା ନ ମାଗୁ। ଭବନାଥ ଟ୍ରକ୍ ପଛେ ପଛେ ଛୁଟନ୍ତି। ସେ ଚାରିପାଞ୍ଚ ଦିନ ଯନ୍ତ୍ରଣାରେ ଛଟପଟ ହୁଅନ୍ତି। ମନ ତ ଟ୍ରକ୍ ସାଙ୍ଗରେ ପକେଇଛି ଏଣେ ସବୁ କାମରେ ଅନ୍ୟମନସ୍କ।

ଟ୍ରକ୍ ନିରାପଦରେ ପହଞ୍ଚିଲା । ଟେଲିଗ୍ରାମ୍‌ଟି ପାଇଗଲେ ପ୍ରତୀକ୍ଷାର ଶେଷ ହୁଏ । କିନ୍ତୁ ଏଇଟା କଲିକତା ବା ଦିଲ୍ଲୀ ହୋଇନି ଯେ ଟ୍ରକ୍ ପଛେ ପଛେ ପହଞ୍ଚିଯିବ । ଏକବାରେ ଷ୍ଟକ୍‌ହୋମ୍ । କାହିଁ କୁଆଡ଼େ ଆଖି ପାଉନି । ଜାହାଜ ପଛେ ପଛେ ମନ ଯିବ କିମିତି । ଅକାତ କାତ ପାଣି, ପାହାଡ଼ ଭଳି ଲହଡ଼ି । ବଙ୍ଗୋପସାଗରରୁ ଭାରତ ମହାସାଗର ସେଠୁ ପୁଣି ଆରବ ସାଗର ତାପରେ ଭୂମଧ୍ୟ ସାଗର ତା ପରେ ଉତ୍ତର ସାଗର ଆଉ ଆଖି ପାଉନି ଖାଲି ସାଗର ମହାସାଗର ତରଙ୍ଗ, ଉଦ୍ଭାଳ ତରଙ୍ଗ । ବାସୁକୀର ସହସ୍ର ଫଣାରେ ବିଷ ଫିଙ୍ଗୁଥିବା ତରଙ୍ଗ, ଈଗଲର ପଂଝାରେ ଝାମ୍ପି ପଡୁଥିବା ତରଙ୍ଗ । ଭବନାଥଙ୍କ ମନଟି ନୀଳ ସମୁଦ୍ରର ଦିଗନ୍ତ ଖୋଜି ପାଉନି । ସ୍ୱପ୍ନ ଭଳି ନୀଳିମାରେ ହଜିଯାଉଚି । ହୁଏତ ପ୍ରତିନିଧି କହିଲା ଭଳି ଜାହାଜ ଚାଲିଛି । ଝୁକ୍ ଝୁକ୍ । ସମୁଦ୍ରର ବୁକୁ ଫଟାଇ ଷ୍ଟକ୍‌ହୋମ୍‌ର ବନ୍ଦର ଆଡ଼କୁ । ଏଥର ଭବନାଥ ଆଉ ଜାହାଜ ସାଙ୍ଗରେ ନାହାନ୍ତି । ମନ ମାନୁନି । ଭାବୁଚନ୍ତି ପିଲାବେଳେ ବର୍ଷା ଦାଣ୍ଡର ପାଣି ସୁଅରେ ଯିମିତି କାଗଜର ଡଙ୍ଗାଟି ଭସେଇ ଦେଲେ କିଛି ବାଟ ଭାସିଯାଇ ବର୍ଷାର ଟାଣୁଆ ପାଣି ଟୋପାରେ ଖିନ୍‌ଭିନ୍ ହେଇଯାଏ ସେମିତି ହେଇଯିବନି ତ । ପୁଣି ବିଶ୍ୱାସ କରୁଛନ୍ତି ଏଇ ଡଙ୍ଗା ଚାଲିଲା କାର୍ତ୍ତିକର କୋହଲା ସକାଳରେ କଦଳୀ ବାହୁଙ୍ଗା ଉପରେ ପାନ ଗୁଆ ଓ ଧିମି ଧିମି ଦୀପାଳୀକୁ ସଙ୍ଗରେ ନେଇ । ତାପରେ ଭବନାଥଙ୍କ ଚିନ୍ତାର ବଳୟ ଗାଁ ପୋଖରୀ, ଗାଁ ନଈର ଆମ୍ବତୋଟା ମୋଡ଼ ବା ବେଶି ହେଲେ ଚିଲିକାର କାଳିଜାଇ ପାହାଡ଼ ସୀମା ଭିତରେ ଅଟକିଯାଏ । ଷ୍ଟକ୍‌ହୋମ୍ । ଯଦିଓ କୁହାଯାଉଛି ଉଦାହରଣ ଛଳରେ-ତଥାପି ବିଲେଇ ସଂଦର୍ଶନ କରି ବାଘର ହିଂସ୍ରତା ମପାଯାଏନା । ଏଭଳିକି ଚିଲିକାର ଡଙ୍ଗାକୁ ନେଇ ବାଉନ ଗୋଟି ପ୍ରଦର୍ଶନୀ ବାକ୍ସ ନେଇ ଷ୍ଟକ୍‌ହୋମ୍ ଯାଉଥିବା

ଜାହାଜର ପରିକଳ୍ପନା କରାଯାଇ ପାରେନା ।

ଏଣୁ ଶେଷରେ ଭବନାଥ ପ୍ରତୀକ୍ଷାର ବୁଢ଼ିଆଣୀ ଜାଲ ଭିତରେ ଜାଣିଶୁଣି ପଶିବା ଛଡ଼ା ଅନ୍ୟ ଗତି ନ ଥିଲା । ଭୁବନେଶ୍ୱରରେ ବାଉନ ଗୋଟି ପ୍ରଦର୍ଶନୀ ବାକ୍ସ ଟ୍ରକ୍‌ରେ ଉଠେଇ ଦେଇ ଟ୍ରକ୍‌କୁ ବିଦାୟ ଦେବାର ଦୁଇ ସପ୍ତାହ ପରେ ଭବନାଥ ଉଡ଼ାଜାହାଜରେ ବସି ଚବିଶି ଘଣ୍ଟାରୁ କମ୍ ସମୟ ମଧ୍ୟରେ ଷ୍ଟକ୍‌ହୋମ୍‌ରେ ପହଞ୍ଚିଲେ । ଷ୍ଟକ୍‌ହୋମ୍‌ର ଯେଉଁ ହୋଟେଲ୍‌ରେ ରହିଲେ ସେଠୁ ଷ୍ଟକ୍‌ହୋମ୍ ବନ୍ଦରର ଦୂରତା ସେମିତି କିଛି ନୁହେଁ । ହୋଟେଲର ବେଲ୍‌କୋନିରୁ ବଡ଼ ବଡ଼ ଜାହାଜର ମାସ୍ତୁଲ, ଡେକ୍ ଏଭଳିକି ଡେକ୍ ଉପରେ ଖରା ଖାଉଥିବା ଲୋକଗୁଡ଼ିଙ୍କୁ ମଧ୍ୟ ଅନୁମାନ କରିହୁଏ । ଭବନାଥ ଭାବିଲେ ହୁଏତ ତାଙ୍କ ଜାହାଜ ଏଇ ଅଳ୍ପଦିନ ଭିତରେ ଷ୍ଟକ୍‌ହୋମ୍ ବନ୍ଦର ଭିତରକୁ ଝୁକ୍ ଝୁକ୍ ଧୂଆଁ ଛାଡ଼ି ପଶିଆସିବ । ତାପରେ ଭୁବନେଶ୍ୱର ଉଡ଼ାଜାହାଜ ପଡ଼ିଆରେ ଉଡ଼ାଜାହାଜ ଓହ୍ଲାଇଲା ବେଳକୁ ଆଉ ଜଣେ ଯେମିତି ଭୂଇଁ ଉପରେ ଠିଆ ହୋଇ ହାତ ଦୁଇଟି ଉପରକୁ ଉଠେଇ ସଙ୍କେତ ଦିଏ, ହଁ । ଏଇଠି ଓହ୍ଲାଅ । ସେମିତି ଭବନାଥ ଜାହାଜର କ୍ୟାପ୍‌ଟେନ୍‌କୁ ସଂକେତରେ କହିବେ- ହଁ ଷ୍ଟକ୍‌ହୋମ୍ ହେଇଗଲା ଧୂଆଁ ଛାଡ଼ିବା ବନ୍ଦକର । ଷ୍ଟକ୍‌ହୋମ୍ ବନ୍ଦର ଆଡ଼େ ଚାହିଁ ଭବନାଥ ସ୍ୱପ୍ନ ଦେଖନ୍ତି । ବେଳେବେଳେ କାହିଁକି କେଜାଣି ପ୍ରତି ସନ୍ଧ୍ୟାରେ ଷ୍ଟକ୍‌ହୋମ୍ ବନ୍ଦର ଆଡ଼େ ଯାଇ ଯିମିତି କୋଡ଼ିଏ ବର୍ଷ ଆଗରୁ ଭୁବନେଶ୍ୱର ପ୍ଲାଟଫର୍ମ ଉପରେ ବାଲେଶ୍ୱର ଆଡ଼େ ସିମେଣ୍ଟ ବେଞ୍ଚ ଉପରୁ ଚାହିଁ ରହୁଥିଲେ, ସେମିତି ଦକ୍ଷିଣପୂର୍ବ ଦିଗକୁ ମୁହଁକରି କଲିକତା ଆଡ଼େ ଚାହିଁ ରହନ୍ତି । ଭାବନ୍ତି ଏଇ, ଜାହାଜ କଲିକତାରୁ ବାହାରି କଲମ୍ବୋ, ବମ୍ବେ ବନ୍ଦର ଦେଇ ଆଫ୍ରିକା କୂଳେ କୂଳେ ଲୋହିତ ସାଗରରେ ପଶି ସୁଏଜ କେନାଲ

ବାଟେ ଆଲେକ୍‌ଜାଣ୍ଡ୍ରିଆ ଦେଇ ଭୂମଧ୍ୟ ସାଗରରେ ତୁକି, ଜିବ୍ରାଲଟର୍ ସନ୍ଧିରେ ଆଟ୍‌ଲାଣ୍ଟିକ୍ ମହାସାଗରରେ ପହଞ୍ଚି, ଲଣ୍ଡନ ବନ୍ଦରକୁ ପଛରେ ପକେଇ ହାମବର୍ଗରେ ପହଞ୍ଚି ଗୁଟେନ୍ ବର୍ଗକୁ ଛୁଇଁ ଷ୍ଟକ୍‌ହୋମ୍ ଅଭିମୁଖେ ଛୁଟିଛି। ଷ୍ଟକ୍‌ହୋମ୍‌ରେ ପହଞ୍ଚିବା ଦିନଠାରୁ ଭବନାଥ ପ୍ରତୀକ୍ଷା କରି ଚାଲିଛନ୍ତି ଜାହାଜ ଆସିବ, ଏଇ ସମୁଦ୍ର କୂଳ ବନ୍ଦରରେ ଲାଗିବ।

ଭବନାଥଙ୍କ ପ୍ରତୀକ୍ଷା ଅପରାହ୍ନର ଛାଇ ଭଳି ଦୀର୍ଘ ଏବଂ ଦୀର୍ଘରୁ ଦୀର୍ଘତର ହେବାକୁ ଲାଗିଲା। ଷ୍ଟକ୍‌ହୋମ୍‌ର ବିଳମ୍ବିତ ସନ୍ଧ୍ୟାରେ ଏଇ ଛାଇର ଅନ୍ତ କେବେ ହେବ ସେ ସମ୍ପର୍କରେ ସନ୍ଦେହ ବଢ଼ିବାକୁ ଲାଗିଲା। ପ୍ରତି ସନ୍ଧ୍ୟାରେ ଭବନାଥ ଷ୍ଟକ୍‌ହୋମ୍ ବନ୍ଦରକୁ ଯାଆନ୍ତି ଏବଂ ନିର୍ନିମେଷ ନୟନରେ ଚାହିଁ ରହନ୍ତି ଯେଉଁଠି ସାଗର ଓ ଆକାଶ ମିଶିଯାଇ ଦିଗନ୍ତ ସୃଷ୍ଟି କରିଛନ୍ତି ବା ଯେଉଁଠି ଉଭୟେ ହଜି ଯାଉଛନ୍ତି ଗାଢ଼ ନୀଳିମା ଭିତରେ। ଯାହା ପରେ ଆଉ କିଛିନାହିଁ ହୁଏତ ସବୁ ପାଣି ଓ ସବୁ ଆକାଶ। ଭବନାଥଙ୍କ କଳ୍ପନା ଓ ସ୍ୱପ୍ନ ଏହି ଦିଗନ୍ତ ଭିତରେ ହଜିଯାଏ। ଭବନାଥ ନିଜକୁ ବୁଝେଇବା ପାଇଁ ଚେଷ୍ଟା କରନ୍ତି। ଆଉ ବନ୍ଦର ଆଡ଼େ ଧାଁ ଧପଡ଼ ନ କରି ଧୈର୍ଯ୍ୟର ସହିତ କିଛିଦିନ ଅପେକ୍ଷା କରିଯିବା ଭଲ। ଜାହାଜ ଯେତେବେଳେ କଲିକତା ବନ୍ଦର ଛାଡ଼ିଛି ନିଶ୍ଚୟ ଆସିବ, ଆସୁଥିବ। ଗାଡ଼ି, ମଟର, ଟ୍ରେନ୍ କଥା ଅଲଗା, ପାଣି ଜାହାଜ କଥା ଅଲଗା। ସପତ ସାଗର ଲଂଘି ଆସିବ, ତିମି, ମଗର, ଜଳହସ୍ତୀ ଦନ୍ତକୁ ଟପି ଆସିବ। ଝଡ଼, ବତାସ କେତେ ଦୁର୍ବିପାକ ସବୁକୁ ଲଂଘିବ। ଜାହାଜର ଭାଗ୍ୟରେ ବିପଦର ମାତ୍ରା ଅନେକ ବେଶି। ସେଦିନ ଯୁଦ୍ଧ ଜାହାଜ ଓ୍ୱାସା ଦେଖିସାରିଲା ପରେ ଭବନାଥ ଏ ସମ୍ପର୍କରେ ଭାଗ୍ୟ ଉପରେ ସମ୍ପୂର୍ଣ୍ଣ ଭାବେ ନିର୍ଭର କରିବାପାଇଁ ବାଧ ହେଲେ। ଷ୍ଟକ୍‌ହୋମ୍ ବନ୍ଦରର ଅନତି

ତୂରରେ ଟିଣ କାନ୍ଥ ଓ ଛାତ ଘେରା ପ୍ରକାଣ୍ଡ କୋଠା ଭିତରେ ସପ୍ତଦଶ ଶତାବ୍ଦୀର ସ୍ୱିଡ଼ିସ୍ ଯୁଦ୍ଧଜାହାଜ ଓ୍ୱାସା ତିନି ଶତାବ୍ଦୀ ଧରି ବାଲ୍‌ଟିକ୍ ସାଗରର ଅକାତ କାତ ପାଣିତଳେ ବୁଡ଼ି ରହିଲା ପରେ ସ୍ୱପ୍ନଭଳି ଏବେ ତାର ରୂପ ସମ୍ଭାର ନେଇ ସେଇଠି ଠିଆ ହୋଇଛି। କି ଅପୂର୍ବ ତାର ଶୈଳ୍ପିକ ଗରିମା। ଗଭୀର ସାଗର ତଳେ ତିନି ଶତାବ୍ଦୀର ଶୀତଳ ସମାଧି ପରେ ଓ୍ୱାସାର ପ୍ରତୀକ୍ଷା କାହାର କର ସ୍ପର୍ଶରେ ଅନ୍ତହେଲା ଭବନାଥ ସେକଥା ଭାବୁ ଭାବୁ ସ୍ୱପ୍ନିଳ ସାଗର ଭିତରେ ଭାସିଗଲେ। ତାଙ୍କ ଜାହାଜ କ'ଣ ଓ୍ୱାସା ଭଳି ସାଗରର ପ୍ରଥମ ଚୁମ୍ବନରେ ହିଁ ସାଗର କୋଳରେ ଲୋଟିଯିବ। ଓ୍ୱାସାର କେତେ କଳ୍ପନା ନ ଥିଲା। କେତେ ସ୍ୱପ୍ନ ନ ଥିଲା। ତାର କମାଣରୁ ଗୋଳା ନିକ୍ଷେପ ହେବା ପୂର୍ବରୁ, ତାର ଯୁଦ୍ଧ ତୂରୀର ଲହର ସାଗରର ଉତାଳ ତରଙ୍ଗ ସ୍ପର୍ଶ କରିବା ପୂର୍ବରୁ ଓ୍ୱାସା ଲୋଟିଗଲା ବାଲ୍‌ଟିକ୍‌ର ହିମ ଶେଯରେ। ଭବନାଥ ଓ୍ୱାସାକୁ ଦେଖୁଛନ୍ତି ନା ସ୍ୱପ୍ନ ଦେଖୁଛନ୍ତି। ସେ ଦେଖୁଛନ୍ତି ତାଙ୍କର କଳ୍ପନାର ଓ୍ୱାସା। ହୁଏତ ତାକୁ ହାତ ଧରି ଉଠେଇଥାନ୍ତେ। ଗେଲେଇ କହିଥାନ୍ତେ ଓ୍ୱାସା ଚାଲ, ଆଗେଇ ଚାଲ। ତୁମକୁ ଷ୍ଟକ୍‌ହୋମ୍‌ରେ ଫ୍ରକ୍ ପିନ୍ଧା ଲଳନାମାନେ ଅର୍ଘ୍ୟଥାଳି ଧରି ଅପେକ୍ଷା କରିଛନ୍ତି। ଏଭଳି ଆଳସ୍ୟ ତୁମକୁ ଶୋଭାପାଏନା। ତମେ ପରା ଭାରତର ଦୁଇ ହଜାର ବର୍ଷର କେତେ ସ୍ୱପ୍ନ କେତେ କିମ୍ବଦନ୍ତୀ, କେତେ ଇତିହାସ, କେତେ ପରମ୍ପରା ନେଇ ଯାଉଚ। ଉଠ ବାନ୍ଧବୀ ଓ୍ୱାସା। ତମ ରଣତୁରୀର ହୁଙ୍କାରରେ ଷ୍ଟକ୍‌ହୋମ୍ ବନ୍ଦର ମୁଖରିତ ହୋଇଉଠୁ। ତମ ଦେହର ଉଷ୍ଣ ସ୍ପର୍ଶରେ ବଲ୍‌ଟିକ୍‌ର ଶୀତଳ ଲହରୀ ପ୍ରାଣବନ୍ତ ହୋଇଉଠୁ ତମର ଗୌରବାବହ ସୌମ୍ୟ ରୂପକୁ ଦର୍ଶନ କରି ମୁଁ ମୋର ତିନି ସପ୍ତାହର ଦୀର୍ଘ ପ୍ରତୀକ୍ଷା ସାର୍ଥକରେ। ମୋର ତିନି ସପ୍ତାହ ତମର ତିନି ଶତାବ୍ଦୀ ଭଳି।

ଓ୍ୱାସାକୁ ଦେଖିବାକୁ ଆସିଥିବା ଅନ୍ୟ ଟୁରିଷ୍ଟମାନେ ଲକ୍ଷ୍ୟ କଲେ ଭବନାଥ ଓ୍ୱାସାର ଗୋଟିଏ ମଙ୍ଗ ଉପରେ ମୁହଁ ମାଡ଼ି କାନ୍ଦୁଛନ୍ତି। ସେ ଭୁଲି ଯାଉଛନ୍ତି ତାଙ୍କର ଲେମ୍ବୁର କମ୍ପାନୀର ଜାହାଜ ଓ୍ୱାସା ନୁହେଁ। ଏଠି ଶହ ଶହ ଦର୍ଶକଙ୍କ ଗହଣରେ ଓ୍ୱାସା ସାଙ୍ଗରେ ଗଢ଼ି ଉଠିଥିବା ଆସକ୍ତିଟିକୁ ଭୁଲି ଭବନାଥ ନିଜ ହୋଟେଲକୁ ଫେରିଲେ।

ଦୀର୍ଘ ତିନି ସପ୍ତାହର ପ୍ରତୀକ୍ଷା ଭାଙ୍ଗି ସକାଳୁ କାଉ କା' କଲା ଭଳି ଖବରଟିଏ ଆସି ପହଞ୍ଚିଲା। ''ଲେମ୍ବୁର କମ୍ପାନୀର ଜାହାଜ ଅଗଷ୍ଟ ସତରରେ ଷ୍ଟକ୍‌ହୋମ୍ ବନ୍ଦରରେ ପହଞ୍ଚିବ।'' ଏତେ ଖୁସିର ଖବରଟିକୁ କେମିତି ଗ୍ରହଣ କରିବେ ଭବନାଥ ଭାବି ପାରିଲେ ନାହିଁ। ପୁଣି ସେଇ ପ୍ରତୀକ୍ଷା। ଭବନାଥ ବୋଧହୁଏ ଖୁସି ହୋଇଥାନ୍ତେ କିଏ ଜଣେ ତାଙ୍କ ହାତ ଧରି ଷ୍ଟକ୍‌ହୋମ୍ ବନ୍ଦର ଆଡ଼କୁ ଟାଣି ଟାଣି ନେଇଥାନ୍ତା ଓ ଦେଖେଇ ଦେଇଥାନ୍ତା -ଭବନାଥ। ଦେଖ ତମ ଜାହାଜ ଏଇ ବନ୍ଦରରେ ଠିଆ ହୋଇଛି। ଆଉ ଜାହାଜର କପ୍ତାନ ଦେଖ ତୁମକୁ ହାତ ଠାରି ଡାକୁଚି। ଆସ ଭବନାଥ ନେଇଯାଅ ତମର ବାକ୍ସଯାକ। ଭବନାଥ ତାହେଲେ କୁରୁଳି ଉଠିଥାନ୍ତେ। ସେ ଆଉ ପାଦରେ ନ ଚାଲି ସି ଗଲ୍ ଭଳି ହାତ ଦୁଇଟିକୁ ଉପରକୁ ଉଠେଇ ଉଡ଼ିଯାନ୍ତେ ଆଉ ବସିଯାନ୍ତେ ଜାହାଜର ଡେକ୍ ଉପରେ।

ଆଜି ଅଗଷ୍ଟ ସତର। ଭବନାଥ ମନ ଖୁସିରେ ଶିଶି ସାଙ୍ଗରେ ବନ୍ଦର ଆଡ଼େ ବାହାରିଲେ। ଶିଶି ଭବନାଥଙ୍କୁ ଷ୍ଟକ୍‌ହୋମ୍‌ର କୁଲଟର୍ ହ୍ୟୁସେଟ୍ ଠାରେ ଆୟୋଜିତ ହେଉଥିବା ପପୁଲାର୍ ଆର୍ଟ ପ୍ରଦର୍ଶନୀରେ ସାହାଯ୍ୟ କରୁଛନ୍ତି। ଶିଶି କୁଲଟର୍ ହ୍ୟୁସେଟ୍‌ର କ୍ୟୁରେଟର ଯାହାଙ୍କ ନାମରେ ଭବନାଥ ପ୍ରଦର୍ଶନୀ ବାକ୍ସଗୁଡ଼ିକୁ ପଠେଇଛନ୍ତି। ଭବନାଥ ବନ୍ଦରକୁ ବାହାରିଲା ବେଳଠୁଁ ଭାବୁଛନ୍ତି

ସତେ କ'ଣ ଏ ପ୍ରତୀକ୍ଷାର ଆଜି ଶେଷ ହେବ। ହଁ ହୁଏତ ଭବନାଥଙ୍କ ଏ ଜାହାଜକୁ ନେଇ ପ୍ରତୀକ୍ଷାର ଶେଷ ହୋଇପାରେ। କିନ୍ତୁ ଏଇ ଜାହାଜକୁ ନେଇ ଅନ୍ୟ କାହାର ପ୍ରତୀକ୍ଷା ଆରମ୍ଭ ହୋଇଯାଇପାରେ। ଭବନାଥ ହୁଏତ ଅନ୍ୟ ଏକ ପ୍ରତୀକ୍ଷାର ଜାଲରେ ଛନ୍ଦି ହୋଇଯାଇ ପାରନ୍ତି। ମଣିଷ ଓ ପ୍ରତୀକ୍ଷା ଯେମିତି ସମୟ ସାଙ୍ଗରେ ବହୁଦୂର ଚାଲି ଆସିଛନ୍ତି। ସତେ ମଣିଷ ପୃଥିବୀରେ ଜନ୍ମହେଲା ଦିନଠାରୁ ପ୍ରତୀକ୍ଷା ହିଁ କରୁଛି। ଶିଶୁଟିଏ କିଶୋରକୁ। କିଶୋରଟିଏ ଯୁବକକୁ। ଯୁବକଟିଏ ପ୍ରୌଢ଼କୁ ଏମିତି ପ୍ରତୀକ୍ଷା ହିଁ ଚାଲିଛି। ଆପାତତଃ ମନେ ହେଉଛି ମୃତ୍ୟୁରେ ବୋଧହୁଏ ପ୍ରତୀକ୍ଷାର ଶେଷ। କିନ୍ତୁ ତଥାପି ଶେଷ କାହିଁ। ଆଜି ରାଧା ନାହାନ୍ତି। ତା ବୋଲି ଯମୁନା କୂଳରେ କିଏ କାହାକୁ ପ୍ରତୀକ୍ଷାରେ ବିନିଦ୍ର ରଜନୀ କଟଉନି? ତାର ଖବର କିଏ ରଖିଛି। ରାଧାଙ୍କ ଠାରୁ ଆରମ୍ଭ କରି ଭବନାଥଙ୍କ ପର୍ଯ୍ୟନ୍ତ ପ୍ରତୀକ୍ଷାର ବିରାଟ ନିରବ ଶୋଭାଯାତ୍ରା।

ଭବନାଥ ଓ ଶିଶି ବନ୍ଦରରେ ପହଞ୍ଚିଲେ। ବାକ୍ସଗୁଡ଼ିକ ଜାହାଜରୁ ଆସି ଟ୍ରକ୍‌ରେ ଲଦା ହେଲା। ଭବନାଥ ମନେକଲେ ସେ ଯେମିତି ଯୁଦ୍ଧ ଜୟ କରି ଫେରୁଛନ୍ତି। ଓ୍ୱାସା ସିନା ପାରିଲାନି କିନ୍ତୁ ଭବନାଥ ଓ୍ୱାସାର ଜନ୍ମଭୂମିରେ ସଦର୍ପରେ ଯୁଦ୍ଧଭେରୀ ବଜେଇ ଟ୍ରକ୍ ନେଇ ଫେରୁଛନ୍ତି। ଟ୍ରକ୍ ପ୍ରଦର୍ଶନୀ ଗୃହ କୁଲ୍‌ଟର୍ ହ୍ୟୁସେଟ୍‌ରେ ପହଞ୍ଚିଲା। ବାକ୍ସଗୁଡ଼ିକ ତଳକୁ ଓହ୍ଲାଗଲା। ଭବନାଥ ହଠାତ୍ ଯନ୍ତ୍ରମଣିଷ ରୋବୋର୍ଟ ଭଳି ଅଟକିଗଲେ। ସେ ନିଜକୁ ବିଶ୍ୱାସ କରିପାରିଲେନି ଯେ ସେ ଯେଉଁ ବାକ୍ସଗୁଡ଼ିକ ଭୁବନେଶ୍ୱରରେ ଟ୍ରକ୍‌ରେ ଲଦିଥିଲେ ଏବଂ ଯେଉଁ ବାକ୍ସରେ ଏତେ ଯତ୍ନରେ ଶିଶିର ନାଁ ସାଙ୍ଗରେ ନିଜ ଗାଁ ଓ ଠିକଣା ଲେଖିଥିଲେ ତା ଜାହାଜ ଭିତରେ ଓଲଟିଗଲା। ଶିଶିର ନାଁ ତ ନିଶ୍ଚୟ ଅଛି, କିନ୍ତୁ ଏ ବାକ୍ସଗୁଡ଼ିକ ସିଡ଼ାର।

ଭୁବନେଶ୍ୱରରୁ ନୁହେଁ କଲିକତାରୁ ଲଦାହେଉଛି। ଭବନାଥ ଭାବିଲେ ବୋଧହୁଏ ଅନ୍ୟ ଏକ ଜାହାଜକୁ ପ୍ରତୀକ୍ଷା କରିବାକୁ ହେବ।

# ଦୋରଗା

କଟକ ସହରରେ ଦଶହରା ଭସାଣି ବେଳେ କିଛି ଅଘଟଣ ଘଟିବାର ବିଚିତ୍ରତା ନାହିଁ। ହଜାରେ ସାହିରେ ଦି ହଜାର ଗଳି। ଏମିତି ଘଟିବାଟା ଏଣୁ ସ୍ୱାଭାବିକ। ଏସବୁ ଗଳିରେ ଦୁଇଟି ରିକ୍ସା ରାସ୍ତାରେ କଟାକଟି ହୋଇ ପାରିହେବା ସମ୍ଭାବନା କମ। ଦୁର୍ଗାମେଢ଼ କଥାତ ପଛକୁ ଅଛି। ଏଣୁ ଦଶହରା ପର ଭସାଣି ବେଳକୁ ଗଣ୍ଡଗୋଳ ଥୁଆ। ସାହି ମୁଖିଆଙ୍କ ବିଚାର ବିମର୍ଷ, ପୁଲିସ ବାଲାଙ୍କ ଟ୍ରାଫିକ ବ୍ୟବସ୍ଥା ଓ ଶାନ୍ତି ଶୃଙ୍ଖଳା ପାଇଁ ଲାଠିଧାରୀ ଓ ଲୁହାଟୋପି ପିନ୍ଧା ପୁଲିସ୍ ମୁତୟନ ସବୁ କିଛି ସତ୍ତ୍ୱେ କିଛି ନା କିଛି ଘଟିଯିବାଟା ଏକ ପରଂପରାରେ ପରିଣତ ହୋଇ ଗଲାଣି। କଥାଟା ଏମିତି ଦେହସୁହା ହୋଇଗଲାଣି ଯେ କଟକିଆ ମାନେ ଭାବୁନାହାନ୍ତି କିଛି ଗୋଟିଏ ଅଘଟଣ ଘଟିଯାଉଛି। ଏ ବ୍ୟବସ୍ଥା ଆଗରୁ ମୁଖ୍ୟତଃ କଟକ ସହରରେ ସୀମିତ ଥିଲା। ଏବେ ଦେଖା ଯାଉଛି ଖୋଦ ରାଜଧାନୀ ଭୁବନେଶ୍ୱର ଆଉ କଟକ, ପୁରୀ ଜିଲ୍ଲାର ମୁଖ୍ୟ ସହର ଓ ବଡ଼ ବଡ଼ ଗାଁକୁ ବ୍ୟାପିଗଲାଣି। ଧୀରେ ଧୀରେ ସାହି ପୂଜା ମୁଖ୍ୟତଃ ଅଠର ବୟସ ଠାରୁ ଆରମ୍ଭ କରି ଅଠେଇଶି ବର୍ଷ ବୟସର ଯୁବକମାନଂକ ଅକତିଆରକୁ ଆସିଗଲା ପରେ ଭସାଣି ବେଳର ଉତ୍ତେଜନାରେ ଆଉ କିଛି ଉଷ୍ଣତା ବଢ଼ିଯାଇଛି। ଏସବୁ ସାର୍ବଜନୀନ କାର୍ଯ୍ୟରେ

ସାହି ମୁଖିଆ, ଦାଦା, କକା, ପିଉସା, ମଉସା, ବାପା, ଅଜା ବୟସର ଲୋକେ ଯେ ବାଦ୍ ପଡ଼ିଯାଉଚନ୍ତି ତା ନୁହେଁ ସେମାନେ ମୁଖ୍ୟତଃ ଉପଦେଷ୍ଟାର ଭୂମିକାରେ ରହିବା ପାଇଁ ନିରାପଦ ମଣୁଥିବାରୁ ଦୁର୍ଗାପୂଜା ଏବେ ଯୁବ ଉଚ୍ଛ୍ୱାସର ପ୍ରତୀକ ରୂପେ ଚାରିଆଡ଼କୁ ବ୍ୟାପିବାକୁ ଲାଗିଲାଣି।

ଅବଶ୍ୟ ଏଭଳି ବ୍ୟାପିବା ଶ୍ରେୟସ୍କର ମନେହୁଏ। ମା ଦୁର୍ଗତିନାଶିନୀ ଦୁର୍ଗାଙ୍କର ଆବାହନ ହୁଏତ ଭ୍ରଷ୍ଟାଚାର, ଦୁର୍ନୀତି, କଳାବଜାରୀ, ଅନ୍ୟାୟ ଅତ୍ୟାଚାରକୁ ଏଡ଼େଇ ଦେଇପାରିବ। ସେଇ ଦୃଷ୍ଟିରୁ ଏ ପୂଜାକୁ ସମସ୍ତେ ଗ୍ରହଣ କରିଯାଉଚନ୍ତି। ଭବନାଥ ଏସବୁ ଏତେ ଭଲ ମନ୍ଦ କଥା ଭାବି ତାଙ୍କ ଡ଼ିଜାଇନ ଭିତରେ ଦୁର୍ଗାଙ୍କୁ ସ୍ଥାନ ଦେଇ ନ ଥିଲେ। କୁଲଟର ହ୍ୟୁସେଟ୍‌ର ମୁଖ୍ୟ ପ୍ରବେଶ ଦ୍ୱାର ଓ ତାର ସମ୍ମୁଖର ଛକ ଉପରେ ଥିବା ରାସ୍ତା ଉପରର ଫାଉଣ୍ଟେନ ଓ କୁଲଟର୍ ହ୍ୟୁସେଟକୁ ମୁହଁ କରି ରାସ୍ତାର ଅନ୍ୟପଟେ ଠିଆ ହୋଇଥିବା ଷ୍ଟିଲରେ ତିଆରି କାଚ ଝରକା ସର୍ବସ୍ୱ ବିରାଟ କୋଡ଼ିଏ ମହଲାର କୋଠା ଓ ଏହି କୋଠାର ପାଦ ଦେଶରେ ସିମେଣ୍ଟରେ ତିଆରି ଅପେକ୍ଷାକୃତ ଚଉଡ଼ା ଫୁଟ୍ ପାଥ ଉପରେ ପଡ଼ିଥିବା କାଠ ବେଞ୍ଚ ଉପରେ ସର୍ବଦା ଉପବିଷ୍ଟ ଟୁରିଷ୍ଟ ମାନଂକ ଉପସ୍ଥିତି ପାଇଁ ଦୁର୍ଗାଙ୍କ ଆବିର୍ଭାବ ବଡ଼ ଚମକ ପ୍ରଦ ଘଟଣା ହେବ। ଏଣୁ ଭବନାଥ ପ୍ରଦର୍ଶନୀର ମୁଖ୍ୟଦ୍ୱାରରେ ଦୁର୍ଗାଙ୍କୁ ସ୍ଥାପନ କରିବା ପାଇଁ ପ୍ରସ୍ତାବ ଦେଇଥିଲେ। ଦୁର୍ଗାଙ୍କୁ କୁଲଟ୍‌ର ହ୍ୟୁସେଟ୍‌ର ମୁଖ୍ୟ ଦ୍ୱାରରେ ସ୍ଥାପନ କରିବାର ଆଉ ଦୁଇଟି ପ୍ରଧାନ କାରଣ ଅଛି। ସେଗୁଡ଼ିକ ହେଲା ଏଲରଣ୍ଡା ବିମାନ ଘାଟିରୁ ସହର ଭିତରକୁ ପ୍ରବେଶ କରିବାକୁ ହେଲେ କୁଲଟର୍ ହ୍ୟୁସେଟ୍‌ର ସମ୍ମୁଖରେ ପଶ୍ଚିମକୁ ଯେଉଁ ରାସ୍ତାଟି ଲମ୍ବି ଯାଇଛି

ସେଇଟା ହେଲା ଆପାତଃ ମୁଖ୍ୟରାସ୍ତା ଏବଂ ଏହି ରାସ୍ତାଦେଇ ଆସିବାକୁ ହେଲେ ବହୁଦୂରରୁ ଦୁର୍ଗାଙ୍କ ପ୍ରତିମାଟି ଆଖିରେ ପଡ଼ିବ। ଦ୍ୱିତୀୟ କାରଣ ହେଲା, ଆଗରୁ ଯେତେ ଡ଼ିଜାଇନର ଭାରତ ଉତ୍ସବ ପାଇଁ ପ୍ରଦର୍ଶନୀ ଡ଼ିଜାଇନ କରିଛନ୍ତି ଏଭଳି ଭାବେ ଓଡ଼ିଶାର ସବୁଠାରୁ ଲୋକପ୍ରିୟ କାରିଗରୀ ଛଟାରେ ଭରପୁର କଟକୀ ଦୁର୍ଗାମୂର୍ତ୍ତିକୁ ଏତେ ପ୍ରାଧାନ୍ୟ ଦେଇ ନାହାନ୍ତି। ଏଣୁ ଦୁର୍ଗାମୂର୍ତ୍ତି "ଲୋକପ୍ରିୟ କଳା ପ୍ରଦର୍ଶନୀ"ର ନିଛକ ପ୍ରତୀକ ଭାବେ ସୁଇଡ଼ିସ୍ ବାସୀଙ୍କୁ ମୁଗ୍ଧ କରିବ। ଭବନାଥ କୁଲଟର୍ ହ୍ୟୁସେଟ୍‌ର ଆଗରେ ଠିଆହୋଇ ଦୁର୍ଗାଙ୍କର ମୂର୍ତ୍ତିର ଯେତେବେଳେ ପରିକଳ୍ପନା କରନ୍ତି ପ୍ରଥମରୁ ଭୁଲିଯାଇଥିବା ଆଉ ଅନେକ ଗୁଡ଼ିଏ କାରଣ ତାଙ୍କର ମନେପଡ଼େ। ଫାଉଣ୍ଟେନ୍‌ର ବିଚ୍ଛୁରିତ ଜଳପ୍ରପାତର ଧୂଆଁଳିଆ ପରସ୍ତ ଭିତରେ ବେଳେ ବେଳେ ତାଙ୍କର କଳ୍ପିତ ଦୁର୍ଗାଙ୍କୁ ସଂଦର୍ଶନ କରିବା ପାଇଁ ଚେଷ୍ଟା କରନ୍ତି। ସେତେବେଳେ ମନେହୁଏ ସତରେ ଝୁଣା, ଗୋଗୁଳ, ଚନ୍ଦନ ଧୂଆଁ ଭିତରୁ ମାଁ ଦୁର୍ଗା ଆର୍ବିଭୂତା ହେଇଛନ୍ତି ଓ ଭବନାଥ ସାଷ୍ଟାଙ୍ଗ ପ୍ରଣିପାତ କରି ଜଣାକରୁଛନ୍ତି - "ମା ଅଭୟ ଦାୟିନୀ, ଦୁଷ୍ଟ ବିନାଶିନୀ ଦୁର୍ଗେ, ତମେ ମୋତେ ପ୍ରସନ୍ନ ହୁଅ। କୃପାକର ମାତ ଏ ଅଧମକୁ। ଏ ଚଣ୍ଡାଳ ରାଜ୍ୟରେ ତମର ଆବାହନ ପାଇଁ ଆସ୍ପର୍ଦ୍ଧା କରୁଛି। ପ୍ରସନ୍ନାହୁଅ। ଏହି ପ୍ରଦର୍ଶନୀ ଶୁଭମୟ ହେଉ। ଆମେ ଓଡ଼ିଶାର ଶିଳ୍ପୀଦଳ ଗୌରବର ଟୀକା ନେଇ ଫେରୁ। ଏହି ପ୍ରଦର୍ଶନୀର ଅଶୁଭ କାମନା କରି ଯେତେ ଯେତେ ମହିଷାସୁର ସୃଷ୍ଟି ହେଇଚନ୍ତି ସେମାନଙ୍କର ବିନାଶ କର ମା। ସେମାନଙ୍କୁ ତମ ତ୍ରିଶୂଳ ପ୍ରହାର କରି ସଂହାର କର"। ଭବନାଥ ଭାବ ବିହ୍ୱଳ ହେଇ ଅନେକ କଥା ଭାବିଯାନ୍ତି ଓ ଅନେକ କଥା କହିଯାନ୍ତି।

କୁଇଟର୍ ହ୍ୟୁସେଟ୍‌ର ବଡ଼ ପଣ୍ଡାମାନେ ଦୁର୍ଗା ପ୍ରତିମା କଥା ଶୁଣି ଭାରି ଖୁସି ହେଲେ। ପଚାରିଲେ ଏହି 'ଦୋରଗା' କିଏ? ଭବନାଥ ବଖାଣିଲେ। ଅସ୍ତ୍ର ଶସ୍ତ୍ରରେ ସୁଶୋଭିତା, ସ୍ୱର୍ଣ୍ଣବର୍ଣ୍ଣା, ପ୍ରଭାମୟୀ, ତ୍ରିନେତ୍ରା, ରକ୍ତବସନ ପରିହିତା, ସିଂହାରୁଢ଼ା, ଅଲୌକିକ ଗୁଣ ତେଜରେ ପରିପୂର୍ଣ୍ଣା, ଆଦ୍ୟାଶକ୍ତି ଦୁର୍ଗାଙ୍କର ଅପାର ମହିମା। ରଙ୍ଗୀନ ଫୋଟ, ସ୍ଲାଇଡ୍‌ସ୍ ଇତ୍ୟାଦି ମାଧ୍ୟମରେ ଭବନାଥ ନିଜର ବକ୍ତବ୍ୟକୁ ରସାଣିତ କରିବା ପାଇଁ ଚେଷ୍ଟା କଲେ। ସେମାନଙ୍କ ମନକୁ କ'ଣ ଆସିଲା କେଜାଣି କହିଲେ, "ଦୋରଗା" ନିଶ୍ଚିତ ଭାବେ ସ୍ଥାପନ ହେବେ। ଆଉ ପ୍ରଦର୍ଶନୀ ଶେଷରେ ଦୁର୍ଗା ବିସର୍ଜନ ହେବେ ବାଲଟିକ୍ ସାଗରରେ। ସେଇ ହେବ ପ୍ରଦର୍ଶନୀର ଉଦ୍‌ଯାପନ ଉତ୍ସବ। ଏହି ଘଟଣା ହେବ ଷ୍ଟକ୍‌ହୋମ୍ ମହାନଗରୀରେ ଦୁର୍ଗାଙ୍କ ପ୍ରଥମ ଆବିର୍ଭାବ। ଭବନାଥଙ୍କ ଆନନ୍ଦ କହିଲେ ନ ସରେ କିନ୍ତୁ ବୋଧହୁଏ ଭବନାଥ ଭୁଲି ଯାଇଥିଲେ ଦୁର୍ଗାପୂଜା ଜନିତ ଝାମେଲା। ଦୁର୍ଗାମେଢ଼ ବିସର୍ଜନ ବେଳର ହୋ ହଲ୍ଲା। ସେ ଧରି ନେଇଥିଲେ କଟକରେ ଯିନା ବିସର୍ଜନ ପାଇଁ ହଇରାଣ ହେବାକୁ ହୁଏ, ଷ୍ଟକ୍‌ହୋମ୍‌ରେ ଦୁର୍ଗା ଅତି ସହଜରେ ସ୍ଥାପନା ପାଇଯିବେ ଓ ବିସର୍ଜନ ମଧ୍ୟ ଚମତ୍କାର ହେବ।

ଦିନ ଯେତିକି ଗଡ଼ିଚାଲିଲା ଦୁର୍ଗାଙ୍କୁ ନେଇ ନୂଆ ନୂଆ ସମସ୍ୟା ଷ୍ଟକ୍‌ହୋମ୍‌ରେ ଦେଖାଗଲା। ପ୍ରଥମ ମୂଳ ସମସ୍ୟା ହେଲା ଦୁର୍ଗାଙ୍କ ପାଇଁ କଟକ କାଠଗଡ଼ା ସାହି କୈଳାସ ସେନାପତିଙ୍କ ଘରେ ବନ୍ଧାଯାଇଥିବା ନଡ଼ା ମୂର୍ତ୍ତି। ଏ ମୂର୍ତ୍ତିଗୁଡ଼ିକର ଛାଞ୍ଚ, ସଂପୂର୍ଣ୍ଣ ଦେଶୀୟ ପଦ୍ଧତିରେ ଓଡ଼ିଶାର ନଡ଼ା ଓ ଛଣ ଦଉଡ଼ିରେ କଟକର କାରିଗର ମାନଙ୍କ ଦ୍ୱାରା ବନ୍ଧାହେଇ ଅଖା ଭିତରେ ପଶି ପ୍ରଦର୍ଶନୀର ବାକ୍ସମାନଙ୍କ ସହିତ ପାଣି ଜାହାଜରେ ଆସି ଜୁଲାଇ ଶେଷ

ସୁଦ୍ଧା ଷ୍ଟକ୍‌ହୋମ୍‌ରେ ପହଞ୍ଚିବା କଥା। ଦେଖାଗଲା ଏସବୁ ସାତ ସଂରଚ୍ଛାମ ଅଗଷ୍ଟ ସତର ତାରିଖ ସୁଦ୍ଧା ପହଞ୍ଚିବାର ସମ୍ଭାବନା ନାହିଁ। ଭବନାଥଙ୍କ ମୁଣ୍ଡରେ ଚିନ୍ତା ପଶିଲା। ବିଶୁଦ୍ଧ ଦେଶୀୟ ନଡ଼ାର ଛାଞ୍ଚଗୁଡ଼ିକୁ ଜାହାଜରୁ ଉଦ୍ଧାର କରି ମୂର୍ତ୍ତି କାମରେ ଲଗାଇ ହେବନି କାରଣ ଛାଞ୍ଚରେ ଏକ ମାଟିଆ ଦୋମାଟିଆ, ମାଟି ଶୁଖିବା ସମୟ, ରଙ୍ଗ ଇତ୍ୟାଦି ଭାବିଲା ବେଳକୁ ଭବନାଥଙ୍କ ହାତରେ ସମୟ ନ ଥିଲା। ଦ୍ୱିତୀୟ ସମସ୍ୟା ହେଲା ସଂପୂର୍ଣ୍ଣ ବୈଦେଶିକ। ଦୁର୍ଗା ମୂର୍ତ୍ତିଟି ଫୁଟ୍‌ପାଥ ଉପରେ ଠିଆ ହେବା ଦରକାର ହେଉଥିବାରୁ ଷ୍ଟକ୍‌ହୋମ୍ ପୁଲିସ୍‌ର ଅନୁମତି ଦରକାର ହେଉଥିଲା ଏବଂ ପୁଲିସ୍ ଅନୁମତି ଦେବାକୁ ମନାକରିଦେଇଥାନ୍ତି। ଗୋରୁମାଂସ ଭକ୍ଷଣ କରୁଥିବା ନରାଧମ ଚଣ୍ଡାଳେ ଭସ୍ମ ହେଇଯିବେ। ତ୍ରିଶୂଳର କ୍ଷମତା ଷ୍ଟେନ୍‌ଗନ୍ ଠାରୁ କେତେ ଭୟଙ୍କର ଷ୍ଟକ୍‌ହୋମ ପୁଲିସ ବୋଧହୁଏ ସେକଥା ନ ଜାଣି ନାସ୍ତିବାଣି ଶୁଣେଇ ଦେଇଥିଲେ। କୁଲଟ୍‌ର ହ୍ୟୁସେଟ୍‌ର କର୍ମକର୍ତ୍ତାଙ୍କ ଭିତରେ ଭାବେଣି ପଡ଼ିଲା କ'ଣ କରାଯିବ। ଭବନାଥ ପ୍ରଦର୍ଶନୀ ଗୃହର ପ୍ରବେଶ ଦ୍ୱାରର ନୂଆ ଡ଼ିଜାଇନ କରିବସିଲେ। ଦୁର୍ଗାଙ୍କର ଛବିଟିକୁ ଆହୁରି ଅଧିକ ସ୍ପଷ୍ଟ ଭାବରେ ଆଙ୍କି ଶିଶିଙ୍କ ଚିଠି ସହିତ ପୁଲିସ୍ ଷ୍ଟେସନକୁ ପଠାଇଲେ। ଚିଠି ତଳେ ଉଲ୍ଲେଖ ରହିଲା ଯେ ଆବଶ୍ୟକ ହେଲେ ଏହି ପ୍ରଦର୍ଶନୀର ଡ଼ିଜାଇନର ଡ଼କ୍ଟର ଭବନାଥ ପୁଲିସ୍ ଷ୍ଟେସନ୍‌ରେ ଉପସ୍ଥିତ ରହି ସ୍ଲାଇଡ଼ସ୍ ମାଧମରେ ଦୂର୍ଗାଙ୍କର ସଂପର୍କରେ ଆଉ ଅଧିକା ରଙ୍ଗିନ ଚିତ୍ର ପ୍ରଦାନ କରି ପୁଲିସ କର୍ତ୍ତୃପକ୍ଷଙ୍କ ସନ୍ଦେହ ମୋଚନ କରିବା ପାଇଁ ଚେଷ୍ଟାକରିବେ।

କିନ୍ତୁ ଦୁର୍ଗାଙ୍କ ମହିମା ଅପାର। କରୁଣାମୟୀ ପୁଲିସ୍ ବାହିନୀ ଉପରେ କରୁଣା ବର୍ଷିଲେ। ଦୁର୍ଗାମୂର୍ତ୍ତି ତିଆରି ପାଇଁ ଅନୁମତି

ମିଳିଲା । ପୁଲିସ୍‌ମାନେ ବୁଝିଥିଲେ ଦୁର୍ଗା ଓ ମହିଷାସୁର ଉଭୟେ ରାକ୍ଷସ-ଡ଼ିମନ୍ । ଦୁର୍ଗାଙ୍କର ତିନୋଟି ଆଖି ଯୋଗୁଁ ତାଙ୍କୁ ସେମାନେ ରାକ୍ଷସୀ ଭାବେ ଚିତ୍ରଣ କଲେ । ଗଣେଶ ବସ୍ତୁତଃ ସେମାନଙ୍କୁ ଅଡୁଆରେ ପକାଇଲା । ମହିଷାସୁର ରାକ୍ଷସ ହେଲେ ମଧ କାହିଁକି ଅଧା ମଇଁଷି ଭିତରୁ ବାହାରିବ ସେମାନେ କଳ୍ପନା କରିପାରିଲେନି ।

ଦୁର୍ଗାମେଢ଼ଟିରେ ନାଗସାପ, ମୟୂର, ମୂଷା, ସିଂହ ପ୍ରଭୃତି ଜୀବ ଜନ୍ତୁମାନଙ୍କ ଉପସ୍ଥିତି ସହିତ ଦୁର୍ଗା, ମହିଷାସୁର ଅତ୍ୟନ୍ତ ଦୁର୍ଦ୍ଧାନ୍ତ ଦେଖାଗଲେ । ସେମାନଙ୍କ ମତ ହେଲା ସମୁଦାୟ ମେଢ଼ଟି ଏତେ ଭୟଙ୍କର ଦେଖାଯାଉଛି ଯେ ସୁଇଡ଼ିସ୍ ଗାଡ଼ି ଚାଳକମାନେ ଏଭଳି ଦୃଶ୍ୟ ପ୍ରତି ଆକୃଷ୍ଟ ହୋଇପଡ଼ିଲେ ଦୁର୍ଘଟଣା ଘଟିବାର ସମ୍ଭାବନା ଅଛି । ଦଳ ଦଳ ପର୍ଯ୍ୟଟକ ଦୁର୍ଗା ମୂର୍ତ୍ତିର ସୌନ୍ଦର୍ଯ୍ୟ ଉପଭୋଗ କରିବାପାଇଁ ମୂର୍ତ୍ତି ସଂଲଗ୍ନ ଫୁଟ୍‌ପାଥ୍ ଏବଂ ଫାଉଣ୍ଟେନ୍ ବଳୟର ପାଦଚଲା ରାସ୍ତା ଅବରୋଧ କରି ପକାଇଲେ ଟ୍ରାଫିକ୍ ପରିଚାଳନାରେ ବ୍ୟାଘାତ ଘଟିବ । ସର୍ବୋପରି ଦୁର୍ଗା ନିଶାର୍ଦ୍ଧରେ ଏହି ଫୁଟ୍‌ପାଥ୍ ଉପରେ ଉଭାହୋଇ ରହିଲେ ଏକାକି ବା ଏକାକିନୀ ପଦଚାରୀ ଭେଟଣା ହୋଇ ରକ୍ତବାନ୍ତି କରି ପକେଇବାର ସମ୍ଭାବନା ଥିବାରୁ ପୁଲିସ୍‌ର ଅନୁମତି ପତ୍ରରେ ଉଲ୍ଲେଖ ରହିଲା ରାତି ନଅଟାପରେ ଅନ୍ଧାର ଘୋଟିଗଲେ ଦୁର୍ଗାଙ୍କ ମେଢ଼ ଗୋଟିଏ କଳା ପରଦା ଦ୍ୱାରା ଆଚ୍ଛାଦିତ ହେବ । ଭବନାଥ ଶାନ୍ତିରେ ନିଶ୍ୱାସ ମାରିଲେ । ଏତକ ଯେ ସମ୍ଭବ ହେଲା କେବଳ ମାଁ ଦୁର୍ଗାଙ୍କ ଅପାର ମହିମା ଯୋଗୁଁ । ନିଜେ ମାଁ ଦୁର୍ଗା ସ୍ୱୟଂ ଆର୍ବିଭୂତା ହେବାପାଇଁ ଚାହିଁ ନ ଥିଲେ ଷ୍ଟକ୍‌ହୋମ୍ ପୁଲିସ୍‌ର ପଥର ଭଳି ହୃଦୟ ତରଳି ନ ଥାନ୍ତା । ଷ୍ଟକ୍‌ହୋମ୍ ମହାନଗରୀରେ କଥାଟି ଧୀରେ ଧୀରେ ପ୍ରଚାରିତ ହେବାକୁ ଲାଗିଲା । ଭାରତର ଦୁର୍ଗା ଷ୍ଟକ୍‌ହୋମ୍ ପୁଲିସ୍‌ର

କଠୋରତାକୁ ଡରକାଇ ଦେଲେ। ରାସ୍ତାର ସମସ୍ତ ଟ୍ରାଫିକ୍ ନିୟମକୁ ଓଲଟ ପାଲଟ କରି ପ୍ରଥମ ଥର ପାଇଁ ସ୍କାଣ୍ଡିନେଭିଆର ମାଟି, ପାଣିରେ ଗଢ଼ାହେଇ କୁଲଟର୍ ହ୍ୟୁସେଟ୍‌ର ପ୍ରବେଶ ଦ୍ୱାରରେ ମା ଜଗତ-ଜନନୀ ଆବିର୍ଭୂତା ହେବେ। ଏହି ସମ୍ବାଦଟି ସୁଇଡିସ୍‌ବାସୀଙ୍କ ପାଇଁ ଯେତିକି ପ୍ରେରଣା ଦାୟକ ଥିଲା ଭବନାଥଙ୍କ ପ୍ରାଣକୁ ସେତିକି ଶୀତଳ କରିପାରିଥିଲା। ଭବନାଥ ମନେ ମନେ ପ୍ରାର୍ଥନା କଲେ, "ମା ଦୁର୍ଗେ ଏଇ ସୁଇଡିସ୍‌ବାସୀଙ୍କ ଉପରେ ପ୍ରସନ୍ନ ହୁଅ। ଏମାନଙ୍କ ଧନଜନର ଅଭାବ ନାହିଁ। ଏମାନେ ବଟର୍ ଓ ଦୁଧରେ ଭାସୁଛନ୍ତି। କମଳା, ଅଙ୍ଗୁର ରସରେ ହାତ ଧୋଉଛନ୍ତି। ବିଡ଼ା ବିଡ଼ା ଡଲାର୍ ଉପରେ ଶୋଉଛନ୍ତି। ମାଁ ଦୁର୍ଗେ ଏ ଦେଶ ତମର ନିଜ ଦେଶ ଭଳି ନୁହେଁ। ଯେଉଁଠି ପେଟ ଚାଖଣ୍ଡକ ପୂରେଇବା ପାଇଁ ମୁଣ୍ଡଝାଳ ତୁଣ୍ଡରେ ମାରିବାକୁ ପଡୁଛି। ଜ୍ୱର ନ ହେଲେ କମଳା, ଅଙ୍ଗୁର, ନାସ୍‌ପାତି ଦେଖିବାକୁ ମିଳୁନି। ପାଣିମିଶା ଦୁଧର ଲିଟର ପାଞ୍ଚ ଟଙ୍କା ହେଲାଣି। ମାଁ କଲିକତାର ଫୁଟ୍‌ପାଥକୁ ଥରେ ନିରେଖି ଚାହଁ। ଛିଣ୍ଡା କନ୍ଥା, ଅଖା ଘୋଡ଼େଇଥିବା ମାଁର ଶୁଖିଲା ସ୍ତନରୁ କଙ୍କାଳସାର ଛୁଆଟି ପ୍ରାଣ ପାଇବାକୁ ଚେଷ୍ଟା କରୁଛି। ମାଁ ତୁମେ ଏମାନଙ୍କୁ ଅଧିକା ଐଶ୍ୱର୍ଯ୍ୟ ଦେଇ କ'ଣ ହେବ। ଖାଲି ଏତିକି ପ୍ରସନ୍ନ ହୁଅ। ସୂର୍ଯ୍ୟଦେବତାଙ୍କୁ ନିର୍ଦ୍ଦେଶ ଦିଅ ସେ ଏମାନଙ୍କ ଉପରେ କୃପା ବର୍ଷଣ କରନ୍ତୁ। ଅନ୍ତତଃ ଖରାଦିନତକ ସେ କାର୍ପଣ୍ୟ ନ କରନ୍ତୁ। ସକାଳୁ ସନ୍ଧ୍ୟା ଯାଏଁ ଚାଇଁ ଚାଇଁ ଖରାପଡ଼ୁ। ସୁଇଡେନ୍‌ର ସମସ୍ତ ଗୋରା ସାଇବ ସାଇବାଣୀ ଖରା ଖାଇ ଖାଇ ଆଉ ଟିକିଏ ଶ୍ୟାମଳ ହୋଇଯାଆନ୍ତୁ। ଏତିକି ତୁମେ କର ମାଁ ତାହେଲେ ତମର ଯଶ ରହିବ।"

ତାପରେ ଭବନାଥଙ୍କ ଚିନ୍ତା ପଡ଼ିଲା ନଡ଼ା ଆସିବ କେଉଁଠୁ।

ଧାନ ନଡ଼ାତ ପାଇବା ସ୍ୱପ୍ନ। ହୁଏତ ଗହମ ନଡ଼ା ମିଳିପାରେ। ଶିଶି, . ଭବନାଥ ଦିନେ ସକାଳୁ ଗୋଟିଏ ବଡ଼ ଭେନ୍‌ରେ ବସି ବାହାରିଗଲେ ମଫସଲ ଅଞ୍ଚଳ ଯାହାକୁ ୟୁରୋପରେ ସାଧାରଣତଃ କଣ୍ଟ୍ରିସାଇଡ୍ କୁହନ୍ତି। ଭେନ୍‌ଟି ପବନ ଭଳି ସାଇଁ ସାଇଁ ହେଇ ଷ୍ଟକ୍‌ହୋମ୍‌ର ଜନଗହଳି ରାସ୍ତା ଛାଡ଼ି ମାଡ଼ି ଚାଲିଲା ଅଣ ଓସାରିଆ ରାସ୍ତାରେ କଣ୍ଟ୍ରିସାଇଡ୍ ଆଡ଼କୁ। ଧୀରେ ଧୀରେ ରାସ୍ତା ଦୁଇକଡ଼ର, ପଥର, ସିମେଣ୍ଟ ଘର ପରିବର୍ତ୍ତେ ରାସ୍ତାରେ ପଡ଼ିଲା ଅଙ୍ଗୁର, ଷ୍ଟ୍ରବେରୀ ଓ ଆପେଲ୍‌ର ବଗିଚା ଓ ସୁନାରଙ୍ଗର ଗହମ ଖେତ, ଶାଗୁଆ ରଙ୍ଗର ଘାସ ଖେତ, ଘଞ୍ଚ ବଣପରି ଧାଡ଼ି ଧାଡ଼ି ପାଇନ୍ ଗଛ। ଅଙ୍ଗୁର ଲତାକୁ ଛୁଇଁ ଭାସି ଆସୁଥିବା ହେମାଳ ପବନରେ ଭବନାଥଙ୍କ ମନପ୍ରାଣ ପୁଲକି ଉଠିଲା। ସେମାନେ ଭେନ୍‌ରୁ ଓହ୍ଲାଇ ଗୋଟିଏ ଚଷାର ଖଳାଘରେ ପହଞ୍ଚିଲେ। ଖଳା ନ କହି ଆଉ କ'ଣ ବା କହିହେବ। ଫରକ ଭିତରେ ଏତିକି ଏଠି ଶଗଡ଼ ପରିବର୍ତ୍ତେ ଦୁଇ ତିନୋଟି ଟ୍ରାକ୍ଟର, ଗହମ ବୁଣିବାପାଇଁ, ଘାସ କାଟିବାପାଇଁ, ଗହମ ନଡ଼ା କାଟିବାପାଇଁ ଏବଂ ଆହୁରି ଅନେକ ପ୍ରକାରର କ୍ଷେତ ପାଇଁ ଲୋଡ଼ା ବିଭିନ୍ନ ଯନ୍ତ୍ରପାତି। ହଡ଼ା ବଳଦ ବଦଳରେ ଗ୍ରୀକ୍ ମାର୍ବଲରେ ତିଆରି ହେଲାଭଳି ଘୋଡ଼ା। ଚାଷୀ ସାଇବ ଟ୍ରରଟ୍ ପିଇ ଷ୍ଟେରିଓରୁ ଗୀତ ଶୁଣୁଚି ଖରାରେ ପାଇନ୍ କାଠର ଆରାମ ଚୌକି ଉପରେ। ଷ୍ଟ୍ରବେରୀ ବଗିଚାରେ ଫଳିଥିବା ନାଲିଆ ନାଲିଆ ଷ୍ଟ୍ରବେରୀକୁ ଦେଖି ଖୁସିରେ ନାଲିଆ ନାଲିଆ ମଦ ପିଉଛି। ଭବନାଥ ଭାବିଲେ, ''ବାଃରେ ଚଷାପୁଅ। ଧନ୍ୟ ତୋ ଜୀବନ। ତୋ ଛାତିର ପଞ୍ଜରା ହାଡ଼, କୋରଡ଼ ଭିତରେ ପଶି ଯାଇଥିବା ଆଖି, ଲଙ୍ଗଳ କଣ୍ଟି ଧରି ଧରି ବିଣ୍ଡି ପଡ଼ିଯାଉଥିବା ପାପୁଲି କାହିଁ ? ତୁ ଆମର ଏଗ୍ରିକଲ୍‌ଚର୍ କମିଶନର ଭଳି

ଦେଖାଯାଉଛୁ। ତୁ କ'ଣ ଆମକୁ ନଡ଼ା ବିକିବୁ ?'' ତାପରେ ଶିଶିଙ୍କ ଇଙ୍ଗିତରେ ଚଷାପୁଅ ଉଠି ଠିଆ ହେଲା ଆଉ ଫୁଟିକିଆ ମାପରେ ବନ୍ଧା ହୋଇଥିବା ଗହମ ନଡ଼ା ବିଡ଼ାଗୁଡ଼ିକୁ ଦେଖାଇଲା। ଭବନାଥ ଚମକି ପଡ଼ିଲେ। ଏଥିରେ କ'ଣ ଦୁର୍ଗାମୂର୍ତ୍ତି ବନ୍ଧା ହେବ। ଶିଶି କହିଲେ, ''ଭବନାଥ ! ତୁମେ ବୋଧହୁଏ ଭାବିଚ ସୁଇଡ଼େନ୍‌ରେ ଘର ଛପର ହେଉଛି ଆଉ ତମେ ଲମ୍ବା ନଡ଼ା ପାଇଯିବ। ତମର ଦୋରଗା ଏହି ନଡ଼ାରେ ବନ୍ଧାହୋଇ ପାରିବେକି ନାହିଁ ତମେ ଭଲ ଜାଣିଥିବ କିନ୍ତୁ ମନେରଖ ଏଠି ତମେ ଆଉ ବଡ଼ ନଡ଼ା ପାଇବନି।'' ଭବନାଥ ଭାବିଲେ ମାଁ ଦୁର୍ଗା ବୋଧହୁଏ ଭବନାଥଙ୍କୁ ପରୀକ୍ଷା କରୁଛନ୍ତି। ଏଥିରେ ହତୋତ୍ସାହ ହେଲେ ଚଳିବନି। ଆଗେଇ ଯିବାକୁ ହେବ। ଶହେ ବିଡ଼ା ନଡ଼ା ଭେନ୍‌ରେ ପକେଇଲେ ଆଉ ଫେରିଲେ କୁଲଟର ହ୍ୟୁସେଟ୍‌କୁ କିନ୍ତୁ ଭବନାଥଙ୍କ ମନରେ ବାରମ୍ବାର ଗୋଟିଏ ପ୍ରଶ୍ନ ଉଙ୍କି ମାରୁଥାଏ-ଏଇ ଛୋଟିଆ ନଡ଼ାରେ ଦୁର୍ଗା ବନ୍ଧା ହେଇ ପାରିବତ ? ମନେ ମନେ ଦୁର୍ଗାଙ୍କୁ ବହୁତ ଅନୁନୟ ବିନୟ ହେଲେ କହିଲେ, ''ମାଁ ! ଏହି କଠିନ ପରୀକ୍ଷାରୁ ପାରି ହେବାପାଇଁ ଶକ୍ତି ଦିଅ ମାଁ। ବୁଦ୍ଧି ବଢେଇଦିଅ ମାଁ। ତମେ ଭାବୁଛ ତମେ ଥାଉ ଥାଉ ମୁଁ କଣ ପର ରାଇଜରେ ଲୋକହସା ହେବି।'' ଭବନାଥ ମାନସିକ ଯନ୍ତ୍ରଣାରେ ଛଟପଟ ହେବାକୁ ଲାଗିଲେ।

କୁଲଟର୍ ହ୍ୟୁସେଟ୍‌ର ପ୍ରବେଶ ଦ୍ୱାରରେ ଦୁର୍ଗାଙ୍କ ପାଇଁ ମେଢ଼ ବନ୍ଧାହେଲା। ବିମାନ ଓ ତଳର ସିଂହାସନକୁ ମିଶେଇ ସତେଇଶି ଫୁଟ୍। ଆଖି ପାଉନି। ସେଇ ମାପରେ କଟକର ମାଟି କାରିଗର ପ୍ରଦୀପ ମୁଣ୍ଡ ଛାଞ୍ଚ ନେଇ ଆସିଚି। ଖାଲି କେବଳ ଦୁର୍ଗା ନୁହନ୍ତି, ମହିଷାସୁର, ଗଣେଶ, କାର୍ତ୍ତିକେୟ ସମସ୍ତଙ୍କ

ମୁଣ୍ଡ ଛାଞ୍ଚ ଆସିଯାଇଛି। ଏଣୁ ଏହି ମୁହୂର୍ତ୍ତରେ ନଡ଼ାର ଲମ୍ୱାକୁ ଡ଼ରି କୌଣସି ପରିବର୍ତ୍ତନ କରିହେବନି। ମାଁ ତମ ଇଚ୍ଛା। ନଡ଼ା ମୁଠାକୁ ମୁଠା ଯୋଡ଼ି ବେଣେଇଲା ଭଳି କରି ଲମ୍ୱା କରି ଦିଆଗଲା। ପ୍ରଦୀପ ରୋହିତ, ସଂଗ୍ରାମ ଆଉ ଦିଜଣ ସେଠାକାର, ଛାଞ୍ଚ ଭିଡ଼ା ଆରମ୍ଭ କଲେ। ମାଁ ଡ଼ାକ ଶୁଣିଲେ। ନିର୍ଗୁଣରୁ ସଗୁଣ ହେଲାପରି, ନିରାକାରରୁ ସାକାର ହେଲାଭଳି, ଅମୂର୍ତ୍ତରୁ ମୂର୍ତ୍ତିମନ୍ତ ହେଲାପରି, ଛାଞ୍ଚ ଭିତରେ ରୂପର ଆବିର୍ଭାବ ହେଲା। ଭବନାଥଙ୍କ ମନ ଭିତରୁ ସନ୍ଦେହର କଳାମେଘ ଯେମିତି ଅପସରିଗଲା। ଦିନକ ଭିତରେ ଛାଞ୍ଚବନ୍ଧା ଶେଷ। ତା ଆରଦିନ ସେଗୁଡ଼ିକ ମେଢ଼ରେ ବନ୍ଧାହେଲା।

ଫୁଟ୍‌ପାଥ୍ ଉପରେ ଦର୍ଶକଙ୍କ ଭିଡ଼ ଜମିଲା। ସୁଇଡେନ୍ ଭ୍ରମଣରେ ଆସିଥିବା ପୃଥିବୀର ବିଭିନ୍ନ ପର୍ଯ୍ୟଟକ ଦଳ ଛାଞ୍ଚକୁ ଦେଖି ଅଟକିଲେ। ଭବନାଥ ପ୍ରଥମେ ପ୍ରଥମେ ଗାଇଡ଼ ଭଳି ସମସ୍ତଙ୍କୁ ବୁଝେଇବାରେ ଲାଗିଲେ ଦୁର୍ଗା, ନଡ଼ା, ଛାଞ୍ଚ, ଛଣ, ଦଉଡ଼ି, ଦାଦା, ପ୍ରଦୀପ ରୋହିତ, ସଂଗ୍ରାମ ସମସ୍ତଙ୍କ କଥା। ତାପରେ ମାପଜୁପ ଅଳତିଆର ଭିତରକୁ ଆସିଗଲାରୁ ମାଟିକାମ ପ୍ରଦୀପ ଓ ସୁଇଡେନ୍‌ର ଜଣେ ସାହାଯ୍ୟକାରୀଙ୍କ ଜିମା ଛାଡ଼ି ଦେଇ କୁଲଟର୍ ହ୍ୟୁସେଟ୍ ଭିତରକୁ ଅନ୍ୟକାମରେ ଚାଲିଗଲେ।

ଏତିକିରେ ବିପଦ ସରିଲା ନାହିଁ। ମା ଦୁର୍ଗା, ଭବନାଥ ଓ ସୁଇଡ଼ିସ୍‌ବାସୀଙ୍କ ଭକ୍ତି ଭାବକୁ ବିଡ଼ିବା ପାଇଁ ବହୁ ପ୍ରକାରର ବିପତ୍ତି ଭିଆଇଲେ। ଫୁଟ୍‌ପାଥ ଉପରେ କାମ ଦୁଇଦିନ ହେଇନି ଆସିଲା ବର୍ଷା। କୋହଲା ପବନ ମହିଷାସୁର ଭଳି ମାଡ଼ି ଆସିଲା। ଶୀତର ମାତ୍ରା ବଢ଼ିଗଲା। ପ୍ରଦୀପ ନାଁ ହେଲେ ବି ସେ ସମ୍ଭାଳି ପାରିଲାନି। ଭାଳେଣି ପଡ଼ିଲା ଯଦି ଏମିତି ଆଉ ଦୁଇ ତିନି

ଦିନ ଚାଲେ ତାହେଲେ ମୂର୍ତ୍ତି ସରିବନି । ଭବନାଥ ମନେ ମନେ ଦୁର୍ଗାଙ୍କୁ ଆରାଧନା କଲେ, "ମୁଁ ତମର ଛାର ସନ୍ତାନ-ଭବନାଥ । ଗଞ୍ଜାମ ଜିଲ୍ଲା ଦିଗପହଣ୍ଡି ଗାଁର ଛାର ଡ୍ରଇଁ ମାଷ୍ଟ୍ରଟିଏ । ଏତେବାଟ ତମ ଦୟାରୁ ଆସିପାରିଚି । ମୋତେ ଲୋକହସା କରନି ମାଁ । ଭୁବନେଶ୍ୱର ଫେରିଗଲେ ଗୌରୀ ମନ୍ଦିରରେ ଡାଲମା ଅନ୍ନ ଭୋଗ ଲଗେଇବି । ମାଁ ଏ ଦେଶରେ ଗୋଡ଼, ହାତ ପାଉନି । କରୁଣାକର କରୁଣାମୟୀ ।" ସତକୁ ସତ ମାଁ ଭବନାଥଙ୍କ ପ୍ରାର୍ଥନା ଶୁଣିଲେ । କଳାପାହାଡ଼ ଭଳି ଘୋଟି ଆସିଥିବା ମେଘ ଉଭେଇଗଲା । ରୋକ୍‌ଠୋକ୍ ଖରା ପଡ଼ିଲା । ଆକାଶ ଫର୍ଚ୍ଚା । ପ୍ରଭୁଙ୍କ ଅପାର ଦୟା । ସମ୍ପୂର୍ଣ୍ଣ ଆବିର୍ଭୂତା ନ ହେଉଣୁ 'ଖରା' ସୁଇଡିସ୍‌ବାସୀଙ୍କ ଆନନ୍ଦ ଦେଖେ କିଏ ! ଲଙ୍ଗଳା ମୁକୁଳା ହେଇ ବୁଲିବାକୁ ଲାଗିଲେ ।

ଖରା ପଡ଼ିବାରୁ ପୁଣି ଦଳ ଦଳ ଦେଖଣାହାରି ଦୁର୍ଗାମେଢ଼ ପାଖରେ ଭିଡ଼ ଜମେଇଲେ । ଏହି ଦଳଙ୍କ ଭିତରେ ଜାପାନୀ, ଇଂରାଜୀ, ଫରାସୀ, ଜର୍ମାନ-ଏମିତି ପ୍ରାୟ ସବୁ ଦେଶର ପର୍ଯ୍ୟଟକ ଦୁର୍ଗାଙ୍କ ଅଭିନବ ରୂପ ଦର୍ଶନରେ ନିଜକୁ ଭାଗ୍ୟବାନ ମଣିଲେ । କିଏ କହିଲା, ରଙ୍ଗ ନ ଦେଇ ଏମିତି ଛାଡ଼ି ଦେବା ଭଲ । ଆଉ କିଏ କହିଲା, ନଡ଼ାର ଛାଞ୍ଚ ଅବସ୍ଥାରେ ରଖିଦେଲେ ବି ଅପୂର୍ବ ଦେଖାଯାଉଛି । ମୁନିକେ ମତ ଗୋଟିଏ ଭଳି ପ୍ରତ୍ୟେକ ପର୍ଯ୍ୟଟକ ନିଜ ମତ ବଖାଣିବାରେ ହେଳା କଲେନି । ଏସବୁ ମତାମତ ପ୍ରତି ଭ୍ରୁକ୍ଷେପ ନ କରି ପ୍ରଦୀପ ତା କାମରେ ଆଗେଇଲା । ଏକ ମାଟିଆ, ଦୋମାଟିଆ ସରି କନା ପକେଇବା ଅବସ୍ଥାରେ ପହଞ୍ଚିବା ପାଇଁ ମାତ୍ର ତିନିଦିନ ସମୟ ଲାଗିଲା । ଏବେ ଦୁର୍ଗାମେଢ଼ ଜମାଣିଆ ଅବସ୍ଥାକୁ ଆସିଲା ।

ଅନେକେ, ଘଟଣା ଠଉରେଇ ନପାରି ଆଲୁକୁ କନ୍ଦମୂଳ

ଚିହ୍ନିଲେ। କାହାର ଦଶହାତ ତ ମୁହଁରେ ତିନି ଆଖି। କାହାର ମୁହଁ ହାତୀ ପରି ତ କାହାର ମଇଁଷି ପରି। କାହାର ଗଳାରେ ସାପ ଆଉ କାହା ହାତରେ କଟା ମୁଣ୍ଡ। ଏଭଳି ଏକ ଅଜବ ମୂର୍ତ୍ତିର ରଚନା ନା ଗ୍ରୀକ୍ ସଭ୍ୟତାରେ ହେଉଥିଲା ନା ଏବର ସାଇଭାଡ଼ର୍ ଡାଲିଙ୍କ କଳ୍ପନାରେ ସମ୍ଭବ ହେଉଥିଲା। ଏଣୁ ଅଙ୍ଗୁରଖିଆ ଗୋରା ସାଇବଙ୍କ ମୁଣ୍ଡ ଚକ୍କର ଖାଇଗଲା। ପ୍ରଦୀପ ସେନାପତିର ସେମାନଙ୍କ କଥା ପ୍ରତି ନିଘା ନ ଥାଏ। ଏବେ ଭବନାଥ ଖଡ଼ି ଦିଆ ଆରମ୍ଭ କରିବାପାଇଁ ଯୋଜନା କଲେ। ପ୍ରଦର୍ଶନୀ ଉଦ୍‌ଘାଟନ ସମୟ ପାଖେଇ ଆସିଲାଣି। ଭବନାଥଙ୍କୁ ତର ସହୁନି। ଖଡ଼ି ଦେଇ ଦିନେ ଦିଦିନ ଅପେକ୍ଷା କରିବା କଥା, ଶୁଖିଲେ ଘସା ମଜା ହେଉଥାନ୍ତା ଯଦିଓ ମାଁ ଖରା ଦୟା କରିଛନ୍ତି, ତା ବୋଲି ଘଣ୍ଟା କଣ୍ଟାକୁ ତ ଭବନାଥଙ୍କ ପାଇଁ ଓଲଟା ଚଲେଇବେ ନାହିଁ। ତେଣୁ ତରବରରେ ଖାଲି ମୁହଁ, ହାତ ପାପୁଲି, ପାଦଗୁଡ଼ିକୁ ବରଡ଼ା ପଥରରେ ଘସି ଚିକ୍କଣ କରିଦେଇ ମୂଳ ରଙ୍ଗ ଦେବାକାମ ଆରମ୍ଭ ହୋଇଗଲା।

ଏବେ କୁଲଟର୍ ହ୍ୟୁସେଟ୍ ସାମନା ଫୁଆରା ପାଖରେ ଅସଲ ଭିଡ଼ ଜମିଲା। ପ୍ରଥମ ରଙ୍ଗ ପଡ଼ିଲା ପରେ ମା ଦୁର୍ଗା, ମହିଷାସୁର, ଗଣେଶ, କାର୍ତ୍ତିକ, ଗଙ୍ଗା, ଯମୁନା ଝଲସି ଉଠିଲେ। ଭବନାଥ ମୁଖ୍ୟ ରାସ୍ତାର ଫୁଟ୍‌ପାଥ ଉପରେ ଠିଆ ହୋଇ ଉକୁଟି ଉଠୁଥିବା ମାଁଙ୍କ ଅପରୂପ ଲାବଣ୍ୟକୁ ଦେଖି ନିଜକୁ ଧନ୍ୟ ମନେକଲେ। ଦାଦା ଆସି ଭବନାଥଙ୍କ ପାଖେ ଠିଆ ହୋଇ, ପ୍ରଦୀପକୁ କହିଲେ, "ପ୍ରଦୀପ ! ରଙ୍ଗ ଗାଢ଼ା କର। କଟକୀ ମୂର୍ତ୍ତି ନୁହେଁ, ପୁରୀର ସାହି ଯାତ୍ରା ମେଢ଼।" ଭବନାଥ ମଧ୍ୟ ମୋଟାମୋଟି ଚାହୁଁଥିଲେ ଦୁର୍ଗା, ଦକ୍ଷିଣୀ ଦୁର୍ଗା ହୁଅନ୍ତୁ। ଗାଢ଼ ରଙ୍ଗ ଦି ପରସ୍ତ ପଡ଼ିବାରୁ

ମାଁ ଝଲସି ଉଠିଲେ । ତାପରେ ଆରମ୍ଭ ହେଲା ରୋହିତଙ୍କ କାମ ।

ବନାରସରୁ କିଣା ହୋଇଥିବା ଗାଢ଼ ନାଲି ରଙ୍ଗର ବୁଟି ଦିଆ ପାଟଶାଢ଼ୀ କୁଞ୍ଚକରି ମାଁ ପିନ୍ଧିଲେ । ଆଚୁ ରଙ୍ଗର ବ୍ଲାଉଜ୍, ତା ଉପରେ ଚୁମ୍‌କି ପିନ୍ଧେଇ ଦିଆଗଲା । ରୋହିତ କ୍ରେପ୍‌ସ ବାଳରେ କୁନ୍ତଳ ସଜାଡ଼ି ଦେଲେ । ଶ୍ରୀକାକୁଲମ୍‌ରୁ ଆଣିଥିବା ଦୁଇଟି ସତେ ବାଳର ପରଚୁଳା ଦୁଇ କାନ୍ଧରେ ଝୁଲେଇ ଦିଆଗଲା । ପ୍ରଦୀପ କଟକରୁ ଆଣିଥିବା ଜରିରେ ତିଆରି ସୁନାଗହଣାରେ ଓ କିରୀଟିରେ ମା ଦୁର୍ଗାଙ୍କୁ ଭରି ଦେଲେ । ଠିକ୍ ଏତିକିବେଳେ ଶିଶି ଓ ମାରଗେରିଏତା ଦୁର୍ଗାଙ୍କ ଦର୍ଶନ ପାଇଁ ଫୁଆରା ପାଖକୁ ଝପଟି ଆସିଲେ । ସୁଇଡ଼ିସ୍ ଶୀତରେ ପାଣି ବରଫ ପାଲଟିଲା ପରି ଦୁହିଁଙ୍କୁ ଦୁହେଁ କାଠ ଭଳି ଠିଆ ହୋଇଗଲେ । ପାଟିରୁ ବଚନ ସ୍ଫୁରିଲା ନାହିଁ ଆଖିର ପଲକ ପଡ଼ିଲା ନାହିଁ ସେମିତି ନିର୍ବାକ୍ ଓ ଅବାକ୍ ହୋଇ ଚାହିଁ ରହିଲେ, ଯେମିତି ହୁଏତ ଅର୍ଜୁନ ନିଜ ସଖା କୃଷ୍ଣଙ୍କର ବିଶ୍ୱ ରୂପ ଦେଖି ହତବାକ୍ ହୋଇଥିବେ । ହାତରୁ ଗାଣ୍ଡିବ ଖସି ଯାଇଥିବ । "ଆମ ଦେଶର ଗହମ ନଡ଼ା ଓ ବାଲ୍‌ଟିକ୍ ସାଗରର ମାଟିରେ ପ୍ରସନ୍ନ ହୋଇଗଲେ ଭବନାଥଙ୍କ ଦୋରଗା" ଶିଶି ହୁଏତ ଏତକ ସଂକ୍ଷେପରେ କହିବାକୁ ଚାହୁଁଥିଲେ । ସନ୍ଧ୍ୟା ସୁଦ୍ଧା ମାଁ ସମ୍ପୂର୍ଣ୍ଣ ଉଭା ହୋଇ ସାରିଥିଲେ । କେବଳ ବାକି ରହିଯାଇଥିଲା ମେଢ଼ ।

ରୋହିତ ସେଦିନ କେଜାଣି ବ୍ରେକ୍‌ଫାଷ୍ଟରେ ଆମ୍‌ଲେଟ୍ ନେଲେନି । ଆଜି ମାଁଙ୍କ ମେଢ଼କାମ ଯେମିତି ହେଲେ ସାରିବାକୁ ହେବ । କାଠଗଡ଼ା ସାହି ପାଖର ରସଦ୍ ମିଆଁ ହାତର ଧୋବ କାଗଜ ଓ ଜରିକାମର "ପରଭା" ଖଞ୍ଜା ଚାଲିଲା । ଯେତିକି ଯେତିକି କାମ ଉପର ଆଡ଼କୁ ସରି ଆସୁଥାଏ ମନେ ହେଉଥାଏ,

ସତେ ଯେମିତି ଭଗବାନ ଭାସ୍କର ନିଜର ରଜତ ଜ୍ୟୋତି ବିସ୍ତାର କରି ସୁଇଡେ଼ନ୍‌ର ସମଗ୍ର ଆକାଶକୁ ତେଜୋଦୀପ୍ତ କରୁଅଛନ୍ତି। କଳା ମେଘ, ଶୀତଳ ବତାସ, ହେମାଳ ପବନ, ଦୁର୍ଦ୍ଦିନ, ଅଘଟନ ସବୁ ଯେମିତି ସୂର୍ଯ୍ୟଙ୍କର ପ୍ରଚଣ୍ଡ ତାପରେ ଉଭେଇ ଯାଉଛି। ଭବନାଥ, ଦାଦା, ରୋହିତ, ପ୍ରଦୀପ, ସଂଗ୍ରାମ ସମସ୍ତେ ପ୍ରାଣେ ପ୍ରାଣେ ଅନୁଭବ କରୁଛନ୍ତି- ତାଙ୍କର ଆଉ କିଛି କରିବାର ନାହିଁ। ସେମାନେ ସମସ୍ତେ ଶିଳ୍ପୀ ହେଲେ ମଧ୍ୟ ସମସ୍ତେ ନିମିତ୍ତ ମାତ୍ର। ସୁଇଡିସ୍‌ବାସୀଙ୍କ ସନ୍ଦେହ, ପୋଲିସ୍‌ର କଠୋରତା, ଶିଶି ଏବଂ କ୍ଲବଟର ହ୍ୟୁସେଟ୍‌ର କ୍ୟୁରେଟର୍ ମାନଙ୍କର ଅବିଶ୍ୱାସ, ପାଗର ଅସହଯୋଗ ସବୁ କୁଆଡେ଼ ନିଶ୍ଚିହ୍ନ ହୋଇଗଲା। ସମସ୍ତଙ୍କ ମୁହଁରେ ଗୋଲାପି ହସ।

ଆଜି ମାଁ ଦୁର୍ଗାଙ୍କ ନେତ୍ରୋତ୍ସବ। ସ୍ଥିର ହେଲା ପୁରୀର ପଣ୍ଡା ରୋହିତ ନେତ୍ର ପ୍ରଦାନ କରିବେ। ରୋହିତଙ୍କ ପୁରୁଣା ଅଭ୍ୟାସ ବାହାରିଲା। ଶିଶିଙ୍କ ଆଡ଼କୁ ଚାହିଁ ଆରମ୍ଭ କରିଦେଲେ ଯାତ୍ରୀ ବେପାର। ଷ୍ଟକ୍‌ହୋମ୍‌ରେ ସଞ୍ଜା, ଧୋତି, ଲଙ୍କାରେ ହରିଶଢ ଭଳି ମନେହେଲା। ଅବଶ୍ୟ ନେତ୍ରୋତ୍ସବ ପାଇଁ ତାଙ୍କର ପ୍ରାପ୍ୟ ସେ ପାଇବା କଥା କିନ୍ତୁ ସଞ୍ଜା ଆସିବ କୁଆଡୁ। ରୋହିତ ଏ ଥଣ୍ଡାରେ ଧୋତି ପିନ୍ଧିପାରିବେ ତ ? ସଞ୍ଜାନେଇ କରିବେ ବା କ'ଣ ? କ'ଣ ଘରଣୀ ଅଛନ୍ତି ଯେ ତାଙ୍କ ହାତକୁ ବଢେ଼ଇଦେବେ। ଶେଷରେ ଭବନାଥ ଓ ଦାଦାଙ୍କ ପରାମର୍ଶରେ ସ୍ଥିର ହେଲା ଯେହେତୁ ଦେବୀଙ୍କ ନେତ୍ରୋତ୍ସବ, ଅଙ୍ଗୁର ଜାତୀୟ କିଛି ସୁରା ସେବନ ପ୍ରତିଜ୍ଞାର ବିନିମୟରେ ରୋହିତ ଚକ୍ଷୁପ୍ରଦାନ କରିବେ। ତାହାହିଁ ହେଲା। ରୋହିତ ସେଦିନ ସନ୍ଧ୍ୟାରେ ସମ୍ପୂର୍ଣ୍ଣ ଶୁଭ୍ର ଦେଖାଯାଉଥିବା କିରୋସିନି ବୋତଲ ମାପରେ ବୋତଲେ ଢକ୍ ଢକ୍ ପିଇଦେଲେ।

ଅନ୍ୟ ସାଙ୍ଗମାନଙ୍କୁ ମନ୍ଦେ ମନ୍ଦେ ଦେଇଥିଲେ ମନ୍ଦ ହୋଇ ନ ଥାନ୍ତା । ଯେହେତୁ ସେ ନିଜେ ଚକ୍ଷୁଦାନ କରିଛନ୍ତି ତେଣୁ ସମଗ୍ର ବୋତଲଟି କେବଳ ତାଙ୍କର ସେବ୍ୟ । ଦାଦା ଏ କଥାଟିକୁ ନାପସନ୍ଦ କଲେ । ସଂଗ୍ରାମ ଦେଖୁଥିଲେ ବୋତଲ ଯେତେ ଯେତେ ଖାଲି ହେଉଛି, ରୋହିତଙ୍କ ପେଟଟି ସେତିକି ସେତିକି ଫୁଲି ଉଠୁଛି । ତାପରେ ଦେଖାଗଲା ରୋହିତଙ୍କ ନିଜ ନେତ୍ର ଦୁଇଟି ମହିଷାସୁରର ନେତ୍ରଭଳି କଷାୟ, ରକ୍ତାଭ ଓ ଶେଷରେ ସମ୍ପୂର୍ଣ୍ଣ ମୁଦି ହୋଇଗଲା । ତା ପରର ଘଟଣା ସମ୍ପୂର୍ଣ୍ଣ ନିଆରା । ରୋହିତ ତାଙ୍କ ଶରୀରରେ ମାଁ ସଞ୍ଚରି ଗଲାଭଳି ଅନୁଭବ କଲେ । ଥରିଲେ, ଥରିଲେ, ଶେଷରେ କୁଲଟର୍ ହ୍ୟୁସେଟ୍ ଗାଡ଼ିରେ ବୁହାହୋଇ ହୋଟେଲ ଗଲେ । ନେତ୍ରୋତ୍ସବର ପର୍ବ ଏଇଠି ସରିଲା ।

ଆଜି ପ୍ରଦର୍ଶନୀ ଉଦ୍‌ଘାଟନର ଦିନ । ସାମ୍ବାଦିକ, ଫୋଟୋଗ୍ରାଫର୍, ଟି.ଭି., ସିନେମାବାଲାଙ୍କ ଭିଡ଼ ଜମିଲା । ଫ୍ଲାସ୍ ବଲ୍‌ବ୍, ଡେ-ଲାଇଟ୍ ବଲ୍‌ବ, ଆଉ କେତେ ପ୍ରକାର କଣ ଆଲୁଅରେ ମାଁ ଦୁର୍ଗା ଖିଲି ଖିଲି ହସି ଉଠିଲେ । ଶ୍ରାବଣ ମେଘରେ ବିଜୁଳି ଖେଳିଲା ଭଳି ମେଘୁଆ, କୁହୁଡ଼ିଆ, କାଲୁଆ ପାଗରେ ମାଁ କରୁଣାମୟୀ କ୍ଷଣେ କ୍ଷଣେ ଉଭାହୋଇ ପୁଣି ହଜି ଯାଉଥିଲେ । ଦୁଷ୍ଟ ମହିଷାସୁର ସାଙ୍ଗରେ ଯୁଦ୍ଧ କଲାବେଳେ କୁଆଡ଼େ ମାୟାବୀ ଅସୁରକୁ ସଂହାର କରିବା ପାଇଁ ମାଁ ଏଭଳି ଥରେ ଥରେ ଲୁଚି ଯାଉଥିଲେ ତ ଥରେ ଥରେ ବିଜୁଳି ଭଳି ପ୍ରତ୍ୟୟ ହେଉଥିଲେ । ଦୁର୍ଗାଙ୍କ ମହିମା ଷ୍ଟକ୍‌ହୋମ୍ ସହରରେ ଖେଳିଗଲା । ଖବରକାଗଜ, ପତ୍ରପତ୍ରିକା, ରେଡ଼ିଓ, ଟେଲିଭିଜନରେ ମାଁଙ୍କ ପ୍ରତିମା ସନ୍ଦର୍ଶନ କରି ସୁଇଡିସ୍‌ବାସୀ ଧନ୍ୟ ହେଲେ । ଏହା ସହିତ ଭବନାଥଙ୍କ ବକ୍ତବ୍ୟ ଓ ମନ୍ତବ୍ୟ ମଧ୍ୟ ପ୍ରଚାରିତ ହେଲା । ତା ପରଦିନ ପିମ୍ପୁଡ଼ି

ଧାର ଭଳି .ଲୋକଙ୍କ ସୁଅ ଛୁଟିଲା କୁଲଟର୍ ହ୍ୟୁସେଟ୍ ଆଡ଼େ। ଭାରତର ସଂସ୍କୃତି, ଐତିହ୍ୟର ପ୍ରତୀକ ଶକ୍ତିରୂପା ଜଗତ୍‌ଧାତ୍ରୀ ମାଙ୍କର ଆବିର୍ଭାବ ସୁଇଡ଼େନ୍‌ର ମଙ୍ଗଳ ପାଇଁ। ସେମାନଙ୍କ ମନରେ ପ୍ରାଣରେ, ହୃଦୟରେ ଭଗବତୀ ଚେତନାର ସଞ୍ଚାର ପାଇଁ। ସେମାନଙ୍କ ଆତ୍ମାର ଶୁଦ୍ଧି ପାଇଁ।

ଭବନାଥଙ୍କ ପରାମର୍ଶରେ ଦୁର୍ଗାଙ୍କର ଆବିର୍ଭାବର ସଫଳତାର କାହାଣୀ ଉପରେ ଆଲୋଚନା କରିବାପାଇଁ କୁଲଟର୍ ହ୍ୟୁସେଟ୍‌ର ନିର୍ଦ୍ଦେଶକ ବୋ ସିଲ୍‌ଭାନ୍, ଶିଶି ନିଲ୍‌ସନ୍, ମାର୍ଗାରିଏତ ଜେଟେର୍‌ଷ୍ଟ୍ରାମ୍ ଏବଂ ଭାରତୀୟ ଶିଳ୍ପୀ ଗୋଷ୍ଠୀର, ଦାଦା, ରୋହିତ, ସଂଗ୍ରାମ, ପ୍ରଦୀପ, ନୃସିଂହ ଓ ଭେଦାଚଳମ୍‌ଙ୍କୁ ନେଇ ସଭା ବସିଲା। ସଭାରେ ସ୍ଥିରହେଲା ଯେ ପ୍ରଦର୍ଶନୀ ଶେଷ ହେବାଦିନ ଏକ ବଡ଼ ପଟୁଆରରେ ଦୁର୍ଗାଙ୍କୁ ନିଆଯାଇ ବାଲ୍‌ଟିକ୍ ସାଗରରେ ବିସର୍ଜନ କରାଯିବ। ଭବନାଥ କଥାରେ ଲଥା ଯୋଡ଼ି କହିଲେ, ପ୍ରଦର୍ଶନୀ ଅକ୍ଟୋବର ମାସରେ ସରିବ। ସେଇଟା ଦଶହରା ମାସ। ଏଣୁ ଭସାଣି ଖୁବ୍ ଯଥାର୍ଥ ହେବ। ତାପରେ ମନେ ପଡ଼ିଲା କଟକରେ ଭସାଣି ବେଳର ଝାମେଲା। ଯେହେତୁ ଦୁର୍ଗାଙ୍କର ଆବିର୍ଭାବରେ ପୁଲିସ୍ ବାଲା ମଧ ଅତ୍ୟନ୍ତ ଖୁସି ତେଣୁ ଟ୍ରାଫିକ୍ ପୁଲିସ୍‌ଙ୍କ ଅନୁମତି ପାଇଁ ଆଉ ବିଶେଷ ଅସୁବିଧା ହେବନି। ଶିଶି ପ୍ରସ୍ତାବ ଦେଲେ, ଦରକାର ହେଲେ ଅଧେ ଦିନ ପାଇଁ ବାଲ୍‌ଟିକ୍ ରାସ୍ତାକୁ ସମ୍ପୂର୍ଣ୍ଣ ଭାବେ ଅବରୋଧ କରାଯିବ। ଭସାଣି ପଟୁଆର କୁଲଟର୍ ହ୍ୟୁସେଟ୍‌ରୁ ପୂର୍ବମୁହାଁ ହୋଇ ବାହାରି ରାଜା ବଗିଚା, ରାଣୀ ବଗିଚା, ପୁରୁଣା ବନ୍ଦର ରାସ୍ତା କଡ଼ ଦେଇ ଭସାଣି ଘାଟକୁ ନିଆଯିବ। ସଂଗ୍ରାମ ତାଙ୍କ ପିଲାକିଆ ଢଙ୍ଗରେ କହିଲେ, ଡଙ୍ଗାରେ ସମୁଦ୍ର ଭିତରକୁ କିଛିବାଟ ନେଇ ବିସର୍ଜନ କଲେ ଜମିଯିବ। ସମସ୍ତେ ତା କଥାରେ

ହଁ ଭରିଲେ ।

ପ୍ରଦର୍ଶନୀ ଉଦ୍‌ଘାଟିତ ହେବାର ସପ୍ତାହେ ପରେ ଭବନାଥ ଭୁବନେଶ୍ୱର ଫେରି ଆସିଲେ । ମାଁଙ୍କ ଦୟାରୁ ପ୍ରଦର୍ଶନୀ ଚାଲୁ ରହିଲା । ଦୁର୍ଗାଙ୍କ ଦର୍ଶନ କରିବା ପାଇଁ ହଜାର ହଜାର ଦର୍ଶକଙ୍କ ଭିଡ଼ ଓ କୋଳାହଳରେ ପ୍ରଦର୍ଶନୀ ମୁଖରିତ ହୋଇ ଉଠିଲା । ତିନିମାସ ପରେ ପ୍ରଦର୍ଶନୀ ଫେରେଇ ଆଣିବା ପାଇଁ ଭବନାଥ ପୁଣି ଷ୍ଟକ୍‌ହୋମ୍ ଫେରିଲେ । ବାଟଯାକ ଭସାଣି କଥା ଭାବୁଥାନ୍ତି ସାଙ୍ଗରେ ତ ଦାଦା, ରୋହିତ, ସଂଗ୍ରାମ ନ ଥିବେ, ଭସାଣି ହେବ କିମିତି ? ଷ୍ଟକ୍‌ହୋମ୍‌ରେ ପହଞ୍ଚି ଯାହା ଦେଖିଲେ ସେଥିରେ ତାଙ୍କ ପାକୁଆସି ଉଡ଼ିଗଲା । ବିସର୍ଜନ କରିବେ କ'ଣ ? ମାଁ ଦୁର୍ଗା ଆଉ ନାହାନ୍ତି । ଉଭାନ୍ ହୋଇଯାଇଛନ୍ତି । ଖାଲି ସେମିତି ଫୁଟ୍‌ପାଥ ଉପରେ ଠିଆ ହୋଇଛି ମେଢ଼ର କାଠ ଛାଞ୍ଚଟା । ଭବନାଥ ସମ୍ପୂର୍ଣ୍ଣ ହତବାକ୍ । ମାଁ କାହା ଉପରେ ରୁଷ୍ଟ ହୋଇ ଅନ୍ତର୍ଦ୍ଧାନ ହୋଇଯାଇଛନ୍ତି । ମାଁ ଥରେ ହେଲେ ଦେଖାଦିଅ । ପ୍ରଦର୍ଶନୀ ଉଦ୍‌ଯାପନ ଶୁଭାରମ୍ଭ ହେଉ । ମାଁ ଦୁର୍ଗା ଅଛନ୍ତି ଯେ କରୁଣା ବର୍ଷିବେ । ହାୟ ! ହାୟରେ କଳଙ୍କିତ ଦେଶ । ତମେ କ'ଣ ନକଲ । କି ଉତ୍ସବ ତମେ ପାଳିଲ ।

ଘଟଣାଟି ହେଲା ଏପରି । ମାଁ ଦୁର୍ଗାଙ୍କ ଲାବଣ୍ୟ ରୂପରେ ମୁଗ୍ଧ ହୋଇ ସୁଇଡିସ୍‌ବାସୀ ମାଁଙ୍କୁ ଘରେ ଘରେ ଆବାହନ କରିବାପାଇଁ ମନସ୍ଥ କଲେ । ସେମାନଙ୍କୁ ଭସାଣି କଥାଟି ବୋଧହୁଏ ପସନ୍ଦ ହେଲାନି । ସେମାନେ ନିଶ୍ଚୟ ଭାବି ବସିଲେ ମୂର୍ତ୍ତିଟିକୁ ମ୍ୟୁଜିୟମ୍‌କୁ ବିକିଦେଲେ ଲକ୍ଷେ ଦି ଲକ୍ଷ ଡଲାର୍ ମିଳିଯିବ । ସମୁଦ୍ରରେ ବୁଡ଼େଇ ଦେଇ ବା କି ଲାଭ ହେବ । ଏଣୁ ପ୍ରଦର୍ଶନୀର ଡିଜାଇନର ଭବନାଥ ସ୍ୱିଡେନ୍ ଫେରିବା ପୂର୍ବରୁ ଯାହା କିଛି

ନିଷ୍ପତ୍ତି ନେଇଯିବା ଶ୍ରେୟସ୍କର। ତାପରେ ଆରମ୍ଭ ହେଲା ମାଁ ଦୁର୍ଗାଙ୍କ ଉପରେ ଅତ୍ୟାଚାର-କାଣ୍ଡଙ୍କ ମେରିଆ ବଳିରେ ଯେମିତି ହୁଏ। ନିଶାର୍ଦ୍ଧରେ ଯିଏ ପାରିଲା ସିଏ ହୁଏତ ପୁଲିସ୍ ବାଲାଙ୍କ ସହିତ ସଲା ସୁତୁରା କରି ମାଁ ଦୁର୍ଗାଙ୍କର ଶାଢ଼ୀ, ବ୍ଲାଉଜ୍, ଗହଣାଗାଣ୍ଠି, ମୁକୁଟ, ପରଚୁଳା, ମହିଷାସୁରର ଖଣ୍ଡା, ମୟୂରର ପିଛ, ସରସ୍ୱତୀଙ୍କ ବୀଣା, ଶେଷରେ ମୂର୍ତ୍ତିମାନଙ୍କର ମୁଣ୍ଡ, ହାତ, ଗୋଡ଼, ଗଣ୍ଡି, ମେଢ଼ର ଜରି-ସବୁ "ସ୍ମାରକୀ" ହିସାବରେ ନେଇଗଲେ। ରାତି ପରେ ରାତି ଏହି ପ୍ରକ୍ରିୟା ଚାଲିବା ପରେ ମାଁ ନିଶ୍ଚିହ୍ନ ହୋଇଗଲେ। କୁଟା ଖଣ୍ଡିକର ବି ପତ୍ତା ରହିଲାନାହିଁ। ବୋଧହୁଏ ମାଁ ଚାହିଁ ନ ଥିଲେ ଏକଥା ସମ୍ଭବ ହୋଇ ନ ଥାନ୍ତା। ମାଁ ଦୁର୍ଗା ବୋଧହୁଏ ମନସ୍ଥ କଲେ ସେ ସୁଇଡିସ୍‌ବାସୀଙ୍କ ଘରେ ଘରେ, ମନରେ, ପ୍ରାଣରେ ପୂଜା ପାଇବେ ଏଣୁ "ଭକ୍ତର ଭଗବାନ ଭଳି" ସେ ପୁଣି ଅରୂପା ହୋଇଗଲେ ଭକ୍ତଙ୍କ ପାଇଁ। ଭକ୍ତଙ୍କ ପାଇଁ ବହୁବିଧା ହେଲେ, ବହୁଧା ହେଲେ। ଶତ ସହସ୍ର ଦୁର୍ଗା ରୂପରେ ଆର୍ବିଭୂତା ହେଲେ ସୁଇଡିସ୍‌ବାସୀଙ୍କ ପ୍ରତି ଘରେ ଘରେ ଓ ଶେଷରେ ଦେଖେଇଦେଲେ ଭାରତୀୟ ପରମ୍ପରାରେ ତ୍ୟାଗର ମହତ୍ତ୍ୱ କେତେ। ଦୈବୀ ଶକ୍ତିର ପରାକାଷ୍ଠା କେତେ।

ଭବନାଥ, ଶେଷ ସୁଦ୍ଧା ବୁଝି ପାରିଲେନି ଏ ଚଣ୍ଡାଳମାନେ ମାଁ ଦୁର୍ଗାଙ୍କୁ ସର୍ବଂସହା ଜନନୀ ବୋଲି ଗ୍ରହଣ କଲେ ତ ?

# ଅସରପା ଉପାଖ୍ୟାନ

ଅସରପାର କାନ ଅଛି। ଏକଥା କହିଲା ପରେ ଭବନାଥ ନିଜକୁ ନିଜେ ବିଦ୍ରୂପ କଲା ପରି ହସିଲେ। ଅସଲରେ ଭବନାଥ କହିବାକୁ ଚାହୁଁଥିଲେ ଯେ ଅସରପା ମଣିଷଙ୍କ ଭଳି ଶୁଣିପାରେ ଓ ମଣିଷ ମାନଙ୍କ କଥା ବୁଝିପାରେ। ପୃଥିବୀର ଯେଉଁ ଯେଉଁ ଦେଶ ମାନଙ୍କରେ ଅସରପା ମାନେ ବାସ କରୁଛନ୍ତି, ସେମାନେ ସେଠାକାର ପାଣି ପବନରେ ବଢ଼ି ସେହି ଦେଶର ସଂସ୍କୃତି ଓ ସାହିତ୍ୟ ସହିତ ଓତଃପ୍ରୋତ ଭାବେ ଜଡ଼ିତ ହୋଇଯିବା ଫଳରେ ସେଠାକାର ଭାଷା ବୁଝିବାରେ ସେମାନଙ୍କ ଅସୁବିଧା ରହେନି। ଏଣୁ ଆନ୍ଧ୍ରର ଲୋକେ ତେଲୁଗୁ ବୁଝିପାରୁଥିବା ଭଳି ଓଡ଼ିଶାର ଅସରପା ଓଡ଼ିଆ ବୁଝି ପାରନ୍ତି ବା ନିଉୟର୍କର ଅସରପା ଇଂରାଜୀ ବୁଝନ୍ତି। ସର୍ବଶେଷରେ ଏହାହିଁ କହିବା ଥିଲା ଭବନାଥଙ୍କ ଉଦ୍ଦେଶ୍ୟ। ଅସରପା ମାନଙ୍କ ଉପରେ ବିଶେଷ ଗବେଷଣା ହୋଇ ନ ଥିବାରୁ ସେମାନଙ୍କ ସଂପର୍କରେ ଶେଷ କଥା କହିବା ମୁସ୍କିଲ। ଲୋକଙ୍କ ମୁହଁରୁ ଶୁଣିବାକୁ ମିଳେ କୁଆଡ଼େ ଭୁବନେଶ୍ୱର କୃଷି ବୈଷୟିକ ବିଜ୍ଞାନ ମହାବିଦ୍ୟାଳୟର ଜନୈକ ପ୍ରଫେସର ଗେଣ୍ଡାମାନଙ୍କ ସଂପର୍କରେ ଅଧିକ ତଥ୍ୟ ଜାଣିବା ପାଇଁ ଗବେଷଣାରେ ଅତ୍ୟଧିକ ନିମଗ୍ନ ରହିବା ଫଳରେ ଗେଣ୍ଡାଗୁଡ଼ିକ ଅତ୍ୟନ୍ତ ହୃଷ୍ଟପୁଷ୍ଟ ହେବାରୁ ସେମାନଙ୍କ ପ୍ରଜନନ ଶକ୍ତି ଦ୍ୱିଗୁଣିତ ହେଲା। ଏହାର ଫଳ ସ୍ୱରୂପ

ବର୍ତ୍ତମାନ ଭୁବନେଶ୍ୱରରେ କୃଷିବିଜ୍ଞାନ ହତା ଅତିକ୍ରମ କରି ଏହି ବର୍ଣ୍ଣଶଙ୍କର ଗେଣ୍ଡା ଗୁଡ଼ିକ ପ୍ରାୟତଃ ସବୁ ୟୁନିଟ୍‌ରେ ପରିବ୍ୟାପ୍ତ। ଏଗୁଡ଼ିକୁ ଜାପାନ ରପ୍ତାନି କରିବା ହେଉଛି ଗବେଷଣାର ପ୍ରାଥମିକ ଲକ୍ଷ୍ୟ।

ପାରଂପରିକ ଜ୍ଞାନର ପରିସୀମା ଭିତରେ ଯେତିକିଟା ସମ୍ଭବ ସେଥିରେ ଭବନାଥ ବୁଝନ୍ତି - ଅସରପା ଘରର ଲକ୍ଷ୍ମୀ। ସେମାନଙ୍କୁ କୀଟନାଶକ ଦ୍ରବ୍ୟ ସ୍ପ୍ରେକରି ହତ୍ୟା କରିବା କେବଳ ପାପ ନୁହେଁ, ବିପଦକୁ ଆଦରିବା। ଏଭଳି ଏକ ଅସଂଗତ ବା ଅଣବୈଜ୍ଞାନିକ ଚିନ୍ତାଧାରାର ବଶବର୍ତ୍ତୀ ହେବା ମୂଳରେ ଭବନାଥଙ୍କ ସ୍ତ୍ରୀ ଅବନ୍ତୀ ଥିଲନ୍ତି। ଏଣୁ ଅସରପା ଗୁଡ଼ିକ ଭବନାଥଙ୍କ ସରକାରୀ ବାସଭବନରେ କିଚେନ୍ ଠାରୁ ଆରମ୍ଭ କରି ଲେଟ୍ରିନ ପର୍ଯ୍ୟନ୍ତ ଉପନିବେଶ ସ୍ଥାପନ କରି ମଣିଷ ସହିତ ସହାବସ୍ଥାନ ନୀତିରେ ବହୁବର୍ଷଧରି ରହି ଆସିଛନ୍ତି। ସରକାରୀ ଆଦେଶ ବଳରେ ଭବନାଥ ଯେଉଁଦିନ ଏହି ସରକାରୀ ବାସ ଭବନରେ ପ୍ରବେଶ କଲେ ତାର ବହୁଆଗରୁ ଅସରପା ମାନଙ୍କ କର୍ତ୍ତୃତ୍ୱରେ ଏହିଘର ଥିଲା, ଏହା କହିଲେ ଅତ୍ୟୁକ୍ତି ହେବନାହିଁ। ଏତେ ଦିନ ଏକା ସାଙ୍ଗରେ ରହିବା ଫଳରେ ସଂସର୍ଗ ଦୋଷ ହେତୁ ସେମାନଙ୍କ ପ୍ରତି ଭବନାଥଙ୍କର ଏକରକମ ମୋହ ଜାତ ହୋଇଯାଇଛି। ଏଣୁ ଭବନାଥ ଅନେକଥର ସେମାନଙ୍କୁ ସବଂଶେ ହତ୍ୟାକରିବାର ସଂକଳ୍ପ ନେଇଥିଲେ ମଧ୍ୟ ପର ମୁହୂର୍ତ୍ତରେ କିମିତି କେଜାଣି ଅର୍ଜୁନଙ୍କ ଭଳି ମୋହଗ୍ରସ୍ତ ହେଇ ସେମାନଙ୍କ ଉପରେ ଅସ୍ତ୍ରଚାଳନା କରିନାହାନ୍ତି। ଅସରପାଙ୍କ ଭାଗ୍ୟ କହିବାକୁ ହେବ। ଭବନାଥଙ୍କ ସଙ୍ଗେ ରହିବା ଫଳରେ ସେମାନଙ୍କ ନାନ୍ଦନିକ ଜ୍ଞାନ ବଢ଼ିଗଲାଣି। ଆଗରୁ ସେମାନେ ଯତ୍ର ତତ୍ର କାଛମାନଙ୍କରେ, ପେଡ଼ି ପେଟରା ତଳେ, ଅଧା ଢ଼ଙ୍କା ଅମୂଲ ଡ଼ବା ଭିତରେ ବା ଚାଉଳ ବସ୍ତା ତଳେ ଆତ୍ମଗୋପନ କରୁଥିଲେ ଓ ଭବନାଥ

ଘରକୁ ପଶିବା ମାତ୍ରେ ଅଦୃଶ୍ୟ ହୋଇ ଯାଉଥିଲେ। ଏବେ କିନ୍ତୁ ସେମାନେ ପୁଷ୍ପ, ଲତା, ଏପରିକି କ୍ୟୁବିଜିମ୍, ସରରିଏଲିଜିମ୍ ଷ୍ଟାଇଲରେ କାନ୍ଥ ଉପରେ ନିଜର କାୟା ବିସ୍ତାର କରି ରହୁଛନ୍ତି, ଏବଂ ଏ ସବୁ ଅସରପା କାରୁଶିଳ୍ପ ଦେଖିଲା ପରେ ଭବନାଥ ଆପାତତଃ ଅସରପାଙ୍କ ଅସ୍ତିତ୍ୱ ଭୁଲିଯାଇ ପିକାସୋ, ଡ଼ାଲି ବା ଗୋକୁଳି ପଟ୍ଟନାୟକଙ୍କ କଥା ମନେ ପକାଇ ଭାବପ୍ରବଣ ହୋଇ ଉଠୁଛନ୍ତି। ମନେମନେ ଅସରପାଙ୍କ ପ୍ରଶଂସା କଥା ସ୍ମରଣ କରି ପୁଲକି ଉଠୁଛନ୍ତି। ଏମିତି ଏକ ଅବସ୍ଥାରେ କାଚ କାଞ୍ଚନ ପାଲଟି ଯାଇଥିଲା। ପୋକ ଫୁଲ ସାଙ୍ଗରେ ଶିବଙ୍କ ମୁଣ୍ଡ ଉପରକୁ ଚଢ଼ିଥିଲା। ମନ୍ତ୍ରୀଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ବିଭାଗୀୟ ସଚିବଙ୍କୁ ଦଶଥର ବସ ଉଠ କରିଥିଲା। ଭବନାଥଙ୍କ ସଙ୍ଗେ ମିଶି ଅସରପା ଗୁଡ଼ିକ ଏକରକମ ଶିଳ୍ପୀ ପାଲଟି ଗଲେଣି। ଏମାନେ ଭବନାଥଙ୍କ କଥା ବୁଝୁନଥିଲେ ଏତେଶୀଘ୍ର ଏମାନଙ୍କ ଜ୍ଞାନୋଦୟ କିମିତି ହୋଇଥାଆନ୍ତା ?

ସୁଇଡ଼େନ୍‌ରେ ଭାରତ ଉତ୍ସବ କାମରେ ବ୍ୟସ୍ତରହି ଭବନାଥ କିଛିଦିନ ହେଲା ଘରକୁ ଫେରିଲା ବେଳକୁ ଅନେକ ଡ଼େରି। ଭବନାଥଙ୍କୁ ବହୁତ ବେଳ ଅପେକ୍ଷା କଲାପରେ ଭବନାଥଙ୍କ ପୁତ୍ରକନ୍ୟା ଓ ସ୍ତ୍ରୀ ମଧ୍ୟ କ୍ଳାନ୍ତ ହେଇ ଶୋଇ ଯାଉଛନ୍ତି। ଅବେଳରେ ଭବନାଥଙ୍କ ଆସିବା ବାଟକୁ ଚାତକ ପରି ଅସରପା ଗଣ୍ଡିକ ଅନେଇ ରହିଥାନ୍ତି। କବାଟ ଖଟ୍‌କରି ଶବ୍ଦହେଲେ ଓ ଲାଇଟ ସୁଇଚ୍ ଉପରକୁ ହାତ ଯାଉ ନ ଯାଉଣୁ ନିଜକୁ ସଂଯତ କରି ଅସରପା ମାନେ ଭବନାଥଙ୍କୁ ଅନେଇ ରହନ୍ତି। ଅବନ୍ତୀଙ୍କୁ ଭାତ ତରକାରୀ ଗରମ କରିବା ପାଇଁ ଡର ରହେନି। ଚଟାପଟ୍ ଥାଳିରେ ଯାହାଦିଟା ବାଢ଼ିଦେଇ ନିଜକୁ ଭବନାଥଙ୍କ ମା ଭୂମିକାରେ ସାମିଲ କରି ଉପଦେଶ ଦେବା ଆରମ୍ଭ କରିଦିଅନ୍ତି। ଭବନାଥ ଏଣେ ଭାରତ ଉତ୍ସବରେ

ପାଗଳ। ତାଙ୍କର ଉପଦେଶ ଶୁଣିବାକୁ ଧୈର୍ଯ୍ୟ ନଥାଏ। ଓଲଟି ଭବନାଥ ଆରମ୍ଭ କରିଦିଅନ୍ତି ଭାରତ ଉତ୍ସବ ଉପରେ ଭାଷଣ। କିମିତି ଏକାଡେମୀର ତିନିବର୍ଷ ପାଇଁ ନିର୍ବାଚିତ ସଭାପତି ତାଙ୍କର କୋଡ଼ିଏ ଦଫା ସର୍ତ୍ତ ବଳରେ ଭବନାଥଙ୍କ ହକ ପ୍ରାପ୍ୟ ନଦେଇ ହଇରାଣ ହରକତ କରିବା ପାଇଁ ମସୁଧା କରୁଛନ୍ତି। କିମିତି ଶୁଣ୍ଢି ସାଙ୍ଗରେ ମାତାଲ ଭଳି ସରକାରଙ୍କ ଠାରୁ ଫି ବର୍ଷ ନିଯୁକ୍ତି ପାଉଥିବା ସଂପାଦକ, ସଭାପତିଙ୍କ ସମସ୍ତ ଅଯୁକ୍ତିକୁ ଯୁକ୍ତିଯୁକ୍ତ କରି ତାଙ୍କୁ ଆହୁରି ଉସୁକାଉଛନ୍ତି। ଓଡ଼ିଆ ତ, ଆଉ ଜଣେ ଓଡ଼ିଆକୁ ଉପରକୁ ଉଠିବାକୁ ଦେବ? ସଭାପତି, ସଂପାଦକ ଲାଗି ପଡ଼ିଛନ୍ତି ଭବନାଥଙ୍କ ଯୋଜନାକୁ ଭଣ୍ଡୁର କରିଦେବା ପାଇଁ। ବାହାରେ ରହି ଦଳେ ବାଦୁଡ଼ି ତାମସା ଦେଖିବାରେ ବ୍ୟସ୍ତ। ନଖକୁ ନଖ ଘସି ସୁରତା ଦେଖୁଛନ୍ତି। ବେଳ ପଡ଼ିଲେ କହୁଛନ୍ତି- ଭବନାଥ ଶଳାଟା ବଦ୍‌ମାସ୍। (ଭବନାଥଙ୍କ ଭଉଣୀ ବୋଲି ମୋଟେ କେହି ନାହାନ୍ତି। ଏଣୁ ଶଳା କହିଲେ କେତେ, ନ କହିଲେ କେତେ।) ଯିମିତି ଏ ଦେଶରେ ଆଉ ଲୋକ ନାହାନ୍ତି। ଏଟାକୁ କାହିଁକି ବାଛିଛନ୍ତି। କଳାକୁ ନେଇ ଜୀବନ ସାରା ବେପାର କଲା, ଆଉ ଏବେ ଦେଖେଇ ହେଉଛି କଳାକାର। ଭବନାଥ ଭାରତ ଉତ୍ସବ ଗୋଳକଧନ୍ଦାରେ ପଡ଼ିଛନ୍ତି। ଅନେକ ଦିନ ଦିଲ୍ଲୀରେ ରହି ଏକରକମ ଅଣଓଡ଼ିଆ ହୋଇଯାଇଥିବା ଜଣେ ଓଡ଼ିଆ ଚିତ୍ରକର କହିଲେ,'' ଭବନାଥ ଭଳି ଜଣେ କଳାର ଭିକାରିକୁ ଭାରତ ସରକାର ଭାରତ ଉତ୍ସବ ଭଳି ଏତେବଡ଼ ଗୁରୁ ଦାୟିତ୍ୱ ଲଦିଦେଲେ। ଗାଡ଼ିନାହିଁ ଟେଲିଫୋନ୍ ନାହିଁ ଟାଉନ ସ୍କୁଲର ଗୋଟିଏ ହେଡ୍ ମାଷ୍ଟରକୁ ଭାରତ ଉତ୍ସବର ମାଲିକ ବନେଇ ଦେଲେ।'' ଦଳେ ଅଜବ ଟୋକା ଭାବିଲେ, ଦେଖିବାକୁ ବାକି ରହିଲା ତାମସା ଚାଲିବ କେମିତି। ଭବନାଥ ଏବେ ଅଧିକାଂଶ ଦିନ ଗୋଟିଏ ଗରମ

ମୁଣ୍ଡ ଓ ଅବଶ ଦେହ ନେଇ ଘରକୁ ଫେରୁଛନ୍ତି। କ'ଣ ନା ଭାରତ ଉତ୍ସବ।

ଭାରତ ଉତ୍ସବ କଥା ଦି ପାଞ୍ଚବର୍ଷ ହେଲା ବେଶ ଚର୍ଚ୍ଚାର ବିଷୟ ହେଇଚି। କିଏ କହୁଚି, ରାମା, ଦାମା, ଶ୍ୟାମା ସବୁ ଲଣ୍ଡନ ଆମେରିକା ବୁଲି ଆସିଲେଣି, ଭାରତ ଉତ୍ସବ ନାଁରେ। ଭୁବନେଶ୍ୱର ମ୍ୟୁଜିୟମ୍‌ରେ ଚର୍ଚ୍ଚା ହେଉଛି ନ୍ୟାସନାଲ୍ ମ୍ୟୁଜିୟମ୍‌ର ପିଅନ, ଚପରାସି ଅଧ ଡଜନ ଥର ନ୍ୟୁୟର୍କ, ପ୍ୟାରିସ୍ ଘୁରିଆସିଲେଣି ଆଉ ଉପର ବାଲାଙ୍କ କଥା ଛାଡ଼। କଥାଟା ପୂରା ସତ ନୁହେଁକି ପୂରା ମିଛ ନୁହେଁ। ଭୁବନେଶ୍ୱରରୁ ହାତରେ ବଇଁଶୀ ଖଣ୍ଡେ ଧରି ବା ଭଙ୍ଗା ସୀତାରଟିଏ ଧରି ଲୋକେ ବହୁବାର ପୃଥିବୀ ପରିକ୍ରମା କଲେଣି। ଏବେ ସିନା ଫେଷ୍ଟିଭାଲ୍ ହେଲା, ନହେଲେ ନାଚବାଲାଙ୍କ ପାଇଁ ସାତ ଖୁଣ ମାଫ୍। କେଉଁ ଆବହମାନ କାଳରୁ ସେମାନେ ଉଡ଼ାଜାହାଜରେ ଯା ଆସ କରୁଛନ୍ତି। ଲଣ୍ଡନ, ଆମେରିକା ଯେମିତି ସେମାନଙ୍କ ବାଡ଼ିତଳେ। ଭବନାଥଙ୍କ ଭାରତ ଉତ୍ସବ ଚର୍ଚ୍ଚାବେଳେ ଆପେ ଆପେ ଏସବୁ ପ୍ରସଙ୍ଗ ଆଲୋଚନା ଭିତରକୁ ବାହାରି ଆସେ। ଏକଥା ବାହାରିବାର ପ୍ରଧାନ କାରଣ ହେଲା ଭବନାଥ ଏବେ ଦଳେ କାରିଗରଙ୍କୁ ନେଇ ସୁଇଡେନ୍ ଯିବେ। କାରିଗରମାନେ ନା ଶିବେଇ ସାମନ୍ତରା ନା ପାବ୍ଲୋ ପିକାସୋ। ଏଇ ଧର ରବୀନ୍ଦ୍ର ମଣ୍ଡପରେ ଦାଦାଙ୍କ କଂପାନୀରେ ସେଟ୍ ବାଡ଼ଉଥିବା ଲୋକ ବା ରୋହିତ ବଟୁ ସାଙ୍ଗରେ ବ୍ୟାନର ଲେଖୁଥିବା ଅନାମଧେୟ ପେଣ୍ଟର୍। ଭବନାଥଙ୍କ ପ୍ରଦର୍ଶନୀ ପାଇଁ କୁଆଡ଼େ ଏଇଭଳି ହିଁ କାରିଗର ଦରକାର। କଟକ କାଠଗଡ଼ା ସାହିର ନଡ଼ା ବାନ୍ଧି ଦୁର୍ଗାମୂର୍ତ୍ତି ଗଢ଼ିଲା ବାଲାରୁ ଦି ଜଣ। କାନ୍ଥରେ ସିନେମା ପୋଷ୍ଟର ଆଙ୍କିଲା ବାଲାରୁ ଜଣେ ଅଧେ। ଆଉ ରହିଲେ ବଢ଼େଇ, ମିସ୍ତ୍ରୀ, କମାର ଓ ଏଜାତୀୟ କିଛି ଜୀବ। ଏକଥା ଗୁଡ଼ାକ ଯିଏ ଶୁଣୁଛି କାନରେ

ହାତ ଦେଇ ଦେଉଛି। ରାମ! ରାମ! ସଂସାର କେଉଁଠିକି ଗଲାଣି ଏମ୍.ଏ. ପାଠୁଆ, ପି.ଏଚ.ଡ଼ି କଲାବାଲା, କବି, ସାହିତ୍ୟିକ, ଏକାଡ଼େମୀ ପୁରସ୍କାର ପାଇଲାବାଲା କଳାକାର କୁଆଡ଼େ ଗଲେ, ଭବନାଥ ଏଥିରୁ ଗଣ୍ଡେ ଲୋକନେଇ ସୁଇଡ଼େନ୍‌ରେ ଭାରତ ଉତ୍ସବ କରିବ। ହଁ ଆଉ ନୁହେଁ ତ କ'ଣ। ଭବନାଥ ଯେମିତି ଢ଼ହରା ଢ଼ମ୍ପା, ସେମିତି ଥୋକେ ଲୋକ ଯୋଗାଡ଼ କରିଛି।

ଭବନାଥଙ୍କ ସରକାରୀ ବାସଭବନର ଅସରପା ଦଳଙ୍କ କଥାକୁ ସମାଲୋଚନା କହିଲେ ଠିକ୍ ହେବନି। ସେମାନଙ୍କ ଅଭିମାନ ଭରା ଦାବିପତ୍ର ଏଭିତରେ ଠିକ୍ କରି ନେଲେଣି। ସେମାନେ ଭବନାଥଙ୍କୁ ରୋକ୍ ଠୋକ୍ କହିବା ପାଇଁ ଚାହାନ୍ତି ଯେ ସେମାନେ ମଧ୍ୟ ଓଡ଼ିଶୀ ସଂସ୍କୃତି ତଥା ଭାରତୀୟ ସଂସ୍କୃତିର ପ୍ରଚାର ପ୍ରସାର ପାଇଁ ଭବନାଥଙ୍କ ସହିତ ସୁଇଡ଼େନ ଯିବା ପାଇଁ ଚାହାନ୍ତି। ସେମାନଙ୍କ ଯୁକ୍ତି ହେଲା- ଯଦି ବଢ଼େଇ, କମାର ଓ ସାଇନ୍‌ବୋର୍ଡ଼ ଚିତ୍ରକର ମାନେ ଦେଶର ସଂସ୍କୃତିର ବାର୍ତ୍ତାବହ ହୋଇ ପାରିଲେଣି, ତାହେଲେ ଯେଉଁ ଅସରପା ମାନେ ଦୀର୍ଘ ଦୁଇ ଦଶନ୍ଧି ଧରି ଭବନାଥଙ୍କ ଭଳି ଜଣେ ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ଚିତ୍ରକରଙ୍କ ସହିତ ରହି ଆସିଲେଣି ଓ ତାଙ୍କର ସୁଖରେ ଦୁଃଖରେ ସାଥି ହୋଇ ଘରେ ପଡ଼ି ରହିଛନ୍ତି, ଏଭଳି ଏକ ସୁଯୋଗରେ ସେମାନଙ୍କ କଥା ବିଚାର ନହେଲେ ସେମାନେ ଦୁଃଖ କରିବେ। ଶେଷରେ ହୁଏତ ଏହି ଘର ଛାଡ଼ି ଚାଲିଯିବାକୁ ବାଧ୍ୟହେବେ। ସେମାନେ ହୁଏତ ଏଭଳି ଏକ ଚରମ ପନ୍ଥା ଗ୍ରହଣ ନ କରିପାରନ୍ତି କିନ୍ତୁ ଲୋକେ କ'ଣ କହିବେ। ତମ ଜୀବନରେ ହେଲା କ'ଣ? ଭବନାଥ ପିଛା ଗୋଡ଼ାଉ ଥିଲ। ତାର ପ୍ରଶଂସାରେ ଶତଜିହ୍ୱ ହେଉଥିଲ। ଭବନାଥ ତମ ପାଇଁ କଲେ କ'ଣ? ଯଦି ରବୀନ୍ଦ୍ରମଣ୍ଡପ ପାଖର ଗଦାଭାଇର ପାନ ଦୋକାନ, ପୁରୁଣା ଭୁବନେଶ୍ୱରର ଟାଉନ

କ୍ଲବ ପାଖର କୁନା ଭାଇନାଙ୍କ ଚା ଦୋକାନ ଦେଶର ସଂସ୍କୃତିର ପ୍ରତୀକ ଭାବେ ଏୟାର ଇଣ୍ଡିଆ ବିମାନରେ ବସିବାର ସୁଯୋଗ ପାଇ ପାରିଲେ, ତା' ହେଲେ, ଜଣେ ବିଶିଷ୍ଟ ଶିଳ୍ପୀଙ୍କର ସହବାସୀ ଭାବେ ଆମର କ'ଣ ଏତିକି ଅଧିକାର ନାହିଁ?

ଅସରପାମାନେ ଭବନାଥଙ୍କୁ ଖୋଲାଖୋଲି କିଛି କହିବା ଆଗରୁ ଭବନାଥ ଅସରପାମାନଙ୍କୁ ଦେଖିଲେ କିମିତି କେଜାଣି ତାଙ୍କ ମନକୁ ଗ୍ଲାନି ଛୁଇଁ। ଆହା ମୋର ବଂଧୁ ନିତ୍ୟ ସହଚର, ମୁଁ କ'ଣ ତମ ପାଇଁ ଜୀବନରେ କିଛି କରିପାରିବିନି? ଭାରତ ଉତ୍ସବ ପରଠାରୁ ଭବନାଥଙ୍କ ଉପରେ ଚାପ ବେଶି, ଭବନାଥ ଜଣେ ସାମାଜିକ ଜୀବ ବୋଲି ସମାଜର ବିଭିନ୍ନ ଦିଗରୁ ତାଙ୍କ ପାଖକୁ ଅହେତୁକ ଅନୁରୋଧ ଆସୁଛି। ସମାଜର ବଡ଼ ପଣ୍ଡାଙ୍କ ଠାରୁ ଆରମ୍ଭ କରି କ୍ଷୁଦ୍ରାତିକ୍ଷୁଦ୍ର ଜୀବ ଅସରପା ପର୍ଯ୍ୟନ୍ତ ସମସ୍ତଙ୍କର ଭବନାଥଙ୍କ ଉପରେ ଦାବି ଅଛି। ସମସ୍ତେ ଏବେ କହିବା ଆରମ୍ଭ କରି ଦେଇଛନ୍ତି ଆମେ ଭବନାଥଙ୍କୁ ମଣିଷ କରିଛୁ। ଆଗରୁ ତାଙ୍କର ଚାରୋଟି ଗୋଡ଼ ଥିଲା, ଗୋଟିଏ ଲାଙ୍ଗୁଡ଼ ମଧ୍ୟ ଥିଲା। ଏବେ ସବୁକୁ କଟା କଟି କରି ଆମେ ତାଙ୍କୁ ଭବ୍ୟ ମଣିଷ ବନେଇ ଦେଇଛୁ। ଅତଏବ ଭବନାଥ ଏବେ ବିଚାର କରନ୍ତୁ, ଆମ ପ୍ରତି ତାଙ୍କର କର୍ତ୍ତବ୍ୟ କ'ଣ?

ଭବନାଥଙ୍କ ମାନସିକ ଯନ୍ତ୍ରଣା ଦ୍ୱିଗୁଣ କାହିଁକି ଦଶଗୁଣ ଯାଏଁ ବଢ଼ି ଯାଇଛି। ସେ ନିଜର କର୍ତ୍ତବ୍ୟ ସ୍ଥିର କରିପାରୁନାହାନ୍ତି। କାହାକୁ ନେବେ କାହାକୁ ନନେବେ ସ୍ଥିର କରିପାରୁନାହାନ୍ତି। ତାଙ୍କ କାରିଗର ତାଲିକା ବର୍ତ୍ତମାନ ପଞ୍ଚତିରିଶରେ ପହଞ୍ଚି ଗଲାଣି। ଏମିତିକି ଏ ତାଲିକା ଭିତରେ ତାଙ୍କ ଅସରପା, ପାନ ଦୋକାନ, ଚା ବାଲାଙ୍କ ଠାରୁ ଆରମ୍ଭ କରି ଅସୀମଦା'ଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ନାଁ ଅଛି। ଭବନାଥ ପ୍ରଦର୍ଶନୀର ଡ଼ିଜାଇନର ସତ, କିନ୍ତୁ ଭାରତ

ଉତ୍ସବର ମାଲିକ ନୁହନ୍ତି ଯେ ଯାହାକୁ ପାଇଲେ ତାକୁ ତାଲିକାଭୁକ୍ତ କରି ସୁଇଡ଼େନ ନେଇଯିବେ। ଭବନାଥଙ୍କ ତାଲିକା ଭାରତ ଉତ୍ସବ ଅଫିସରେ ପହଞ୍ଚିଲା। ସେଠି ପଞ୍ଚତିରିଶି ଜଣିଆ ତାଲିକା ଦେଖି ସମସ୍ତଙ୍କ ଫାକାସି ଉଡ଼ିଗଲା। କଡ଼ା କଡ଼ି ଯାଞ୍ଚପରେ ପଞ୍ଚତିରିଶି ଖସି ଖସି ସାତରେ ପହଞ୍ଚିଲା। ତାଲିକାରୁ ବହୁ ବଂଧୁ, ବହୁ ଗୁଣୀ, ମାନୀ, ଅଭିମାନୀ ପୃଷ୍ଠପୋଷକ ଓ କିଛି ଫାଲତୁ ଲୋକଙ୍କୁ ମିଶାଇ ଚାରି ଭାଗ ବାଦ୍ ପଡ଼ିଲେ। ଏଣୁ ଏଭଳି ଏକ ସଂକୋଚନ ବେଳେ ଭବନାଥଙ୍କ ଅସରପା ଗଣ୍ଡିକ ବାଦ୍ ପଡ଼ିଯିବା ନିହାତି ସ୍ୱାଭାବିକ। ବାଦ୍ ପଡ଼ିଯାଇଥିବା ବଂଧୁମାନଙ୍କ ଭିତରୁ ଅନେକ ଭବନାଥଙ୍କ ଉପରେ ଖପା ହେଲେ। ପଛରେ କହିଲେ ଭବନାଥ ବୋଧହୁଏ ନିଜେ କହିପୋଛି ସେମାନଙ୍କୁ କଟେଇ ଦେଇଛନ୍ତି। ଏଭଳି ସମାଲୋଚନା ଶୁଣି ଶୁଣି ଭବନାଥଙ୍କ କାନ ବଧିରା ପଡ଼ିଗଲାଣି। ଅସରପାମାନେ କିନ୍ତୁ ଏଥିପାଇଁ ଭବନାଥଙ୍କୁ ଦାୟୀ କଲେନାହିଁ। ସେମାନେ ନିଜ କର୍ମପନ୍ଥା ବାଛି ନେଲେ। ସେ ଦିନ ବର୍ଷଣ ମୁଖର ସଂଧ୍ୟାରେ ଲାଇଟ୍ ଆଉଟ୍ କିଚେନ୍ ଭିତରେ ସେମାନେ ନିଷ୍ପତ୍ତି ନେଲେ ଯେ ଯେନ ତେନ ପ୍ରକାରେଣ ଭାରତ ଉତ୍ସବରେ ଯୋଗ ଦେବେ ଏବଂ ସେଥିପାଇଁ ଭବନାଥଙ୍କୁ ସେମାନେ ଅନୁରୋଧ, ଦାବି ବା ଖୋସାମତ କରିବେ ନାହିଁ। ନିଜେନିଜେ ନିଜର ଦୈବୀ ପ୍ରଦତ୍ତ ରୂପ ଓ ଗୁଣ ବଳରେ ଭାରତ ଉତ୍ସବ ପାଇଁ ପ୍ୟାକିଙ୍ଗ ହେଉଥିବା ବଡ଼ ବଡ଼ ଡ୍ରାବଲ ମାନଙ୍କ ଭିତରେ ବଳପୂର୍ବକ ପ୍ରବେଶକରି ଏୟାର ଇଣ୍ଡିଆ ବିମାନରେ ବସି ଷ୍ଟକ୍‌ହୋମ୍‌ରେ ପହଞ୍ଚିବେ।

ଅସରପାଙ୍କ ଯୋଜନା ସମସ୍ତଙ୍କୁ ଅଛପା ରହିଲା। ସମସ୍ତେ ଦେଖୁଚନ୍ତି, ଅଥଚ କିଏ ଦେଖିପାରିଲେନି। କଲିକତାର ଲେମୁର ପ୍ୟାକରସ୍ ଆସି ଡାବଲରେ ପ୍ୟାକିଙ୍ଗ କରିବା ଆରମ୍ଭ କଲେ।

ବାକ୍ସ ବନ୍ଦ ହେବା ପରେ କାଠପଟା ଫାଙ୍କ ଦେଇ ଅସରପା ମାନେ ଡ୍ରାବଲରେ ପ୍ରବେଶ କଲେ । ତାପରେ ଡ୍ରାବଲ ଗୁଡ଼ିକ ଟ୍ରକ୍‌ରେ ଲଦା ହେଇ କଲିକତା ଚାଲିଲା । ସେଠାରୁ ପାଣି ଜାହାଜରେ ଆରମ୍ଭ ହେଲା ବିଦେଶ ଯାତ୍ରା । ସେମାନଙ୍କ ପାସ୍‌ପୋର୍ଟ ଦରକାର ହେଲାନି । ଡ୍ରିମଲ୍ୟାଣ୍ଡ ଷ୍ଟୁଡ଼ିଓ ଯାଇ ବିମଳଦାଙ୍କୁ ଖୋସାମତ କରିବାକୁ ହେଲାନି ବା ଦିଲ୍ଲୀ ଆସି ସୁଇଡ଼ିସ୍ ଏମ୍ବାସି ଅଫିସ ଆଗରେ ଲାଇନ ଦେବାକୁ ପଡ଼ିଲାନି । ସୁଧୀରଘୋଷ ଟ୍ରାଭଲସ୍ ଏଜେନ୍‌ସିରୁ ବା ଆର୍ଯ୍ୟ ଟ୍ରାଭଲସ୍‌ରୁ ଟିକେଟ କିଣିବା ପାଇଁ ପଡ଼ିଲାନି । ସିଧା ସିଧା ବିଦେଶ ଯାତ୍ରା । ବନ୍ଦର ପରେ ବନ୍ଦର ଅତିକ୍ରମ କରି ମହୋଦଧିର ଉତ୍ତାଳ ତରଙ୍ଗରେ ହଲି ହଲି, ଝୁଲି ଝୁଲି ଅସରପା ଦଳକ ସମସ୍ତଙ୍କ ଅଜଣାରେ ଡ୍ରାବଲ ଭିତରେ ବଙ୍ଗୋପସାଗର ଠାରୁ ଆରମ୍ଭ କରି ଆଟ୍‌ଲାଣ୍ଟିକ୍ ମହାସାଗର ପର୍ଯ୍ୟନ୍ତ ସପ୍ତ ସିନ୍ଧୁ ପାର ହେଇ ଷ୍ଟକ୍‌ହୋମ୍‌ରେ ପହଞ୍ଚିଲେ ।

ଭବନାଥ ବାକ୍ସଗୁଡ଼ିକୁ ପଠେଇଦେଇ ଆଗୁଆ ଷ୍ଟକ୍‌ହୋମ୍‌ରେ ପହଞ୍ଚିଥାନ୍ତି । ଅପେକ୍ଷା କରିଥାନ୍ତି ବାକ୍ସଗୁଡ଼ିକ ପହଞ୍ଚିବ କେବେ । ଦିନ ପରେ ଦିନ ପ୍ରତୀକ୍ଷାରେ ତାଙ୍କର ଯନ୍ତ୍ରଣା ବଢ଼ି ଚାଲିଥାଏ । ତା' ପରେ ହଠାତ୍ ଦିନେ ଖବର ଆସିଲା ଯେ ବାକ୍ସଗୁଡ଼ିକ ଜର୍ମାନୀର ହମ୍‌ବର୍ଗ ଠାରେ ପହଞ୍ଚିଗଲା ପରେ ସେଠୁ ଉଡ଼ାଜାହାଜରେ ଆସି ଷ୍ଟକ୍‌ହୋମ୍‌ର ଏରଲାଣ୍ଡା ଏୟାରପୋର୍ଟରେ ପହଞ୍ଚିଯାଇଛି । ସେଗୁଡ଼ିକରେ କେତେକ କ୍ଷୁଦ୍ର ଜୀବଜନ୍ତୁର ଉପସ୍ଥିତି ସନ୍ଦେହ କରି ବାକ୍ସଗୁଡ଼ିକୁ ଏୟାରପୋର୍ଟ ବାହାରକୁ ଛାଡ଼ିଦିଆ ଯାଉନାହିଁ । ଏକଥା ହୁଏତ ପଦାରେ ପଡ଼ି ନଥାନ୍ତା ଯଦି ଅସରପା ଆଉ ତାଙ୍କ ସାଙ୍ଗରେ ସାଙ୍ଗହୋଇ ଆସିଥିବା ବୁଢ଼ିଆଣୀ, ତେଲୁଆଣୀ ପୋକ, ଜଦା, ପିମ୍ପୁଡ଼ି ମାନେ ଟିକିଏ ଧୈର୍ଯ୍ୟର ସହିତ ଭବନାଥଙ୍କ ସଙ୍ଗେ ଦେଖାନହେବା ଯାଏଁ ଚୁପ୍ ଚାପ୍ ବାକ୍ସଭିତରେହିଁ ରହିଥାନ୍ତେ, ତାହେଲେ

କଥା ଅଲଗା ହୁଅନ୍ତା। ବିଦେଶ ଭୂଇଁର ହାୱା ଲାଗୁ ଲାଗୁ ଫୁଟାଣି ମାରି ସେମାନଙ୍କ ଭିତରୁ ଦି ଚାରିଜଣ ବାକ୍ସଭିତରୁ ବାହାରି ବାହାରେ ବୁଲାବୁଲି ଆରମ୍ଭ କରନ୍ତେ, ସାହେବର ତୀକ୍ଷ୍ଣଦୃଷ୍ଟିରୁ ବର୍ତ୍ତି ପାରିଲେନି। ସେମାନଙ୍କ ବିଦେଶ ଯାତ୍ରା ଧୀରେ ଧୀରେ ଏୟାର ପୋର୍ଟ ଗୋଦାମରୁ ଅଫିସ, ଅଫିସରୁ କୁଲଟର ହ୍ୟୁସେଟ ଓ କୁଲଟର୍ ହ୍ୟୁସେଟ୍‌ରୁ ଭବନାଥଙ୍କ କାନ ପର୍ଯ୍ୟନ୍ତ ଆସିଲା। ଭବନାଥ ଏକାବେଳେ ସ୍ତମ୍ଭୀଭୂତ ହୋଇଗଲେ। କାରଣ ଅସରପା ଓ ତାଙ୍କ ବଂଧୁମାନଙ୍କ ଉପସ୍ଥିତି ଯୋଗୁଁ ବାକ୍ସଗୁଡ଼ିକୁ ବିଷାକ୍ତ ଧୂଆଁ ଭିତରେ ଦୁଇ ଚାରିଦିନ ରହିବାକୁ ପଡ଼ିଲା। ବାକ୍ସ ମିଳିବା ଡେରି ହେବାରୁ ଭବନାଥଙ୍କ ପ୍ରଦର୍ଶନୀ ମଧ ପଛେଇ ଗଲା। ଏଭଳି ପରିସ୍ଥିତିରେ ଭବନାଥଙ୍କ ସାହସ ହେଲାନି ପାଟିଖୋଲି ଅସରପାଙ୍କ ସପକ୍ଷରେ ଓକିଲାତି କରିବା ପାଇଁ। ଅନ୍ୟ ପକ୍ଷେ ଭବନାଥଙ୍କ ଅନ୍ତର ଭିତରେ ନିଜର ନିରୀହ ଅସରପା ଦଳଙ୍କ ପାଇଁ ସମବେଦନା ଅଙ୍କୁରିତ ହୋଇ ଉଠିଲା। କାହାକୁ କ'ଣ କହିବେ। ଅସରପାମାନଙ୍କ ସହିତ ସାକ୍ଷାତ ପୂର୍ବରୁ ବିଦେଶ ମାଟିରେ ସେମାନଙ୍କର ଏଭଳି ଦୁର୍ଦ୍ଦଶା ହେବ ଆଉ ସେ ହେବେ ତାର ଅସହାୟ ନିରବ ଦର୍ଶକ! ତାହା ଭବନାଥଙ୍କ ପ୍ରାଣକୁ ଭୀଷଣ ବାଧିଲା। ଭବନାଥ ବା କ'ଣ କରିପାରନ୍ତେ। କପାଳ ଲିଖନ। ଦଇବ ଦଉଡ଼ି, ଅସରପା ଗାଈ। ଜାଲିଆନା ବାଗ୍ ହତ୍ୟାକାଣ୍ଡ ଠାରୁ ଆହୁରି ଲୋମହର୍ଷଣକାରୀ ବୀଭତ୍ସ ଅସରପା ହତ୍ୟାକାଣ୍ଡ ଘଟିଗଲା। ଅସରପା ବା ବୁଢ଼ିଆଣୀ ମାନଙ୍କ ଦେହରେ ରକ୍ତଥିଲେ ପ୍ରାଚୀନଦୀ କଳିଙ୍ଗ ସୈନ୍ୟଙ୍କ ରକ୍ତରେ ରଂଜିତ ହେଲାଭଳି ଷ୍ଟକ୍‌ହୋମ୍‌ର ବିମାନ ବନ୍ଦର ଲାଲ ହୋଇ ଯାଇଥାନ୍ତା। ଓଡ଼ିଆ ଅସରପା ତ ନିର୍ଲଜ। ନିରକ୍ତିଆ। ଆଗରୁ ଯାଭା ସୁମାତ୍ରାରେ ବେପାର କରୁଥିଲେ। ଆଜିକାଲି ପଂଜାବରେ କାଶ୍ମୀରରେ ଓ କଲିକତାର ଫୁଟ୍‌ପାଥରେ

କୁଲିଗିରି କରୁଛନ୍ତି। ଅସରପାଙ୍କ କଥା କିଏ ବୁଝେ। ଅସରପାଙ୍କ ମୃତ୍ୟୁ ସଂବାଦ ସମଗ୍ର ସୁଇଡ଼େନ ଦେଶରେ ବିଜୁଳି ଭଳି ଖେଳିଯାଇଥାନ୍ତା ଯଦି ଭବନାଥ ରୋକିନଥାନ୍ତେ। ସୁଇଡେନ କାହିଁକି ସାରା ବିଶ୍ୱରେ ଅସରପାଙ୍କ ମୃତ୍ୟୁଖବର ଚାଞ୍ଚଲ୍ୟ ସୃଷ୍ଟି କରିଦିଅନ୍ତା। କାରଣ ଭାରତ ଉତ୍ସବର ସଂସ୍କୃତିସାମଗ୍ରୀ ଭରା ବାକ୍ସଭିତରେ ଭାରତରୁ ଆସିଥିବା ଅସରପା ହୁଏତ ୟୁରୋପର ନିର୍ମଳ ଆବହାଓ୍ୱାକୁ ଦୂଷିତ କରି ଦେଇଥାନ୍ତେ। ସେମାନେ ହୁଏତ ଘରେ ଘରେ ପ୍ରବେଶ କରି ସାଇବ ମାନଙ୍କର ଇଶାଣ ମାନଙ୍କରେ ବଂଶବୃଦ୍ଧି କରିବାରେ ଲାଗି ଯାଇଥାନ୍ତେ ବା ହୁଏତ କୁଲଟର୍ ହ୍ୟୁସେଟ୍‌ର ସଂଗ୍ରହାଳୟ, ପୁସ୍ତକାଗାର ଓ ଅଫିସ ମାନଙ୍କରେ ପ୍ରବେଶ କରି ନିଜ ଲଣ୍ଡିମାନଙ୍କରେ ଆଲମିରା, ଡ୍ରୟର ପରିପୂର୍ଣ୍ଣ କରିଦେଇଥାନ୍ତେ। ତା' ପରେ ହୁଏତ ଅସରପା ବଂଶ ନିପାତ କରିବା ପାଇଁ ଦଶ କୋଟି କ୍ରୋନର୍‌ର ଏକ ଯୋଜନା ସୁଇଡ଼ିସ୍ ପାର୍ଲାମେଣ୍ଟରେ ଆଗତ କରାଯାଇଥାନ୍ତା।

ଭଲହେଲା। ଏ ସବୁ କିଛି ଅଘଟଣ ଘଟିବା ପୂର୍ବରୁ ଅସରପାମାନେ ଏୟାରପୋର୍ଟର ଧୂମାୟିତ ଅନ୍ଧାରୁଆ ଘରଭିତରେ ସବୁଦିନ ପାଇଁ ଆଖିବୁଜି ଦେଲେ। ତାଙ୍କ ପାଇଁ ଏକମାତ୍ର ଗୌରବର ବିଷୟ ହେଲା ଯେ ସେମାନେ ବଫରସ୍ ଦେଶରେ ଗୌରବର ସହିତ ଇହଲୀଳା ସାଙ୍ଗକଲେ।

ଅସରପା ମାନଙ୍କର ମୃତ୍ୟୁ ପରେ ଆପାତତଃ ନିରାପଦ ମନେକରି ବାକ୍ସ ଗୁଡ଼ିକୁ କୁଲଟର୍ ହ୍ୟୁସେଟ୍ ଅଣାଗଲା। ଏତେ ଦୁଃଖଭିତରେ ବି ଭବନାଥଙ୍କ ଆନନ୍ଦର ସୀମା ରହିଲା ନାହିଁ, ବାକ୍ସଗୁଡ଼ିକୁ ଆଉ ଥରେ ହାତ ପାଆନ୍ତାରେ ପାଇ। ପ୍ରଦର୍ଶନୀ ପାଇଁ ଦୈନିକ ମଜୁରିରେ କାମ କରୁଥିବା କାଲେ, ଫୋଗଲ, ସ୍ୱାଇଡ଼ର ପ୍ରଭୃତି ଟୋକାଦଳ ଶକ୍ତ ଲୁହାର ନିହଣ ଓ ହାତୁଡ଼ି ମାନଙ୍କ ସାହାଯ୍ୟରେ ବାକ୍ସଗୁଡ଼ିକୁ ମଡ଼ ମାଡ଼, ଧଡ଼ ଧାଡ଼ ଖୋଲିବାକୁ

ଲାଗିଲେ । ବାକ୍ସରେ ଖୁନ୍ଦା ଖୁନ୍ଦି ରହିଥିବା ନଡ଼ା ବିଡ଼ାକୁ ବିଡ଼ା ଟାଣି ତଳେ ଗଦାକଲେ । ଖବର କାଗଜ ଗୁଡ଼ିଆ ହୋଇଥିବା ପୁଡ଼ିଆ ମାନ ବଡ଼ ବଡ଼ ପେଟି ମାନଙ୍କରୁ କାଢ଼ି ଥଳଗାକଲେ । ଅତି ଆଶ୍ଚର୍ଯ୍ୟର କଥା ଜଣେ ଦିଜଣ ଅସରପା ସପାସପ୍ ନଡ଼ାଗଦା ଭିତରୁ ପଦାକୁ ବାହାରି ଆସିଲେ । କୁଲଟର୍ ହ୍ୟୁସେଟ୍‌ରେ କୋଳାହଳ ପଡ଼ିଗଲା । ସେମାନେ 'ବିଷ୍ଟ' 'ବିଷ୍ଟ' ପାଟିକରି କୁକୁରି ଉଠିଲେ । ମନେ ହେଲା, ବାକ୍ସରୁ ଦି ଚାରିଟା ବାଘ ହୁଏତ ବାହାରି ପଡ଼ିଲେ । ଅଳ୍ପ ଦୂରରେ କାମ କରୁଥିବା ଦାଦା, ରୋହିତ, ସଂଗ୍ରାମ ଦଉଡ଼ି ଆସିଲେ । ସତେ କ'ଣ ହେଲା, ମହାବଳ ନା-ଡମ୍ ? ନହେଲେ ଏମିତି ପାଟି ତୁଣ୍ଡ ହୁଅନ୍ତା ନାହିଁ କିନ୍ତୁ ଦେଖିଲା ବେଳକୁ ଦି ଚାରିଟା ଅସରପା । ସେତିକିରେ ବାକ୍ସଖୋଲା ବନ୍ଦ ରହିଲା । ଅନୁମାନ କରାଗଲା ହୁଏତ ହଜାର ହଜାର ସଂଖ୍ୟାରେ ଅସରପା ଏ ବାକ୍ସ ଗୁଡ଼ିକରେ ଲୁଚି ରହିଛନ୍ତି । ଫୋଗଲ ହିସାବ କଲା ଯଦି ବିଡ଼ାଏ ନଡ଼ାରେ ଦଶଟି ଅସରପା ରହି ପାରନ୍ତି ଆଉ ଅନ୍ଦାଜରେ ଗୋଟିଏ ବାକ୍ସରେ ଶହେଟି ବିଡ଼ା ନଡ଼ା ଧରିପାରେ ପ୍ରାୟ ଶହେ ଟଉବନ ବାକ୍ସରେ ଦେଢ଼ ଲକ୍ଷ ଅସରପା ଥିବେ । ଭବନାଥ, ଦାଦା, ରୋହିତ ଏଭଳି ଯୁକ୍ତିରେ ଯେ ପଇସାକର ମଧ୍ୟ ସତ୍ୟତା ନାହିଁ ସେକଥା ଫୋଗଲକୁ ବୁଝେଇବାକୁ ଚେଷ୍ଟାକଲେ । ଫୋଗଲର ପାଟି ଶୁଣି ମନେହୁଏ କୁଲଟର୍ ହ୍ୟୁସେଟ୍‌ର ଦେଢ଼ଶହରୁ ଅଧିକ କର୍ମଚାରୀ ମାଡ଼ି ଆସିଲେ ଅସରପା ଦେଖିବା ପାଇଁ । ତାପରେ ଷ୍ଟକ୍‌ହୋମ୍‌ର ଜୀବ ବିଜ୍ଞାନ ସଂଗ୍ରହାଳୟରୁ ଡ଼କାହେଇ ଆସିଲେ ହଲାଣ୍ଡ ଦେଶର କୀଟପତଙ୍ଗ ବିଶେଷଜ୍ଞା । ବିଶେଷଜ୍ଞା ଜଣକ ଭବନାଥଙ୍କୁ ଅସରପାଭଳି ଦେଖାଯାଉଥିଲେ । ଗେଡ଼ି, ଚିମା, ଗୋଲିଆ ଗୋଲିଆ ଆଖିରେ ଗୋଲ ଗୋଲ ଚଷମା, ମୁଣ୍ଡବାଳ ଧଳା, କୁନ୍ଦୁଲୁ କୁନ୍ଦୁଲୁ ଚାଲି, ନା ହେଲା ଶ୍ରୀମତୀ ମୋଡ଼ । ମୋଡ଼୍ ତାପରେ ଚାବିମୋଡ଼ା

ଆରମ୍ଭ କଲେ। ତାଙ୍କ ବାକ୍ସରୁ କାଢ଼ିଲେ ପନ୍ଦର କୋଡ଼ିଏ ପ୍ଲାଷ୍ଟିକ ବୋତଲ। ଶହେ ଅଠା ଦିଆ ଲେବଲ, ଦି ଚାରିଟା ଚିମୁଟା ଓ ତିନୋଟି ଲେନ୍ସ। ମୋଡ଼ ଚିମୁଟା ଗୁଡ଼ିକୁ ଫୋଗଲ, କାଲେ ପ୍ରଭୃତିଙ୍କୁ ବାଣ୍ଟିଦେଇ କହିଲେ, ଅସରପା ବା ସେ ଜାତୀୟ ଜୀବ ଦେଖିବା ମାନେ ଚିମୁଟାରେ ଧରି ବୋତଲରେ ପୂରେଇ ଠିପି ବନ୍ଦ କର। ତାପରେ ଆରମ୍ଭ ହେଲା ଅସରପା ସଂଗ୍ରହ ଅଭିଯାନ।

ଭବନାଥଙ୍କୁ ମନେ ହେଲା, ନିଜ ସାହିର, ନିଜ ଗାଁର ଅତି ଆପଣାର ଚିହ୍ନା ଲୋକମାନେ ତାଙ୍କ ଆଖିଆଗରେ ମେରିଆ ଭଳି ପ୍ରାଣବଳି ଦେଉଛନ୍ତି। ଭବନାଥ ନିରୁପାୟ। ଭାବିଲେ ଷ୍ଟକ୍‌ହୋମ୍‌ରେ ସିନା ଅସରପା ମାନଙ୍କୁ ଭଲ ପାଉନାହାନ୍ତି। ବଂଧୁ ଏବରହାର୍ଡ଼ଙ୍କ ସହିତ ପରାମର୍ଶକଲେ କିଛି ଗୋଟିଏ ରାସ୍ତା ବାହାରିପଡ଼ିବ। ଏବରହାର୍ଡ଼ ପୁଣି ତ ଭାରତୀୟ କଳା ଓ ସଂସ୍କୃତି ଉପରେ ଅନେକ ପ୍ରଦର୍ଶନୀ କରୁଛନ୍ତି। ତେଣୁ ଅସରପାଙ୍କ ସଂପର୍କରେ ତାଙ୍କର ଧାରଣା ଥିବ ଓ ଭାରତୀୟ ପରଂପରାରେ ଉଦ୍‌ବୁଦ୍ଧ ହେଇ ଅସରପାଙ୍କ ଉପରେ ଏତେ କଠୋର ମନୋଭାବ ସେ ରଖିନଥିବେ। ଭବନାଥ ଷ୍ଟକ୍‌ହୋମ୍‌ରୁ ଜୁରିକ୍ ଟେଲିଫୋନ କଲେ। ନିଜର ଅସରପା ଜନିତ ସମସ୍ୟା ଜଣେଇଲେ। ଏବରହାର୍ଡ଼ ସବୁକଥା ଶୁଣିଲେ। ନା ଅସରପା ନା ସୁଇଡ଼ିସ ଲୋକଙ୍କ ପାଇଁ ଦରଦ ଦେଖେଇଲେ। ଅସରପା। ଭାରତରୁ ପ୍ରଦର୍ଶନୀ ଆଣିଲେ ସେମାନେ ବରାବର ଆସନ୍ତି, ବୋଧହୁଏ କଲଚର୍ ହ୍ୟୁସେଟ୍‌ର ବଂଧୁମାନେ ପ୍ରଥମ କରି ଭାରତୀୟ ଚିତ୍ରକଳାର ପ୍ରଦର୍ଶନୀ କରୁଛନ୍ତି। ଏଣୁ ଅସରପା ମାନଙ୍କୁ ନେଇ ଭବନାଥ ଏତେ ଚିନ୍ତାକରିବା ଅନୁଚିତ। ଷ୍ଟକହୋମ୍ ଲୋକେ ଆଗରୁ। ଗ୍ୟାସ ପ୍ରୟୋଗ କରି ମାରିଲେ, ନହେଲେ ଥଣ୍ଡା ପଡ଼ିଥିଲେ ସେମାନେ ଆପେ ଆପେ ନିଶ୍ଚିହ୍ନ ହେଇଯାଇଥାନ୍ତେ। ଖରାଦିନେ ୟୁରୋପରେ ମଧ୍ୟ ବେଳେ ବେଳେ

ମାଛି, ଅସରପା, ପିମ୍ପୁଡ଼ି, ତେଲୁଣିଆ ପୋକ ମାତିଯାନ୍ତି। ଯିମିତି ଥଣ୍ଡା ପଡ଼ିବା ଆରମ୍ଭ ହୁଏ ସବୁ କୁଆଡ଼େ ଲୀନ ହୋଇଯାଆନ୍ତି।

କିନ୍ତୁ ଭବନାଥଙ୍କ ସମସ୍ୟାଥିଲା ଅନ୍ୟ ରକମର। ସୁଇଡ଼ିସ ବିଶେଷଜ୍ଞ ମାନେ ଅସରପା ସଂପର୍କରେ ସବିଶେଷ ଗବେଷଣା କରିସାରିଛନ୍ତି। ବେଳେ ବେଳେ ଅସରପା ମାନେ ସୋଭିଏତ ପାଣିଜାହାଜ ସାଙ୍ଗରେ ସୁଇଡ଼େନ ଆସି ଯାଆନ୍ତି। ଏହି ରୁଷୀୟ ଅସରପା ନା ଥଣ୍ଡା ନା ଖରାରେ ମରନ୍ତି। ଥରେ ଏମାନେ ଆଶ୍ରା ପାଇଗଲେ କଥା ସରିଲା। ଶେଷରେ ପୁଣି ଜଣାପଡ଼ିଲା ଅସରପା ନଥାଇ ପ୍ରାୟ ଦେଶ ନାହିଁ। ସବୁ ପୁରୁଣା ସହରର ରୋଷେଇ ଶାଳ ମାନଙ୍କରେ ଅସରପା ଛପି ରହନ୍ତି ଓ ବଂଶ ବୃଦ୍ଧି କରନ୍ତି। ଘର ଭିତରେ ଖଞ୍ଜା ଯାଇଥିବା ଗରମ ପାଣି ନଳ ଓ ଏକଷ୍ଟିକସ୍ ବୋର୍ଡ଼ ମଝିରେ ଥିବା ଫାଙ୍କା ଜାଗା ମାନଙ୍କରେ ଉଷ୍ମମ୍ ପାଇ ଅସରପା ବେଶ୍ ଛପି ରହିପାରନ୍ତି। ଦିନବେଳେ ଚୁପ୍‌ଚାପ୍ ରହନ୍ତି। ରାତିହେଲେ ଘର ସାରା ବୁଲାବୁଲି କରି ତାଣ୍ଡବ ଲୀଳା ଆରମ୍ଭ କରନ୍ତି। ନ୍ୟୁୟର୍କ ଠାରୁ ଆରମ୍ଭକରି ରୋମ୍ ପର୍ଯ୍ୟନ୍ତ, ଲଣ୍ଡନ ଠାରୁ ଦିଲ୍ଲୀ ପର୍ଯ୍ୟନ୍ତ ସବୁ ଦେଶରେ ଊଣାଅଧିକେ ଅସରପା ବାସ କରନ୍ତି କିନ୍ତୁ ବିଷ ଧୂଆଁରେ ନମରିବାରୁ ସୁଇଡ଼ିସ ଲୋକେ ଭାରତୀୟ ଅସରପା ବା ବିଶେଷ କରି ଓଡ଼ିଶୀ ଅସରପାଙ୍କୁ ଭୟ କରିଗଲେ। ଏହାହିଁ ବୋଧହୁଏ ଓଡ଼ିଶୀ ଅସରପାଙ୍କ ବିଶେଷ ଗୁଣ।

କିନ୍ତୁ ଭବନାଥ ମୋଡ଼ଙ୍କୁ କହିବା ଛାଡ଼ିଲେ ନାହିଁ, 'ଦେଖ ମୋଡ଼, ତମେ ଯେତିକି ଅସରପା, ତେଲୁଣି ପୋକ, ପିମ୍ପୁଡ଼ି, ଜନ୍ଦା ବୋତଲରେ ଭର୍ତ୍ତି କଲଣି ତାର ମୂଲ୍ୟାୟନ କଲେ, ଭାରତୀୟ ଟଂକାରେ କୋଟି କୋଟି ଟଂକା ହେବ। ତମେ ବିଷ ଗ୍ୟାସରେ ଯେତିକି ଅର୍ଥ ଖର୍ଚ୍ଚ କରିଛ, ତାହା ତମର ଲାଭ ତୁଳନାରେ

କେତେ ଯେ ନଗଣ୍ୟ ତାହା ଉପଯୁକ୍ତ ହିସାବ ନିକାସ ହେଲେ ଜଣାପଡ଼ିବ। ଅତଏବ ଅସରପା ମାନେ ଧୂମାୟିତ କୋଠରୀରେ ଆତ୍ମବିସର୍ଜନ କରି ତମମାନଙ୍କର ଯେତିକି ଉପକାର କରିନାହାନ୍ତି, ତାଠାରୁ ବଳି ସେମାନେ ତମ ଦେଶ ଓ ଜାତିକୁ ଉତ୍ସର୍ଗ କରି ଦେଇଛନ୍ତି ତମ ବୋତଲମାନଙ୍କରେ ନିଜକୁ ନିଜେ ବନ୍ଦୀ କରି। ଅସରପା ମଲେ ଲକ୍ଷେ ଜିଇଁଲେ ଲକ୍ଷେ। ମୃତ୍ୟୁ ପରେ ମଧ୍ୟ ଅସରପାର ଶରୀର ମଳିନ ପଡ଼େନି। ଆତ୍ମା ପରମାତ୍ମାଙ୍କ ସହିତ ଏକ ହୋଇଯାଏ, କିନ୍ତୁ ପଞ୍ଚଭୂତ ସେମିତି ଅତୁଟ ରହେ। ମିଶରୀୟ ମାନଙ୍କ ଭଳି ମମି କରିବା ପାଇଁ ମଲମ ଲଗେଇବା ଅବଶ୍ୟକ ନାହିଁ। ସେମାନେ ବୋତଲ ଭିତରେ ଆପେ ଆପେ ମମି ହୋଇଯାଆନ୍ତି।' ଅସରପା ମାନେ ଇହଧାମ ଛାଡ଼ି ସାରିଥିଲେ ମଧ୍ୟ ବୋତଲ ଗୁଡ଼ିକ ଭିତରେ ସେମିତି ପଡ଼ିରହିଥିବାରୁ ଭବନାଥ ଆଉ ସେମାନଙ୍କ ଅଭାବ ଅନୁଭବ କଲେନାହିଁ। ମଝି ମଝିରେ ବୋତଲ ଗୁଡ଼ିକ ପାଖକୁ ଯାଇ ନିଜର ବଂଧୁମାନଙ୍କୁ ଅନେଇ ଆସନ୍ତି। ହନୁମାନଙ୍କ ଲାଙ୍ଗୁଡ଼ରେ ଗୁଡ଼େଇବା ପାଇଁ ଯିମିତି ଲଙ୍କାନଗରୀର ସବୁ ଲୁଗାପଟା କୁଳେଇ ନଥିଲା ସେମିତି ମୋଢ଼ ପ୍ରତିଦିନ ଶହ ଶହ ବୋତଲ ନେଇ କୁଲଟର୍ ହ୍ୟୁସେଟ୍‌କୁ ଆସନ୍ତି ଓ ଅସରପା ଭର୍ତ୍ତି କରନ୍ତି। ଏଭଳି ଦୁଇ ସପ୍ତାହ ଲାଗିଲା ଅସରପାଙ୍କ ସମଗ୍ର ବଂଶ ସମୂଳେ ନିପାତ କରିବା ପାଇଁ। ତା'ପରେ ମୋଢ଼ ଘୋଷଣା କଲେ କୁଲଟର ହ୍ୟୁସେଟ୍‌ରେ ଆଉ ଓଡ଼ିଶୀ ଅସରପାଙ୍କ ସତ୍ତା ନାହିଁ। ସମସ୍ତେ ଆଶ୍ୱସ୍ତିର ନିଶ୍ୱାସ ମାରିଲେ। ପ୍ରଦର୍ଶନୀ ଉଦ୍‌ଘାଟନ ସରିଲା। ଅସରପାତ ନାହାନ୍ତି ଆଉ ଆସିବେ କୁଆଡୁ?

ଏହାପରେ ଯାହା ସବୁ ଘଟିଗଲା ସେ ସବୁ ଭବନାଥଙ୍କ ଅନୁପସ୍ଥିତିରେ। ଯାହା ଭବନାଥଙ୍କ ଶୁଣିବା କଥା। କୁଲଟର୍ ହ୍ୟୁସେଟ୍‌ର ସେଣ୍ଟ୍ରାଲ ହିଟେଡ୍ ପ୍ରଦର୍ଶନୀ ଗୃହ ମାନଙ୍କରେ ଉଷୁମ ପାଇବାରୁ

ମୃତ୍ୟୁ ଆଗରୁ ଅସରପା ମାନେ ଦେଇଥିବା ଅଣ୍ଡାମାନ ଫୁଟି ବାହାରିଲେ ଲକ୍ଷ ଲକ୍ଷ ଅସରପା। ହଠାତ୍ ମ୍ୟୁଜିୟମ ଲୋକେ ଜାଣି ପାରିଲେନି। ପ୍ରଦର୍ଶନୀର ପ୍ରାଗ୍‌ଐତିହାସିକଗୁମ୍ଫା, ସଉରାଘର, ଠାକୁରାଣୀ ଆସ୍ଥାନ, ଗୁଜରାଟୀ ଘରର ଠଣା, ସିନ୍ଦୁକ, କୋଇତାଳ ମନ୍ଦିର ସେଟର ରିଲିଫ ମୂର୍ତ୍ତିମାନଙ୍କ ସନ୍ଧିରେ ଓ ସର୍ବୋପରି ମୋଗଲ ଦରବାରର ଇମିଟେସନ ମାର୍ବଲ କାଗଜମାନଙ୍କ ଉପରେ ଅତି ଅନାୟାସରେ ନିଜେ ବଢ଼ିଲେ ଓ ବଂଶ ବୃଦ୍ଧି କରିବାରେ ଲାଗିଲେ। ସାଇବଙ୍କୁ ଦେଖିଲେ ଏମାନେ ସେମିତି କାଠ ଭଳି ପଡ଼ି ରହିଲେ। ହଲ ଚଲ ଖଡ଼ ଖାଡ଼ ଏକବାରେ ବନ୍ଦ। ଦର୍ଶକ ମାନେ ଭାବିଲେ ବୋଧହୁଏ ଭବନାଥ ପ୍ରଦର୍ଶନୀର ସେଟ୍ ଗୁଡ଼ିକୁ ଜୀବନ୍ତ କରିବା ପାଇଁ କିଛି କାଗଜର ଅସରପା ଲଗେଇ ଦେଇ ଯାଇଛନ୍ତି। ସେମିତିକା ଅସରପା ନଥିଲା ଯେ ନୁହେଁ। କଲିକତାରୁ ଆଣିଥିବା ଅସରପା ଓ ଝିଟିପିଟି ପଚାଶ ଶହେ କାନ୍ଥ ମାନଙ୍କରେ ଖଞ୍ଜା ହେଇଥିଲେ। ସେଇଥିରୁ ସମସ୍ତେ ଅନୁମାନ କରିନେଲେ ଯେ ସବୁ ଅସରପା ଚିତ୍ର ପ୍ରତିମା। ପ୍ରଦର୍ଶନୀ ଖୋଲିବାର ମାସେ ଦେଢ଼ ମାସ ଏମିତି ଚାଲିଲା। ରାତିରେ କୁଲଟର୍ ହ୍ୟୁସେଟ୍ ଦର୍ଶକଙ୍କ ପାଇଁ ବନ୍ଦ ହେଇଗଲେ ଅସରପାଙ୍କ ସଭା ବସେ। ପରବର୍ତ୍ତୀ କାର୍ଯ୍ୟପନ୍ଥା ନିର୍ଧାର୍ଯ୍ୟ ହୁଏ। ସେମାନଙ୍କ ସମସ୍ୟା ହେଲା ସେମାନେ ସ୍ୱଦେଶ ଫେରିବା ପାଇଁ ଚାହାନ୍ତି ଏବଂ ଭାରତ ଉପବସଂପର୍କରେ ତାଙ୍କର ଓ ତାଙ୍କ ପୂର୍ବ ପୁରୁଷ ମାନଙ୍କର ଯାହା ଅନୁଭୂତି ହେଲା ତା ଭାରତୀୟ ସଂସ୍କୃତିର ତ୍ୟାଗର ପରାକାଷ୍ଠାକୁ ଆହୁରି ଜାଜ୍ୱଲ୍ୟମାନ କରିବା ପାଇଁ ଯଥେଷ୍ଟ। ଏଣୁ ଏ ଦେଶରେ ନିଜ ମାତୃଭୂମି ଠାରୁ ଏତେ ଦୂରରେ ରହିବା ପାଇଁ ତିଳେ ହେଲେ ତାଙ୍କର ଶ୍ରଦ୍ଧାନାହିଁ କିନ୍ତୁ ଭବନାଥଙ୍କୁ ଦେଖାନକରି ପୁଣି କିଛି ଗୋଟିଏ ନିଷ୍ପତ୍ତି ନେଇଗଲେ ସମସ୍ୟା ଗୁରୁତର ହେଇଉଠିବ। ଏଣୁ ସେମାନେ

ମନ ମାରି ଅଭିନୟ କରିବାରେ ଲାଗିଲେ।

ଅସରପାଙ୍କ ଭାଗ୍ୟରେ ଖାଲି ଦୁର୍ଯୋଗ। ଥରେ ଦଳେ ବଙ୍ଗୁଲିଆ ସୁଇଡ଼ିସ ସ୍କୁଲ ପିଲା ପ୍ରଦର୍ଶନୀ ଦେଖିବାକୁ ଆସିଥିଲେ। ଅସରପାଙ୍କ କଥାତ କାହାକୁ ଅଛପା ନଥିଲା। ସେଥିରୁ ଗୋଟିଏ ବୁଦ୍ଧିଆ ଭାବିଲା ଗୋଟେ ଦିଟା ଅସରପା ନେଇ ଘରେ ଭାରତ ଉତ୍ସବର ସ୍ମୃତି ଫଳକ ଭଳି ରଖିବ। ଗୁଜରାଟ ଘରର କାନ୍ଥକଣରୁ ପୁଳାଏ ଉଠେଇ ନେବାକୁ ଚେଷ୍ଟା କରନ୍ତେ ଅସରପା ମାନେ ଆତ୍ମରକ୍ଷା ପାଇଁ ସର ସର ହେଇ ଦଉଡ଼ିବାକୁ ଲାଗିଲେ। ପିଲାଟି ସେଇମିତି 'ବିଷ୍ଟ' 'ବିଷ୍ଟ' କହି ସ୍କୁଲର ମାଷ୍ଟ୍ରାଣୀ ପାଖକୁ ଦଉଡ଼ିଗଲା। ତା ପରେ କ'ଣ ହେଇଥିବ ଅନୁମାନ କରି ହେଉଛି। ଏଠି ସବୁ ବଖାଣିବା ଅନାବଶ୍ୟକ।

ଏଥର କିନ୍ତୁ ବିଷାକ୍ତ ଧୂଆଁ ଆଉ ମୋଡ଼ ଦୁଇଟି ଯାକ ପନ୍ଥା ବର୍ଜନ କରାଗଲା। ସେତେବେଳକୁ ନିଉୟର୍କରେ ଅସରପା ଚେକ୍‌ଇନ୍ ହୋଟେଲର ଖେଳନା ବାହାରି ସାରିଥାଏ। ଶିଶି ଷ୍ଟକ୍‌ହୋମ୍ ବଜାରରୁ ସେଥିରୁ ଶହେ ଖଣ୍ଡେ କିଣି ଆଣି ପ୍ରଦର୍ଶନୀର ବିଭିନ୍ନ କୋଣଯାଗା ମାନଙ୍କରେ ଚୁପ୍‌ଚାପ୍ ରଖି ଦେଇଗଲା। ଏହି ଖେଳନା ଭିତରେ ଅସରପାମାନଙ୍କୁ ଆକୃଷ୍ଟ କରିବା ପାଇଁ କିଛି ଲୋଭନୀୟ ଖାଦ୍ୟ ପଦାର୍ଥ ପରିବେଷଣ କରାଯାଇଥିଲା। ଦିନ ଦିନ ମାସ ମାସ ଧରି ଅସରପାଙ୍କ ପାଟିରେ ସୁଆଦିଆ ଖାଦ୍ୟର ସ୍ପର୍ଶ ଲାଗିନଥିଲା। ଦିନ ରାତି ତରିମରି ରହୁଥିଲେ। କୁଲଟର୍ ହ୍ୟୁସେଟ୍‌ରେ ବା କି ଖାଦ୍ୟ ପଦାର୍ଥ ମିଳିବ? ମ୍ୟୁଜିୟମର ଭଡ଼ାଟିଆ କେଣ୍ଟିନ ମାଲିକ ସଂଧ୍ୟାହେଲେ ହାଣ୍ଡି କୁଣ୍ଡି ଉବୁଡ଼େଇ ଦିଏ। ଓ୍ୱେଷ୍ଟକେନ୍‌ଭିତରେ ଯାହା ଅଇଁଠା ମଇଁଠା ପଡ଼ିଥାଏ, ଏତେ ଅସରପାଙ୍କୁ ସେତକ ସମୁଦ୍ରକୁ ଶଙ୍ଖେ ପାଣି ଭଳି। ଏଣୁ ମହ ମହ ବାସୁଥିବା ଏ ପଦାର୍ଥଗୁଡ଼ିକର ଲୋଭ ସମ୍ଭାଳି ନପାରି ଟୋକା ଅସରପା ଦଳକ

ଛାଟି ପିଟି ହେଲେ। ଦିନେ ସଂଧ୍ୟାରେ ପୁଣି ବୈଠକ ବସେଇ ସ୍ଥିର ହେଲାଯେ ଯେତେ ମହ ମହ ଚକ୍ ଚାକ୍ ସେ ସବୁ ବର୍ଜନୀୟ। ପୁଣି ଭବନାଥଙ୍କ ସଙ୍ଗେ ପରାମର୍ଶ ନକରି କିଛି ଗୋଟିଏ ଶେଷ ନିଷ୍ପତ୍ତି ନିଆଯାଇ ପାରିବନି। ଟୋକାଦଳଙ୍କ ଜିଦ୍ ଧରିଲେ ଆମେ ଓଡ଼ିଶୀ ଅସରପାଙ୍କ ବଂଶଧର ହେଲେ ମଧ୍ୟ ଜନ୍ମ ଆମ ୟୁରୋପ ମାଟିରେ। ବ୍ୟକ୍ତି ସ୍ୱାଧୀନତା ସଂପର୍କରେ ଆମେ ସଚେତନ। ଏଣୁ ଆମ ମନ ଯାହା ତାହା କରିବୁ। ଏଥିପାଇଁ ଆମକୁ ଯଦି ପ୍ରାଣ ବିସର୍ଜନ କରିବାକୁ ପଡ଼େ ତାହା ମଧ୍ୟ ଆମ ପାଇଁ ଶ୍ରେୟସ୍କର।

ତା' ପରଦିନ ଠାରୁ ଆରମ୍ଭହେଲା ଏହି ଖେଳନା ହୋଟେଲ ମାନଙ୍କରେ ପ୍ରବେଶ କରିବା। ହୋଟେଲ ଭିତରେ ଏଭଳି କିଛି ବ୍ୟବସ୍ଥା ଥିଲା ଯେ ଥରେ ଏଭିତରକୁ ପଶି ଆସିଲେ ଆଉ ଫେରିବାର ଉପାୟ ନଥିଲା। ସବୁଦିନ ପାଇଁ ସେମାନେ ଏହା ଭିତରେ ହଜିଯାଉଥିଲେ। ପାଞ୍ଚଦଶ ଦିନ ଭିତରେ ଟୋକାଦଳଙ୍କ ନିଃଶେଷ ହେଇଗଲେ। ବୁଢ଼ା ମାନଙ୍କ ଭାଳେଣି ପଡ଼ିଲା। ଦେଖିବା ଏ ଟୋକାଏ ଗଲେ କୁଆଡ଼େ କହି ହୋଟେଲ ଭିତରେ ପଶନ୍ତେ ନିଜେ ହଜି ଗଲେ। ତା ପଛକୁ ପଛ ସମସ୍ତେ ଏହି ମହାପଥର ଯାତ୍ରୀ ହେଲେ।

ଭବନାଥ ଫେରିଲା ବେଳକୁ ଅସରପା ବଂଶ ସମୂଳେ ବିନାଶ ହେଇସାରିଛନ୍ତି। ଭବନାଥ ତ ଭାରତ ଫେରିଲା ବେଳୁହିଁ ସେ ଜାଣିଥିଲେ ତାଙ୍କର ନିତ୍ୟ ସହଚର ଅସରପା ମାନେ ଆଉ ନାହାନ୍ତି। ଏ ଭିତରେ ମହାଭାରତର ଆଉ ଅଧ୍ୟାୟେ ଯେ ଶେଷ ହେଇଯାଇଛି ସେ ହଠାତ୍ ବୁଝିପାରିଲେନି। ପ୍ରଦର୍ଶନୀ ଆଡ଼େ ଘୂରିଆସି ଠାକୁରାଣୀ ମନ୍ଦିର ପାଖାପାଖି ଖେଳନା ହୋଟେଲଟିକୁ ଦେଖି ଟିକିଏ ଅଡୁଆ ଅଡୁଆ ଅନୁଭବ କଲେ। ଭାବିଲେ, ବୋଧହୁଏ ପିଲାଟିଏ, ଭୁଲରେ ଛାଡ଼ି ଦେଇଚି ତାର ଖେଳନା। ହାତରେ

ଉଠେଇ ଦେଖିଲାବେଳକୁ ସେଥିରେ ବଡ଼ ବଡ଼ ଅକ୍ଷରରେ ଲେଖାଅଛି ''ଦେ ଚେକ୍ଇନ୍, ନେଭର ଚେକ୍ଆଉଟ୍'' ( ସେମାନେ ଭିତରକୁ ଆସନ୍ତି ଆଉକେବେ ବାହାରକୁ ବାହାରନ୍ତି ନାହିଁ।)

# ମିଷ୍ଟର ଇଣ୍ଡିଆ

ଯଦିଓ ବିଲ୍‌ବୋର୍ଡ୍‌ର ପରିକଳ୍ପନା ଭବନାଥଙ୍କର ତାର ନାମକରଣରେ ଭେଦାଚଲମ୍‌ର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା। ଭେଦାଚଲମ୍ ମାଡ୍ରାଜ ସହରର ଆନ୍ନାମଲାଇ ରୋଡ଼ର ଅନତି ଦୂରରେ ଥିବା ଏକ ବସ୍ତିଭିତରେ ରହେ। ଏହି ବସ୍ତିର ସମସ୍ତେ ବ୍ୟାନର୍ ପେଣ୍ଟର୍। ବିଲ୍‌ବୋର୍ଡ୍, ବ୍ୟାନର, ପୋଷ୍ଟର ଚିତ୍ର କରି କରି ଭେଦାଚଲମ୍ ପଚାଶ ଟପିଲାଣି। ଏଣୁ ସିନେମା ହିନ୍ଦୀ ହେଉକି ତାମିଲ ହେଉ ତାର ନଖଦର୍ପଣରେ ଯିମିତି ଲେଖା। ମିଷ୍ଟର ଇଣ୍ଡିଆ ହୁଏତ ସେବେଲର ହିଟ୍ ଫିଲ୍ମ। ଏଣୁ ଭେଦାଚଲମ୍‌ଙ୍କ ନାମ କରଣରେ ଭବନାଥଙ୍କର କିଛି ଆପତ୍ତି କରିବାର ନଥିଲା।

ମିଷ୍ଟର ଇଣ୍ଡିଆ ବିଲ୍‌ବୋର୍ଡ୍‌ର ଲେ ଆଉଟ୍ ଟିକୁ ସଂପୂର୍ଣ୍ଣରୂପେ ହୃଦୟଙ୍ଗମ ନକରି ଭବନାଥ ଅମିତାଭ ବଚ୍ଚନଙ୍କ ପୋଟ୍ରେଟ୍‌ଟିକୁ ଯୋଡ଼ିଦେବା ପାଇଁ ଭେଦାଚଲମ୍‌କୁ ପ୍ରସ୍ତାବ ଦେଲେ। ଭେଦାଚଲମ୍ "ଓ ଇଏସ୍" କହିଦେଇ 'ଫିଲମ୍ ଫେର୍'ରୁ ଫୋଟଟି କାଟିଆଣି ଲେ ଆଉଟ୍ ଉପରେ ମଡ଼େଇ ଦେଲା। ଏଇ ଲେ-ଆଉଟ୍ ଭିତରେ କିଏ ଯେ ନଥିଲା ହଠାତ୍ କହି ହେବନି। ନର୍ଗିସ୍ ଠାରୁ ଆରମ୍ଭକରି ସୁରେୟା, ମଧୁବାଲା, ବୈଜୟନ୍ତୀ ମାଳା, ଭୂଦେବୀ, ଶ୍ରୀଦେବୀ, ଶାବନା ଆଜମୀ ଓ ସ୍ମିତା ପଟିଲ ଏବଂ ବାଲରାଜ ସାହାନୀଙ୍କ ଠାରୁ ଅନିଲ କପୂର ପର୍ଯ୍ୟନ୍ତ। ଖାଲି ଯେ ହିନ୍ଦୀବାଲା ଥିଲେ ତା ନୁହେଁ। ଏନ୍.ଟି. ରାମାରାଓ, ନାଗେଶ୍ୱର ରାଓ, ଚିରଂଜିବୀ,

ଜୟପ୍ରଦା, ଶାରଦା, ଭାନୁପ୍ରିୟା, ଜୟଲଳିତା ପ୍ରଭୃତି ଚିତ୍ର ତାରକା ଓ "ତାରକାଣୀ" ମାନଙ୍କ 'ରୋଗ୍' ଗ୍ୟାଲେରୀ ଭଳି ଦେଖାଯାଉଥିଲା। ଭେଦାଚଲମ୍ ଏତେ ବଡ଼ ବିଲ୍‌ବୋର୍ଡ଼ ଆଗରୁ କରିନଥିଲା। ଏଣୁ ସେ ବୋଧହୁଏ ଧରିନେଲା ବିଦେଶ ଭୂଇଁରେ ବଛା ବଛା ହିରୋ ହିରୋଇନ୍ ମାନଙ୍କୁ ନ ରଖିଲେ ଭାରତୀୟ ଲୋକପ୍ରିୟ କଳାର କାଟ୍‌ତି ହେବନି, ଏଣୁ ଏ ସମସ୍ତଙ୍କୁ ଅଡ଼ାଅଡ଼ି କରି ମନ୍ଦାରେ ପୂରେଇବାକୁ ଚେଷ୍ଟା କରିଥିଲା।

ଅପରାହ୍ନ ଚା ପାନ ବେଳେ ଶିଶି, ମାର୍ଗେରିଏତା, କ୍ଲଇଟର୍ ହ୍ୟୁସେଟ୍‌ର ନିର୍ଦ୍ଦେଶକ ବୋ ସିଲଭାନ୍ ଓ ଭବନାଥ ବିଲ୍‌ବୋର୍ଡ଼ର ଲେ-ଆଉଟ୍ ଉପରେ ସବିଶେଷ ଆଲୋଚନା କଲେ। ଦାଦା ଓ ଭେଦାଚଲମ୍ ମଧ୍ୟ ଏହି ଆଲୋଚନାରେ ସାମିଲ ହେଲେ। ଲେ-ଆଉଟ୍‌ର ଜନସଂଖ୍ୟା କମେଇବା ପାଇଁ ସମସ୍ତେ ଏକ ସ୍ୱରରେ ପ୍ରସ୍ତାବ ଦେଲେ। ତାପରେ ସମସ୍ତେ ଖୋଜି ବସିଲେ ମିଷ୍ଟର ଇଣ୍ଡିଆ କିଏ ? କିଏ ଏମାନଙ୍କ ଭିତରୁ ସେହି ଗୌରବର ଅଧିକାରୀ ହେଇପାରିବ ? କାହାକୁ ଦେଖିଲେ ସୁଇଡ଼ିସ ଲୋକେ ହଠାତ୍ ଭାରତକଥା ମନେ ପକେଇବେ। ରୂପରେ ଗୁଣରେ ଭାରତକୁ ପ୍ରତିନିଧିତ୍ୱ କଲାଭଳି ଚରିତ୍ରଟିଏ ହେଇଥିବ। ରାଜକପୁର, ଦିଲିପ କୁମାର, ମନୋଜ କୁମାର, ଏନ୍.ଟି. ରାମାରାଓ, ଉତ୍ତମ କୁମାର, ଜୟଲଳିତା, ଏମ୍.ଜି. ରାମଚନ୍ଦ୍ରନ୍ ଏମାନେ ହୁଏତ "ଭାରତ ସିମ୍ବଲ"ର ପାଖାପାଖି ହେଇ ପାରନ୍ତି କିନ୍ତୁ ଯୁଗୋପଯୋଗୀ ନୁହନ୍ତି। ଭେଦାଚଲମ୍ ଚଳଚ୍ଚିତ୍ର ବିଶାରଦ ନିଶ୍ଚୟ। ଫିଲ୍ମ ଯିମିତି ହିଟ୍ କରେ ବିଲ୍‌ବୋର୍ଡ଼ ସେମିତି ହିଟ୍ କରିବା ଦରକାର। ଆଜିକାଲିକା ଚଳଚ୍ଚିତ୍ରରେ ହିରୋ ବା ହିରୋଇନ୍‌ଙ୍କ ତାତ୍କାଳିକ ମୂଲ୍ୟାୟନ ଛଡ଼ା ଆଉ କ'ଣ ବା ବିଶ୍ଳେଷଣ କରିହେବ ? ଏଣୁ ଭେଦାଚଲମ୍‌ଙ୍କ ନିଷ୍ପତ୍ତି ଓ ନିର୍ବାଚନକୁ ଗ୍ରହଣ କରିନେବା ପାଇଁ ସ୍ଥିର ହେଲା।

ବହୁ ଭାବିଚିନ୍ତି ଭେଦାଚଳମ୍ ''ୟୁରେକା'' ''ୟୁରେକା'' ଚିଲ୍ଲେଇ ଉଠିଲେ। ତାଙ୍କ ମତରେ ଅମିତାଭ ବଚ୍ଚନ ହିଁ ମିଷ୍ଟର ଇଣ୍ଡିଆ ହୋଇପାରିବେ। କିନ୍ତୁ ତାଙ୍କ ସାଙ୍ଗକୁ ଆଉ ଜଣେ ''ଭିଲିଆନ୍'' ଓ ''ହିରୋଇନ୍'' ରହିବେ। ଭେଦାଚଳମ୍‌ଙ୍କ ଆଖିରେ ବିଲ୍‌ବୋର୍ଡ଼ଟି ସିନେମାର ରୁପେଲି ପରଦା ଭଳି। ଖାଲି ଅମିତାଭ ରହିଲେ ବିଲ୍‌ବୋର୍ଡ଼ର ''ଷ୍ଟୋରି ଭେଲ୍ୟୁ'' ରହିବନି। ଏଣୁ ଶତ୍ରୁଘ୍ନ ଓ ଶ୍ରୀଦେବୀ ଭିଲିଆନ୍ ଓ ହିରୋଇନ୍ ଭୂମିକାରେ ଅବତୀର୍ଣ୍ଣ ହେଲେ। ଶ୍ରୀଦେବୀ ନୃତ୍ୟ ଭଙ୍ଗୀରେ ବିଲ୍‌ବୋର୍ଡ଼ ମଝାମଝି ଉପର ଫ୍ରେମକୁ ଟପି କଟ୍‌ଆଉଟ୍ ହୋଇ ଖଞ୍ଜାହେଲେ। ଶ୍ରୀଦେବୀ ଚିତ୍ରରେ ସଦ୍ୟ ଯୌବନା ଭଳି ପ୍ରତ୍ୟୟ ହେଉଥିଲେ ମଧ୍ୟ ପେଟ ତଳେ ପରସ୍ତେ ବହଳ ମାଡ଼ିଯାଇଥିଲା। ବକ୍ଷୋଜ ଦୁଇଟି ଭଂଙ୍ଗୀୟ ଢାଞ୍ଚାର। ମୁହଁରେ ଲାଖି ହୋଇ ରହିଯାଇଥିଲା ଦୁଷ୍ଟାମିର ହସ। କମରରେ ସୁନାର ଅଣ୍ଟାପାଟିଆ, ତା ତଳକୁ ଭରତ ନାଟ୍ୟମ୍ ଢାଞ୍ଚାର କୁଞ୍ଚ। ମୋଟା ସୁନାଜରିର ବଡ଼ର ଥାଇ କାଞ୍ଜିବରମର ଗୋଲାପୀ ଶାଢ଼ୀ। ଲମ୍ବା ବେଣୀରେ ସେବତୀ। ମୁଣ୍ଡରୁ ଗୋଡ଼ ଯାଏ ଛାଇହୋଇ ଯାଇଛି ବିଭିନ୍ନ କିସମର ଗହଣା ଗାଣ୍ଠି। ଶ୍ରୀଦେବୀ ଗୁଣ୍ଡୁଣୀ ହାତୀଟିଏ ଭଳି ଦିଶୁଛି। ଶିଶି କହିଲେ ଏଭଳି ନାରୀଟିଏ ୟୁରୋପର ଖାଙ୍ଗଳା, ଲଙ୍ଗଳା ଓ ହେଙ୍ଗଳା ଗୋରୀ ସହିତ ଭଲ କଣ୍ଟ୍ରାଷ୍ଟ ହେବ। ଶ୍ରୀଦେବୀ ଦୁର୍ଗାମେଡ଼କୁ ବଳିଯିବ। ଭୟରେ ଭବନାଥ ପ୍ରଥମେ ପ୍ରଥମେ ଏତେବଡ଼ କଟ୍‌ଆଉଟ୍ ସପକ୍ଷରେ ନଥିଲେ। ପରେ ଭାବିନେଲେ ବ୍ୟାନରଟ ତିନି ମହଲା କୋଠା ଉପରେ ରହିବ, ଏଣୁ ତିରିଶି ଫୁଟ କମିଯାଇ କୋଡ଼ିଏ ଭଳି ଦେଖାଯିବ। ଏଣୁ ଭବନାଥ ଶିଶିଙ୍କ ପ୍ରସ୍ତାବରେ ହଁ ଭରିଲେ। ଭେଦାଚଳମ୍ ଶ୍ରୀଦେବୀ ଫ୍ୟାନ୍। ଏଣୁ ସଭାର ନିଷ୍ପତ୍ତିରେ ତାଙ୍କ ମନ କୁଣ୍ଢେମୋଟ ହୋଇଗଲା। ଶତ୍ରୁଘ୍ନ ସିହ୍ନା ସହଜେ ଭିଲିଆନ୍ ଭଳି ଦେଖାଯାଆନ୍ତି। ବିଲ୍‌ବୋର୍ଡ଼

ଲେ ଆଉଟ୍‌ରେ ଚେହେରାଟା ଆହୁରି କର୍କଶ ଓ କଠୋର ଦେଖାଗଲା। ସେ ଦାନ୍ତକୁ ଦାନ୍ତ ଚାପି ବାଁ ହାତ ମୁଠା ଉପରେ ଡ଼ାହାଣ ହାତ ଭରା ରଖି ବନ୍ଧୁକର ଘୋଡ଼ାଟିକୁ ହେଇ ଟିପିବେ ଭଙ୍ଗିରେ ଦର୍ଶକଙ୍କ ଆଡ଼କୁ କଟମଟ କରି ଚାହିଁ ରହିଥିଲେ। ଠିକ୍ ଶତ୍ରୁଘ୍ନଙ୍କ ତଳକୁ ଓକିଲ ବେଶରେ ଠିଆହେଇ ରହିଲେ ଅମିତାଭ। ମନେହେଲା କାହାପାଇଁ ସେ କେସ୍ ଲଢୁଛନ୍ତି। ଶାନ୍ତ, ଭଦ୍ର ହସ ହସ ମୁହଁ ଅଥଚ ଗମ୍ଭୀର। ମୁହଁରେ ପରିତୃପ୍ତିର ଆଭାସ। ସେ ବୋଧହୁଏ ଯୁକ୍ତିଛଳରେ କହିବାକୁ ଚାହୁଁଛନ୍ତି ଶତ୍ରୁ ଯେଉଁ ବନ୍ଧୁକ ଧରିଛନ୍ତି ତା ସୁଇଡ଼ିସ କାରିଗରିରେ ତିଆରି ନୁହଁ। ସଂପୂର୍ଣ୍ଣ ଦେଶଜ। ତାଙ୍କ ବନ୍ଧୁକରେ ଗୁଳି ନାହିଁ। ସିନେମାରେ ଆମର ମିଛି ମିଛିକା ବନ୍ଧୁକ ଫୁଟାଯାଏ। ପ୍ରଚୁର ଧୂଆଁ ବାହାରେ। ଗୁଳି ଭେଦେନା। ଶତ୍ରୁଘ୍ନ ଅମିତାଭଙ୍କୁ ଚାହିଁ ନାହାନ୍ତି, ଖାଲି ଗୁଳି ଫୁଟେଇବାରେ ବ୍ୟସ୍ତ।

ନା ଭବନାଥ, ନା ଶିଶି କେହିହେଲେ ମିଷ୍ଟର ଇଣ୍ଡିଆ ସିନେମାର କାହାଣୀ ସଂପର୍କରେ ସଚେତନ ନଥିଲେ। "ମିଷ୍ଟର ଇଣ୍ଡିଆ" ନାଁଟି ହୁଏତ ଭାରତକୁ ପ୍ରତିନିଧିତ୍ୱ କଲାଭଳି ଲାଗୁଛି, ଏଣୁ ଭବନାଥ ଭେଦାଚଳମ୍ କଥାରେ ଆପାତତଃ ରାଜି ହେଇଯାଇଥିଲେ।

ସୁଇଡ଼େନରେ ଭାରତ ଉତ୍ସବ ୧୯୮୭ ମସିହାର କଥା। ବୋଫରସ୍‌କୁ ନେଇ ଟିକା ଟିପ୍ପଣୀ ଚରମ ପର୍ଯ୍ୟାୟରେ ପହଞ୍ଚିଥାଏ। ଭାରତ ଓ ସୁଇଡ଼େନ ଉଭୟ ଦେଶରେ ଗୋଳା ବାରୁଦର ଗନ୍ଧ ଭରିଯାଇଥାଏ। କମାଣରୁ ଗୁଳି ଫୁଟୁ ବା ନ ଫୁଟୁ ଗଗନ ପବନରେ ଏକ ଅଜଣା ଆତଙ୍କର ଶିହରଣ ଖେଳି ଯାଇଥାଏ। ଏଣୁ ଶତ୍ରୁଘ୍ନ ସିହ୍ନା ବନ୍ଧୁକ ସଜାଡ଼ି ଗୁଳି ଫୁଟେଇବା ପାଇଁ ବିଲ୍‌ବୋର୍ଡ଼ରେ ଛକିଲେ ଷ୍ଟକ୍‌ହୋମ ବାସିନ୍ଦା ଡରକିବେ ବା କାହିଁକି? ଖାଲି ହୁଏତ ଜାଣିବା ପାଇଁ ଚାହିଁବେ ଏ ବନ୍ଧୁକ ସେମାନଙ୍କର ନୁହେଁତ?

ଅମିତାଭ ଯାହା ଓକିଲାତି କରିବେ ବୋଲି କଳା କୋଟ ପିନ୍ଧି ଠିଆ ହେଇଛନ୍ତି ସେଥିରେ ସତ କେତେ, ମିଛ କେତେ ?

ସ୍ଥିର ହେଇଥାଏ ବିଲ୍‌ବୋର୍ଡ଼ଟି ଦୁଇଶହ ଫୁଟ ଲମ୍ବାହେବ, ପଚିଶି ଫୁଟ ଉଚା ହେବ। ପାଇନ କାଠର ସୁଇଡ଼ିସ ଫ୍ରେମ ଉପରେ ଚଉଦ୍ୱାର ଟେକ୍ସଟାଇଲ ମିଲସ୍‌ର କନା ବାଡ଼ିଆ ଗଲା। ହ୍ୟୁସେଟ୍‌ର କନ୍‌ଫରେନ୍ସ ହଲରେ ଭେଦାଚଲମ୍ ଗୋଟା ଗୋଟା କରି ଚିତ୍ର କରିବେ, ଆଉ ସେଗୁଡ଼ିକୁ ଯୋଡ଼ି ଯୋଡ଼ି କୁଲଟର୍ ହ୍ୟୁସେଟ୍‌ର ତିନି ମହଲା ଉପରେ କାଚ ଝରକା ମାନଙ୍କ ସାମନାରେ ଖଞ୍ଜାଯିବ। ହ୍ୟୁସେଟ୍‌ର ସାମନା ପଟ କାଚ, କଣ୍ଟା ଲାଗିବନି, କାଚ ଭାଙ୍ଗିବନି। ଅଥଚ ଖଞ୍ଜାଯିବ। ଏଥିପାଇଁ ଜାପାନର ଗୋଟିଏ କମ୍ପାନୀକୁ ବରାଦ ଦିଆଯାଇଥାଏ।

ଭେଦାଚଲମ୍ ସ୍ଲାଇଡ୍‌ସ୍ ପ୍ରୋଜେକ୍ଟର ରେ ଶ୍ରୀଦେବୀଙ୍କ ଟ୍ରାନସ୍‌ପେରନସି ଓଲଟା ପକେଇଲେ। ଏପଟେ ସଫେଦ ଫ୍ରେମ୍ ଉପରେ ସିଏ ସିଧା ଝଲସି ଉଠିଲେ। ଫିଲମ୍ ବ୍ୟାନର ସିନା, କାରବାର ସିନେମା ଭଳି। ଭେଦାଚଲମ୍ ସାଙ୍ଗେ ସାଙ୍ଗେ ଛାଞ୍ଚଟିକୁ ପେନ୍‌ସିଲରେ ଠାରି ନେଲା ଓ ଟୋପଟ୍ ରଙ୍ଗ ପକେଇବା ଆରମ୍ଭ କଲା। ମେଡ୍ରାସି ଲୋକ, ରଙ୍ଗସବୁ ଗାଢ଼ା ଗାଢ଼ା। ଶ୍ରୀଦେବୀଙ୍କ ଗାଲ ଠିକ୍ ଏପେଲ ଭଳି ଦେଖାଗଲା। ଆଖି ପତାଉପରେ ଭାଓଲେଟ୍ ଶେଡ୍। ବେକ ସନ୍ଧି, କାନ ମୂଳ, ନାକତଳ ଓ ଓଠ ଉପରର ଅଂଶ, ବକ୍ଷୋଜ ତଳ ଫୋଲ୍‌ଡ଼ ମାନଙ୍କରେ ଭେଦାଚଲମ୍ ଗ୍ରୀନ୍ ଟିନ୍‌ଟ୍ ପକେଇଲା। ତାଉପରେ ଗୋଲାପି ଦେଲେ ଅସଲ ରଙ୍ଗଟି ବାହାରିବ। ଆର୍ଟ କଲେଜରେ ନ ପଢ଼ିଥିଲେ ମଧ ଭେଦାଚଲମ୍ କାଏଦା ଜାଣେ। ହଜାର ହଜାର ବ୍ୟାନର ଆଙ୍କିଛି। ସେତେବେଳକୁ ଶ୍ରୀଦେବୀଙ୍କର ପଚାଶ ଶହେ ଚିତ୍ର କରିଥିବ। ଏମିତି ହିସାବ କଲେ ଶ୍ରୀଦେବୀଙ୍କର ଦୁଇଶହ ଆଖି, ଦୁଇଶହ ଓଠ, ଦୁଇଶହ

କାନ, ଶହେ ନାକ, ଶହେ ବେକ ଓ ଦୁଇଶହ ବକ୍ଷୋଜ ଆଙ୍କିଥିବ। ଏସବୁ ଭେଦାଚଳମ୍‌ର ହାତ ପଇଠ। ଚାହୁଁ ଚାହୁଁ ଶ୍ରୀଦେବୀ ଠିଆ ହେଇଗଲେ ତ୍ରିଭଙ୍ଗରେ। ବାଁ କମରରେ ବାଁହାତ, ଡ଼ାହାଣ ଗୋଡ଼ ଆଣ୍ଠୁ ଉପରକୁ ଉଠିଛି, ମନେହେଉଛି ସେହିଗୋଡ଼ର ଆଗ ନେଡ଼ିରେ 'ଧା''ଧା'ରେ ତାଳ ଦେବେ। ପାଦର ଘୁଙ୍ଗୁର ନିନାଦିତ ହେଇ ଉଠିବ। ଡ଼ାହାଣ ପାପୁଲିରେ ବ୍ୟାଖାନ ମୁଦ୍ରା। କାଞ୍ଚଲା ଉପରେ ଭେଦାଚଳମ୍ ଗୋଲିଆ ଗୋଲିଆ ତାଳି ଜରି ଭରିଦେଲା। ସବୁ ଯାକ ସୁନାରଙ୍ଗର। ସେଗୁଡ଼ିକ ଦାଉ ଦାଉ ହାଉ ହାଉ ହେଲେ। ମନେହେଲା ବକ୍ଷୋଜ ଦୁଇଟି ସ୍ୱର୍ଣ୍ଣ ମେରୁ, ଆକଟ ମାନୁନାହାନ୍ତି, ସୂର୍ଯ୍ୟଙ୍କ ବାଳ କିରଣରେ ଉତପ୍ତ ଲାଭା ଭଳି ଝଲସୁଛନ୍ତି। ଭାରସାମ୍ୟ ରଖିବା ପାଇଁ ଭେଦାଚଳମ୍ ମଥାମଣି, କାନଝୁମ୍ପାରେ ଚମୁରା ଓ ଚୁମକି ଲଖେଇ ଦେଲା। ଏଣେ ଜାପାନୀ କଂପାନୀର ଲୋକ ଜଗିଛନ୍ତି। ରେସ୍ତୋରାଁରେ ଇଡ଼ଲିକୁ ଅପେକ୍ଷା କଲାଭଳି। ଏଇ ବାହାରିଲା, ସିଧା ପ୍ଲେଟରେ "ଲ୍ୟାଣ୍ଡ" କରୁନକରୁଣୁ ପାଟିକୁ ଟେକ୍‌ଅପ୍। ଇଡ଼ଲି ଭଳି ଶ୍ରୀଦେବୀ ବାହାରିଲେ। ହ୍ୟୁସେଟ୍‌ର ତିନି ମହଲା ଉପରେ ଚଢ଼ିଲେ। ବିଲ୍‌ବୋର୍ଡ଼ କ୍ରେନ୍‌ରେ ଉପରକୁ ଉଠିଲା ବେଳକୁ ତାଙ୍କ ବକ୍ଷୋଜ ଦୁଇଟି ଅସମ୍ଭବ ଥରୁଥିଲା। କାଞ୍ଚଲାରେ ଖଞ୍ଜାଯାଇଥିବା ଜରିଗୁଡ଼ିକ ହନ୍ତସନ୍ତ ହେଉଥିଲେ। ଏଣେ ଶ୍ରୀଦେବୀଙ୍କୁ ଦେଖିବା ପାଇଁ କୁଲଟର୍ ହ୍ୟୁସେଟର୍ ପୁଂଆରା ପାଖରେ ପର୍ଯ୍ୟଟକଙ୍କ ଅସମ୍ଭବ ଭିଡ଼। ସମସ୍ତଙ୍କ ମୁହଁରେ ପ୍ରଶ୍ନବାଚୀ- ଏ ନର୍ତ୍ତକୀ କିଏ ? ସେତେବେଳକୁ ମିଷ୍ଟର ଇଣ୍ଡିଆ ଲେଖା ହେଇଥିବା ଫ୍ରେମ୍‌ଟି ଚିତ୍ର ହେଇନି। ଭେଦାଚଳମ୍ ତାପରେ ଶତ୍ରୁଘ୍ନଙ୍କୁ ଧରିଲେ। ଶତ୍ରୁ ଏତେ ଚଂଚଳ ପଦାରେ ପଡ଼ିବା ପାଇଁ ବୋଧହୁଏ ଚାହୁଁ ନଥିଲେ। ଏଣୁ ଭେଦାଚଳମ୍‌ର ଛାତିକୁ ଲକ୍ଷ୍ୟକରି ବନ୍ଧୁକ ମୁହେଁଇ ଉଭାହେଲେ। ବାହାରେ ଖଞ୍ଜାହେଲା ପରେ ଦେଖାଗଲା ସେ

ଶ୍ରୀଦେବୀଙ୍କୁ ପଛକରି ବନ୍ଧୁକ ଫୁଟଉଛନ୍ତି। ଷ୍ଟକ୍‌ହୋମର ଲୋକେ ଭାବିଲେ ଏହି ଭିଲିଆନ୍‌ଟି ଭସ୍ମାସୁର ଭଳି ଶିବ ଦେଇଥିବା ବର ପରୀକ୍ଷା କରିବା ପାଇଁ ଚାହୁଁଛି। ନିଚ୍ଚେ ମରିବ। ଭେଦାଚଳମ୍ ଠିକ୍ ଜାଣିଛନ୍ତି ଶତ୍ରୁ ମରିବନି। ଏଇଟା ସିନେମା କାରବାର। ବନ୍ଧୁକରେ ଗୁଳି ନାହିଁ।

ଶିଶି ଜନମତ ସଂଗ୍ରହ କଲା। ଲେଆଉଟ୍‌ରେ ସେ ବନ୍ଧୁକର ଭୟାବହତା ସଂପର୍କରେ ଅବଧାରଣା କରିପାରୁନଥିଲା। ବିଲ୍‌ବୋର୍ଡ଼ରେ ସେଇ ଛୋଟ ପିସ୍ତଲଟି ଏନ୍‌ଲାର୍‌ଜ ହେଇ କମାଣ ପାଖାପାଖି ଦେଖାଗଲା। ଷ୍ଟକ୍‌ହୋମ୍‌ର କେତେକ ବୁଦ୍ଧିଜୀବୀ ଶତ୍ରୁଙ୍କ ଚିତ୍ରଟିକୁ ''ଭାଓଲେନ୍ସ''ର ପ୍ରତୀକ ମନେକରି ନାପସନ୍ଦକଲେ। ଯେଉଁ ଦେଶ ଗୋଳା ବାରୁଦର ଧନକୁ ବିଶ୍ୱଶାନ୍ତି ପାଇଁ ଉତ୍ସର୍ଗ କରିପାରୁଛି, ସଂସ୍କୃତି, ସାହିତ୍ୟ, ବିଜ୍ଞାନ ପାଇଁ ନୋବେଲ ପୁରସ୍କାର ଦେଇ ପାରୁଛି ସେ ଦେଶ କ'ଣ ଗୋଟିଏ ଚିତ୍ରର ପିସ୍ତଲକୁ ସହ୍ୟ କରିପାରିବନି? ଷ୍ଟକ୍‌ହୋମ୍‌ର ଯୁବା ପିଢ଼ି ଏଭଳି ଯୁକ୍ତି ଉପସ୍ଥାପିତ କଲେ। ଶତ୍ରୁ ଯାହା ତଳକୁ ଓହ୍ଲେଇଥାନ୍ତେ ସେମିତି ଉପରେ ରହିଲେ। ଆଉ ଦଳେ କହିଲେ ତମେ ବନ୍ଧୁକ, ଗୁଳି ଗୋଳା ବିକିବା ବନ୍ଦ କର, ଯଦି ବାସ୍ତବରେ ବିଶ୍ୱଶାନ୍ତି ଚାହଁ। ଭବନାଥ ଶିଶିକୁ ବୁଝେଇ ଦେଲେ ଶିଳ୍ପୀର ସୃଷ୍ଟିରେ ବାସ୍ତବତା ନଥାଏ, ସବୁ ସ୍ୱପ୍ନଭଳି କୁହେଳିକାମୟ। ମନଗଢ଼ା। ଏଣୁ ଏଭଳି ମତାମତରେ ବିଚଳିତ ହେବାର କିଛି ନାହିଁ। ପୁଣି ଭାରତର ସିନେମା ଢ଼ୋ ଢ଼ା, ଡିସୁମ୍, ଢୁସୁମ୍, ରେପ୍, ମର୍ଡ଼ର କୁ ଛାଡ଼ି ହିଟ୍ ହେଇ ପାରୁନି। ଆମେ କେବେ ବେଦ ଉପନିଷଦ କରୁଥିଲୁ, ଏବେ ଗଙ୍ଗାଜଳ ଫିଲ୍ଟର ନକଲେ ଚଳୁନି। ତାଙ୍କର ମନେ ପଡ଼ିଗଲା ତାଙ୍କ ପ୍ରିୟ ପ୍ରଧାନମନ୍ତ୍ରୀ ଓଲଫ୍ ପାମେଙ୍କ କଥା। ନିକଟରେ ଘଟିଯାଇଥିବା ଜଘନ୍ୟ ଘଟଣା। ଚିତ୍ରର ବନ୍ଧୁକଟି ଠିକ୍ ସେହି

ଛାଗା ଆଡ଼କୁ ମୁହେଁଇଛି, ବିଲ୍‌ବୋର୍ଡ଼କୁ ସାମନା କରି ଆଗକୁ ଯାଇଥିବା ରାସ୍ତା ଧାରକୁ। ବିଲ୍‌ବୋର୍ଡ଼ର ଫ୍ରେମ୍ ଗୁଡ଼ିକ ପହଣ୍ଡି ବିଜେ ଭଳି ଆଗପଛ ହେଇ ବାହାରୁଛନ୍ତି। ଏବେ ଅମିତାଭଙ୍କ ପାଳି ପଡ଼ିଲା। ଶତ୍ରୁ ଶ୍ରୀଦେବୀଙ୍କ ବାଁପଟେ ଗୁଳି ଫୁଟାଉ ଥିଲେ, ଅମିତାଭ ତାଙ୍କ ଡ଼ାହାଣ ପଟେ ଓକିଲାତି ଆରମ୍ଭ କଲେ। ତା ଉପରର ଫ୍ରେମ୍‌ରେ ମିଷ୍ଟର ଇଣ୍ଡିଆ ଲେଖା। ଅମିତାଭଙ୍କୁ ଅନେକେ ଚିହ୍ନିପାରିଲେ। ବୋଧହୁଏ ରାଜୀବଙ୍କ ସାଙ୍ଗରେ ଆଗରୁ ତାଙ୍କୁ ଏହି ଷ୍ଟକ୍‌ହୋମ୍ ସହରରେ ଦେଖିଥିବେ। ତାଙ୍କର ସୌମ୍ୟ ଚେହେରାରେ ପ୍ରାୟ ସମସ୍ତେ ସନ୍ତୁଷ୍ଟ ହେଲେ। ଶତ୍ରୁ ଜନିତ ହିଂସାର ବାତାବରଣ ମୈତ୍ରୀ ଓ ସଦ୍‌ଭାବନାର ସୁଗନ୍ଧରେ ଭରିଗଲା। ଠିକ୍ ଏତିକି ବେଳେ ବିଲ୍ ବୋର୍ଡ଼ର କ୍ୟାପ୍‌ସନ୍ ଥିବା ଲେଖାଟି ହ୍ୟୁସେଟ୍‌ର ତିନି ମହଲା ଉପରକୁ ଉଠିଲା, ''ମିଷ୍ଟର ଇଣ୍ଡିଆ'' କିଏ ? ଅମିତାଭ ନା ଶତ୍ରୁ। ମିସ୍ ବା ମଦର ଇଣ୍ଡିଆ ହେଇଥିଲେ ଶ୍ରୀଦେବୀ ନିଶ୍ଚୟ ହେଇଥାନ୍ତେ, ଲିଙ୍ଗ ଶୁଦ୍ଧି ହେଉନି। ''ଇଣ୍ଡିଆ''ମାତୃଭୂମି। ମାଟିମାଁ, ଜନନୀର ପ୍ରତୀକ। ଏଣୁ ଶ୍ରୀଦେବୀ ଯଥାର୍ଥରେ ଇଣ୍ଡିଆର କଳ୍ପିତ ଜନନୀ। ଖାଲି ଯାହା ତାଙ୍କରି ହାତରେ ଭାରତର ଜାତୀୟ ପତାକା ନାହିଁ। ଚରଣ ତଳେ ସିଂହ ଶୋଇନି। ଜଣେ ଚଳଚିତ୍ରର ନର୍ତ୍ତକୀ ଭାରତଭଳି ଦେଶର ଜନନୀ ହେବ ? ହେବାରେ ଆପତ୍ତି କ'ଣ ? ସମ୍ମତି ନ ଜଣେଇବା ରକ୍ଷଣଶୀଳ ମନୋବୃତ୍ତିର ପରିଚାୟକ। ଶିଶି ଓ ଭବନାଥ ବିଲ୍‌ବୋର୍ଡ଼ର ଯଥାର୍ଥତା ଓ କଥାବସ୍ତୁ ଉପରେ ଆଉଥରେ ସବିଶେଷ ଆଲୋଚନା କରିବସିଲେ। ଭାରତ ଉତ୍ସବରେ ଯଦି ଭାରତର ଚିତ୍ରଶିଳ୍ପୀ, ନର୍ତ୍ତକ, ନର୍ତ୍ତକୀ, ସଂଗୀତଜ୍ଞ, ସାହିତ୍ୟିକ ଭାରତୀୟ ସଂସ୍କୃତିର ପ୍ରତିନିଧିତ୍ୱ କରୁଛନ୍ତି, ବିଲ୍‌ବୋର୍ଡ଼ ଉପରେ ଶ୍ରୀଦେବୀ 'ଇଣ୍ଡିଆ' ହେବାରେ ବାଧା ବା କ'ଣ ଅଛି।

ତଥାପି ସମାଧାନର ବାଟ ମିଳି ପାରିଲାନି, ମିଷ୍ଟର ଇଣ୍ଡିଆ କିଏ? ଅମିତାଭ, ଶତ୍ରୁଘ୍ନ ନା ଶ୍ରୀଦେବୀ। ନା ଆଉଜଣେ କିଏ ଯେକି ଆହୁରି ବିଲ୍‌ବୋର୍ଡ଼ ଉପରକୁ ଆସିନି। ତଥାପି ସମସ୍ତଙ୍କ ଦୃଷ୍ଟି ଅନ୍ତରାଳେ ଛପି ରହିଛି। ଭବନାଥ ଆଛା ଗୋଲକଧନ୍ଦାରେ ପଡ଼ିଲେ। ମିଷ୍ଟର ଇଣ୍ଡିଆ ଲେଖା ବୋର୍ଡ଼ଟିକୁ ଫେରେଇ ନେଇଗଲେ କଥା ସରନ୍ତା। ଭେଦାଚଳମ୍ ନଛୋଡ଼ ବନ୍ଧା। ସେ ଜାଣେ "ମିଷ୍ଟର ଇଣ୍ଡିଆ" ଏକ ଅଦୃଶ୍ୟ ଚରିତ୍ର। ଭାରତର ଜଣେ ବିଶିଷ୍ଟ ବୈଜ୍ଞାନିକଙ୍କ ଦ୍ୱାରା ଆବିଷ୍କୃତ ଉଦ୍ଭାବ ଫର୍ମୁଲାର ଅଧିକାରୀ। ସେ ସମସ୍ତଙ୍କୁ ଦେଖିପାରୁଥିବ ଅଥଚ ତାକୁ କିଏ ଠାବ କରିପାରୁନଥିବେ। ଏକ ଅଶରୀରୀ ସତ୍ତା। ପ୍ରତିଶୋଧ ପାଇଁ ଟାକି ବସିଛି। ଲଲାଟ ଲିଖନ, ଭାଗ୍ୟ ଭଳି ଏକ ଅଦୃଶ୍ୟ ଶକ୍ତି। ଏକ ଅସମ୍ଭବ ଦୃଢ଼ ଇଚ୍ଛାଶକ୍ତି। ଆତ୍ମା ପୁରୁଷ। ଏକ ଭାବାତୀତ, ଅବୋଧଗମ୍ୟ ଭଗବତ୍ ଶକ୍ତି। ଓମନିପ୍ରେଜେଣ୍ଟ, ଓମନି ପୋଟେଣ୍ଟ, ଓ ଓମନି ସିଏଣ୍ଟ।

ଭେଦାଚଳମ୍‌କୁ ଏତେ ଦାର୍ଶନିକ ତତ୍ତ୍ୱ ଜଣା, ଭବନାଥ ତା'ଚେହେରାରୁ ପ୍ରଥମେ ଜାଣି ପାରିନଥିଲେ। ଭେଦାଚଳମ୍ ତାହେଲେ ତମେ କଥାଟି ପରିଷ୍କାର କରି କହୁନ କାହିଁକି? ଅମିତାଭ, ଶତ୍ରୁ ଓ ଶ୍ରୀଦେବୀ କ'ଣ କେହି ହେଲେ ମିଷ୍ଟର ଇଣ୍ଡିଆ ନୁହଁନ୍ତି? ବୋଧହୁଏ ତମେହିଁ ଅମିତାଭଙ୍କୁ ଲେଆଉଟ୍‌ରେ ମିଷ୍ଟର ଇଣ୍ଡିଆ ବୋଲି ଚିହ୍ନଟ କରିଥିଲ। ଭେଦାଚଳମ୍ ଭାରତର ଯୋଗୀ ପୁରୁଷ ଭଳି ମିଷ୍ଟର ଇଣ୍ଡିଆକୁ ଚାକ୍ଷୁସ କରିଛନ୍ତି। ଅର୍ଜୁନ ବିଶ୍ୱରୂପ ସଂଦର୍ଶନ କଲାଭଳି ସେ ମିଷ୍ଟର ଇଣ୍ଡିଆକୁ ଦେଖିଛନ୍ତି। କଥାଟା ଏକାବେଳେ କାଳ୍ପନିକ ନୁହେଁ। ଭେଦାଚଳମ୍ ହିଁ ମିଷ୍ଟର ଇଣ୍ଡିଆ ଫିଲ୍ମ ଦେଖିଛନ୍ତି। ଏଣୁ ତାଙ୍କ ଜ୍ଞାନର ସତ୍ୟାସତ୍ୟ ଉପରେ କଥା କହିବାର କାହାର ସାହସ ନଥିଲା।

ଭବନାଥ ନିଜର ଚଳଚିତ୍ର ସଂପର୍କିତ ସ୍ମୃତିକୁ ରୋମନ୍ଥନ

କରିବାକୁ ଲାଗିଲେ। ଭବନାଥ ତାଙ୍କର ଜୀବଦ୍ଦଶା ଭିତରେ ମାତ୍ର ଦଶ ପନ୍ଦରଟି ଚଳଚ୍ଚିତ୍ର ପୂର୍ଣ୍ଣାଙ୍ଗ ଉପଭୋଗ କରିଛନ୍ତି। ତାଙ୍କର ମନେ ପଡ଼ିଲା ବ୍ରହ୍ମପୁର "ବୁଚିଆ ସେଟିଙ୍କ ଏସ୍.ଏସ୍.ଭି.ଟି ଫିଲମ୍ ହଲରେ ୧୯୫୮ ମସିହାରେ ଦେଖିଥିବା "ମିଷ୍ଟର ଏକ୍ସ ମଟର ସାଇକେଲ ଚଢୁଛି। ରେଷ୍ଟୋରାଁରେ ଚା ପିଉଛି। ତା ପୋଷାକଟି କେବଳ ଦୃଶ୍ୟ ହେଉଛି, ମୁହଁ ହାତ ଗୋଡ଼ ଦେଖାଯାଉନି। ମୁଣ୍ଡ ରହିବା ଯାଗାରେ ଇଂରାଜୀ ଏକ୍ସ ଏକ୍ସ ଲେଖି ହେଇ ଯାଉଛି। ସେମିତି ମନ୍ତ୍ରକରି ଧୂଳି ମୁଠାଏ ଫିଙ୍ଗିଦେଲେ ଓଁ ଫଟ୍ ପାତାଳ ଭୈରବୀ ଅଦୃଶ୍ୟ ହେଇ ଯାଉଛି ପାତାଳ ଭୈରବୀ ସିନେମାରେ। ତା ହେଲେ ମିଷ୍ଟର ଇଣ୍ଡିଆ କ'ଣ ଏଭଳି ଏକ ଚରିତ୍ର? ଖାଉଛି, ପିଉଛି, ଗାଡ଼ି ଘୋଡ଼ା ଚଢୁଛି, ଅଥଚ ଦେଖିଲା ବେଳକୁ ନାହିଁ। ଭେଦାଚଳମ୍ ସମସ୍ତଙ୍କୁ ଆଚ୍ଛା ଅଡୁଆରେ ପକେଇଲା। ଧୀରେ ଧୀରେ ସବୁ ଫ୍ରେମ୍ ଗୁଡ଼ିକ ଚିତ୍ର ସରିଲା ଓ ବାହାରେ ଆସି ଖଞ୍ଜାହେଲା। ବିଲ୍‌ବୋର୍ଡ଼ ସଂପୂର୍ଣ୍ଣ ହେଲା। ଆଗରୁ ହେଇଥିବା ଯୋଜନା ପ୍ରକାରେ ଅନେକ ଫିଲ୍ମ ଚରିତ୍ର ରଙ୍ଗତୁଳୀରେ ପ୍ରସନ୍ନହେଲେ କିନ୍ତୁ "ମିଷ୍ଟର ଇଣ୍ଡିଆ" କିଏ? ଏ ପ୍ରଶ୍ନ ଅମୀମାଂସିତ ରହିଲା।

କିଏ କିଏ ଥଟ୍ଟାରେ ପଚାରିଲେ ଇଣ୍ଡିଆ ଗଲେ "ମିଷ୍ଟର ଇଣ୍ଡିଆକୁ"ଦେଖି ହେବ? ଏହେଲା ଗାଉଁଲୀ ଲୋକଟିର ଭୁବନେଶ୍ୱର କ୍ୟାପିଟାଲ ଦେଖିବାକଥା। 'ବାହା ବାହାରେ କ୍ୟାପିଟାଲ' ଗୀତ ଶୁଣି ସିଏ ନୂଆ ରାଜଧାନୀକୁ ଆସିଲା। ସେତେବେଳକୁ ରାଜଧାନୀ ଏତେବଡ଼ ହେଇନଥାଏ, ସେ ଚାରିଆଡ଼େ ଘୂରା ଫେରା କଲା "କ୍ୟାପିଟାଲ"କୁ ଭେଟି ପାରିଲାନି। ମାର୍କେଟ୍ ବିଲଡ଼ିଙ୍ଗ ପାଖରେ ଆଉ ଜଣେ ଦେଖଣାହାରୀକୁ ପଚାରିଲା,'ବାବୁ! କ୍ୟାପିଟାଲ କଉଟା ମୋତେ ଦେଖେଇ ଦେବନି, ବହୁଦୂରରୁ ଆସିଛି।', 'ନିର୍ବୋଧ, ତୁ ପରା କ୍ୟାପିଟାଲ ଆସିଛୁ। ଦେଖୁଚୁ ପରା।' ଗାଉଁଲୀଟି ତଥାପି

ସନ୍ତୁଷ୍ଟ ହୋଇ ପାରିଲାନି। ସେ ସତରେ "କ୍ୟାପିଟାଲ"କୁ ଭେଟି ପାରିଲାନି। ଷ୍ଟକ୍‌ହୋମ୍ ଲୋକେ କୁଆଡ଼େ ଏଇଠାକୁ ଆସି "ମିଷ୍ଟର ଇଣ୍ଡିଆ" ଦେଖିବେ! ଭେଦାଟକମ୍ ସବୁ ଚିତ୍ରେଇ ଦେଇଥିଲା। ତିନି ମହଲା ଉପରେ ପ୍ରାୟ ଦେଢ଼ ଲକ୍ଷ କ୍ରୋନର୍ ଖର୍ଚ୍ଚକରି ଜାପାନୀ କମ୍ପାନୀ ଖଞ୍ଜି ଦେଲା ତଥାପି ବଂଧୁ "ମିଷ୍ଟର ଇଣ୍ଡିଆ"କୁ ଭେଟି ପାରିଲନି, ଆସିବ ଭାରତ ଆସ। ଭାରତ ଆତିଥ୍ୟର ଦେଶ। "ଅତିଥି ଦେବୋ ଭବ"। ଆସ! ସୁଇଡ଼ିସ୍‌ବାସୀ ଆସ! ଭାରତ ଭଳି ଏକ ମହାର୍ଘ ସଂସ୍କୃତିକୁ "ଦେଖିବ ପରା ଆସରେ"। ଆମର ପର୍ଯ୍ୟଟନ ଶିଳ୍ପର ଅଭିବୃଦ୍ଧି ହେବ। ଆମର ସିନ୍ଦୁକରେ ଡ଼ଲାର ବଢ଼ିବ।

ଭବନାଥ ଯେତେ ଯେତେ ବିଲ୍ ବୋର୍ଡ଼ର ଚମତ୍କାରିତା, ତାରିଫ୍ ଲୋକ ମୁହଁରୁ ଶୁଣିଲେ ତାଙ୍କ ମନ ଭିତରେ ସନ୍ଦେହ ସେତିକି ସେତିକି ଜମାଟ ବାନ୍ଧିଲା। ମିଷ୍ଟର ଇଣ୍ଡିଆ ଜଣେ ନା ପଣେ? ସମସ୍ତେ କ'ଣ ଏକାଭଳି ଅଦୃଶ୍ୟ। ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ "ରାମ ରି ଟୋଲ୍ଡ୍" ବହିରୁ ପୁଣି ରିଟୋଲ୍ଡ୍ କରି କହିଥିବା ଗପଟିଏ ଭବନାଥଙ୍କ ମନେ ପଡ଼ିଲା "କୁଆଡ଼େ ଦଳେ କୈବର୍ତ୍ତ ମାଛ ମାରିବା ପାଇଁ ଡ଼ଙ୍ଗା ବାହି ସମୁଦ୍ର ବକ୍ଷରେ ଯାଉଥିଲେ। ଜାଲ ଖେପା ହୋଇଛି। ମାଛ ଆପେ ଆପେ ଜାଲ ଭିତରକୁ ଡ଼େଉଁଛନ୍ତି। ତାଙ୍କର ବା କି କାମ। କ'ଣ ଗୋଟାଏ କରିବେ ବୋଲି ଭାବି ବସିଲେ। ତାଙ୍କୁ ପ୍ରତ୍ୟେକଙ୍କୁ ଅନ୍ୟଙ୍କ ଅଗୋଚରରେ ତିନୋଟି ଦୈବୀ କାଠି ମିଳିଥିଲା। ସେଇଥିରୁ ତିନୋଟି ବର ପାଇହେବ। ମୂଳଗପଟି କୁଆଡ଼େ ବାଲ୍ମୀକି ରାମଚନ୍ଦ୍ରଙ୍କୁ କହିଥିଲେ। କୈବର୍ତ୍ତମାନେ ପରସ୍ପରର ସ୍ତ୍ରୀ ମାନଙ୍କ ସୌନ୍ଦର୍ଯ୍ୟ ପ୍ରତି ଆକୃଷ୍ଟ ହୋଇ କାମାସକ୍ତ ହୋଇପଡ଼ିଥିଲେ। ତାଙ୍କ ମନ ଭିତରେ ଉପଭୋଗର କାମନା ଛପି ରହିଥିଲା। ସମସ୍ତେ ବର ମାଗିଲେ ଆମେ ଅଦୃଶ୍ୟ

ହେଇ ଯାଆନ୍ତୁ କି ? ସମସ୍ତେ ସତକୁ ସତ ଅଦୃଶ୍ୟ ହେଇଗଲେ। ନିଜ ନିଜର ଉଦ୍ଦିଷ୍ଟା ରମଣୀଟିର ସାନ୍ନିଧ ପାଇଲେ- ଅଦୃଶ୍ୟ ରହି। ପ୍ରଣୟିନୀମାନେ ସ୍ୱାମୀଙ୍କ ଅନୁପସ୍ଥିତିରେ କୌଣସି ଅଦୃଶ୍ୟ ଶକ୍ତିଙ୍କଦ୍ୱାରା କାମତୃପ୍ତା ହୋଇ ଅପାର ଆନନ୍ଦ ଲାଭ କଲେ। କୈବର୍ତ୍ତମାନେ ଡଙ୍ଗାକୁ ଫେରିଲେ। ସମସ୍ତେ ବେଶ୍ ପ୍ରସନ୍ନ। ହଠାତ୍ ପ୍ରତ୍ୟେକଙ୍କ ଭିତରେ ସନ୍ଦେହ ଉଙ୍କିମାରିଲା ଯେ ସେ ଯେପରି ପରଦାରା ପାଖକୁ ଯାଇଥିଲା, ଆଉକେହି ତା ପତ୍ନୀସହ ସମାଗମ କରୁନାହିଁତ ? ଦ୍ୱିତୀୟ ବର ମଗାଗଲା- ଅଦୃଶ୍ୟ ହୋଇ ନିଜ ନିଜ ସ୍ତ୍ରୀଙ୍କ ପାଖକୁ ଯିବେ। ସେଇଆ ହେଲା। ପ୍ରତ୍ୟେକ ଦେଖିଲେ ନା ସ୍ତ୍ରୀ ଏକା। ସେଇଠୁ ପୂର୍ବଥରର ଅନୁଭୂତି ମନେ ପଡ଼ିଲା। ଏଥର ଆଗଲୋକଟି ପାଖକୁ ନଯାଇ ନିଜ ବିଚାରରେ ସବୁଠାରୁ ସୁନ୍ଦରୀ ରମଣୀଟି ପାଖକୁ ଯାତ୍ରା। ସବୁଠାରୁ ସୁନ୍ଦରୀ ପାଖରେ ଅଶରୀରୀ କୈବର୍ତ୍ତ ମାନଙ୍କର ଭିଡ଼ ଜମିଲା। କୈବର୍ତ୍ତୀ ଦେହ ଦେଲା। କିନ୍ତୁ ଏକା ସାଙ୍ଗେ ପାଞ୍ଚ ଦଶ ଅଶରୀରୀଙ୍କ କାମ ନିବେଦନ ! ଏ ଶ୍ୱାନଙ୍କ ସମ୍ଭୋଗରୁ ବଳିଗଲା। ଆଉ ଆନନ୍ଦ ରହିଲାନି। ଧସ୍ତା ଧସ୍ତିରେ ଅଶରୀରୀମାନେ କ୍ଷତ ବିକ୍ଷତ ଓ ରକ୍ତାକ୍ତ ହେଲେ। ଶରୀର ନଥିଲେ ବି ରକ୍ତ ନିଗିଡ଼ିଗଲା। ଆତ୍ମାକୁ ବାଧିଲା। ମନଦୁଃଖରେ ଫେରିଲେ। ତୃତୀୟ ବର ଚାହିଁଲେ- କାଠିଟି ସମୁଦ୍ରକୁ ଯାଉ। କଥା ଆହୁରି ଲମ୍ବା ଅଛି। ବାଲ୍ମୀକି କହିଲେ ତମେ ସୀତାଙ୍କ ବିୟୋଗରେ ଭାଙ୍ଗି ପଡ଼ିଚ। ମନେରଖ ତମେ କୈବର୍ତ୍ତଙ୍କ ଭଳି ଏଠି ସେଠି ଦୁଇ ଜାଗାରେ ରହିପାରିବନି। ସାର୍‌ଙ୍କ ଗପ ସରିଲା। ମୁଁ ପୁଣି ବୋର୍ଡ଼ ପାଖକୁ ଫେରିଯାଉଛି। ଭବନାଥ ଚିନ୍ତାରେ ପଡ଼ିଛନ୍ତି। ସେ ସୁଇଡ଼ିସବାସୀଙ୍କୁ ମିଷ୍ଟର ଇଣ୍ଡିଆ କେଉଁଠି ଦେଖେଇବେ, କିମିତି ଦେଖେଇବେ ? ଯଦି ସେ ବା ସେମାନେ ବିଲବୋର୍ଡ଼ରେ ନାହାନ୍ତି ଏଇଠି ହୁଏତ ଥିବେ। ଯଦି

ବିଲ୍‌ବୋର୍ଡ଼ରେ ଅଛନ୍ତି ଅଥଚ ଦେଖା ଯାଉନାହାନ୍ତି ତାହେଲେ ଭାରତରେ ପହଞ୍ଚିଲେ ତାଜ ମହଲ ବା କୋଣାର୍କ ସିନା ଦେଖେଇ ହେବ। ମିଷ୍ଟର ଇଣ୍ଡିଆ ଦେଖେଇ ହେବନି।

ଲୋକପ୍ରିୟ କଳା ପ୍ରଦର୍ଶନୀର ପ୍ରତୀକ ଭାବେ ଦୁଇଶହ ଫୁଟ ଲମ୍ବର ବିଲ୍‌ବୋର୍ଡ଼ କୁଲଟର ହ୍ୟୁସେଟ୍‌ର ତିନି ମହଲାରେ ଥିବା କାଚ ଝରକା ସାମନାରେ ପ୍ରଦର୍ଶନୀର ଶ୍ରୀବୃଦ୍ଧି କଲା। ତଳେ ଦୁର୍ଗା ଆଉ ବିଲବୋର୍ଡ଼ ଉପରେ ନୃତ୍ୟରତା ଶ୍ରୀଦେବୀ। ଦେବୀ ଓ ମାନବୀ, ରୂପ ଓ ଅରୂପ, ଆତ୍ମା, ପରମାତ୍ମା, ଶରୀରୀ, ଅଶରୀରୀର ସମଷ୍ଟିରେ ପ୍ରଦର୍ଶନୀର ମହତ୍ତ୍ୱ ବଢ଼ିଗଲା। ସମସ୍ତେ ଭାବିଲେ ଏହା ବୋଧହୁଏ ପ୍ରକୃତ ଭାରତୀୟ ଦର୍ଶନର ନିର୍ଯ୍ୟାସ। ଗଙ୍ଗା, ଯମୁନା ଓ ସରସ୍ୱତୀ ନଦୀ ଉପତ୍ୟକାରେ ଖାଣ୍ଟି ପାଣି ନମିଶା ଦୁଧ, ଛେନା ଓ ଗୁଆଘିଅ ଖାଇ ଭାରତୀୟ ମୁନି ଋଷିମାନେ ଯେଉଁ ସିଦ୍ଧାନ୍ତରେ ଉପନୀତ ହେଇଥିଲେ ଭବନାଥ ସେଥିରୁ ଖିଏଟିଏ ନେଇ ବିସ୍ତାରିତ କରିଦେଇଛନ୍ତି ତାଙ୍କର ଶୈଳ୍ପିକ ପ୍ରବଣତାରେ ଆଉ ଚାତୁରୀରେ। ଧନ୍ୟ! ଧନ୍ୟ! ଧନ୍ୟ ଭାରତ ଉତ୍ସବ। ଧନ୍ୟ ଭବନାଥ!

ପ୍ରଦର୍ଶନୀ ଉଦ୍‌ଘାଟିତ ହେଇଗଲା। ଭବନାଥ ଭାରତ ଫେରୁଛନ୍ତି- ଏୟାର ଇଣ୍ଡିଆର ମହାରାଜା ଚୌକିରେ ଆଉଜି, ତାଙ୍କର ପ୍ରିୟ ଦୁର୍ଗା ଓ ମିଷ୍ଟର ଇଣ୍ଡିଆ କଥା ଭାବିଭାବି। ବିମାନ ଭିତରେ ପରିଚାରିକା ମାନଙ୍କର ଔପଚାରିକତା ଆରମ୍ଭ ହେଲା। ଖାଦ୍ୟ, ପାନୀୟ, ସଂଗୀତ, ଘୋଷଣା, ମୃଦୁ ମୃଦୁ ହସ, ପରଫ୍ୟୁମ୍ ଓ ଅଭିମାନର ପସରା ମେଲାହେଲା। ଭବନାଥ ଆଗରୁ ମହାରାଜା ବନି ନଥିଲେ। ଦିଗପହଣ୍ଡିର ଭିକାରି ବ୍ରାହ୍ମଣ। ଏବେ ଡକ୍ଟର ଭବନାଥ। ଖାଦ୍ୟ ପରିବେଷଣ ପରେ ପରେ କାର୍ଯ୍ୟକ୍ରମ ଚଳଚ୍ଚିତ୍ର ପ୍ରଦର୍ଶନ। ପରିଚାରିକା ପାଖକୁ ଆସି ଝରକାର ସଟର୍ ଗୁଡ଼ିକୁ

ତଳକୁ ଟାଣିଦେଲା। ମିଛି ମିଛିକା ରାତି ହେଇଗଲା। ଭବନାଥ କ୍ଳାନ୍ତ। ଏଣେ ମହାରାଜା ତାଙ୍କୁ ମୋହଗ୍ରସ୍ତ କରୁଛି। କୋକାକୋଲା ପିଇ ମଧ ଭବନାଥଙ୍କ ଚକ୍ଷୁ ଦୁଇଟି ତନ୍ଦ୍ରାୟିତ। ହଠାତ୍ ଟି.ଭି. ସ୍କ୍ରିନ ଉପରେ ଆରମ୍ଭ ହେଲା ଚଳଚ୍ଚିତ୍ରର ପ୍ରାକ୍ କଥନ, କାଷ୍ଟିଙ୍ଗ୍। ଭବନାଥ ଜବରଦସ୍ତ ଆଖିଦୁଇଟିକୁ ଖୋଲି ପରଦା ଉପରେ ଅସ୍ତ ସୂର୍ଯ୍ୟ ଭଳି ଦିଗନ୍ତରେ ହଜି ଯାଉଥିବା କାଷ୍ଟିଙ୍ଗର ଧାଡ଼ି ଗୁଡ଼ିକୁ ପଢ଼ିଗଲେ। ତାଙ୍କର କୌତୁହଳକୁ ଶହେ ଗୁଣ ବଢ଼େଇଦେଇ ତାଙ୍କ ଆଖି ଆଗରେ ଝଲସି ଗଲା "ମିଷ୍ଟର ଇଣ୍ଡିଆ"। ଭବନାଥଙ୍କ ସ୍ନାୟୁ ତନ୍ତୁ ଗୁଡ଼ିକ ନିଶାଗ୍ରସ୍ତ ଭଳି ଉତ୍ତେଜିତ ହୋଇ ପୁଣି ଦବିଗଲେ। ଭବନାଥ ଠିକ୍ କରିନେଲେ ଯଦି ମିଷ୍ଟର ଇଣ୍ଡିଆ ଅଶରୀରୀ ତାହେଲେ ସିନେମା ଦେଖିଲେବି ତାଙ୍କୁ ଭେଟି ହେବନି। ଏଣୁ ସେ ପରିଚାରିକା ଦେଇଥିବା କଳା କନାର ଚଷମା ପିନ୍ଧି, ମହାରାଜା କୋଳରେ ଶୋଇଗଲେ।

# ଚା କ୍ୟାବିନ୍

ଏଠି ଚା ଆଉ ପାନ କ୍ୟାବିନ୍ ଗୁଡ଼ିକୁ ସବୁବେଳେ ଦେଖି ଦେଖି ଦେହସୁହା ହୋଇଗଲାଣି । ସକାଳ-ସନ୍ଧ୍ୟା ଚା, ପାନ, ବିଡ଼ି ପାଇଁ କ୍ୟାବିନ୍ ପାଖକୁ ଦଉଡ଼ିବାକୁ ହେଲେ ମଧ୍ୟ ସେମାନଙ୍କ ଅସ୍ତିତ୍ୱ ସମ୍ପର୍କରେ ମୋଟେ ସଚେତନ ହେଇ ହେଉନି । ଏଠିକାର ସହର, ମଫସଲ, ସହରତଳି ଓ ସହର ହୋଇ ଆସୁଥିବା ଗାଁ ସବୁଆଡ଼େ ଚା ଓ ପାନ କ୍ୟାବିନ୍ ମାଳ ମାଳ । 'ଚା କ୍ୟାବିନ୍' କଦାପି ନାମବାଚକ ଶବ୍ଦ ନୁହେଁ । ଏହା ଏକ ସାମଗ୍ରିକ ଓ ଜାତିବାଚକ ଅଭିବ୍ୟକ୍ତି । କ୍ୟାବିନ୍ ସହିତ କେବଳ ଚା'ପାନ କାହିଁକି, ବିଡ଼ି, ପିକା, ସିଗାରେଟ୍ ଠାରୁ ଗଞ୍ଜେଇ, ଭାଙ୍ଗ ବା ତା'ଠାରୁ ଅଧିକ ଗୁରୁତର ଦ୍ରବ୍ୟ ଓ ଗୁଣମାନ ଯୋଡ଼ା ଯାଇପାରେ । ଧରାଯାଉ ଚା କ୍ୟାବିନ୍ ନାଁ ହେଇପାରେ ତଥାପି ସେଇଠି ଦେଶି ସୋଡ଼ା ଠାରୁ ଆରମ୍ଭ କରି ଡବଲ୍ ଆମ୍ଲେଟ୍ ପର୍ଯ୍ୟନ୍ତ, ପାନ ବିଡ଼ିଠାରୁ ଡାବର୍ ଆମ୍ଲା କେଶତେଲ ପର୍ଯ୍ୟନ୍ତ ଯାବତୀୟ ସାମଗ୍ରୀ କିଣିବାକୁ ମିଳିପାରେ ।

ଚା କ୍ୟାବିନର ସ୍ଥାପତ୍ୟ ଶୈଳୀ ଅତି କ୍ଲୃପ୍ତ । ଏକ ବର୍ଗାକାର ବା ଆୟତାକାର ଫମ୍ପା ଚଉରସ ଉପରେ ତ୍ରିକୋଣାକାର ମଥାନ ବା ଦୋ ଚାଳି । ଗୋଟିଏ ଚତୁଷ୍ପଦ ଗୃହପାଳିତ ପ୍ରାଣୀଭଳି କ୍ୟାବିନ ସଦା ସର୍ବଦା ଚାରୋଟି ଖୁରା ଉପରେ ରାସ୍ତାକଡ଼ ମାନଙ୍କରେ ଠିଆ ହୋଇ ରହେ । ସମୟର କ୍ଷୟିଷ୍ଣୁ ଶକ୍ତିର ପ୍ରଭାବରେ ବା ଉଇମାନଙ୍କ ଗର୍ଭରେ ଗୋଟିଏ ଦୁଇଟି ଖୁରା ଲୀନ ହୋଇଗଲେ ଖଣ୍ଡିଆ ଇଟା ବା ପଥର ମାନଙ୍କ ଥାକ ଉପରେ ଆଶ୍ରାକରି କ୍ୟାବିନ ଗୁଡ଼ିକ ତିଷ୍ଠି ଯାଆନ୍ତି । ଆକାରରେ ଯେତେ ଛୋଟ

ହେଲେ ମଧ୍ୟ କ୍ୟାବିନ ଦୋ ମହଲା। ଉପର ମହଲାଟି ହିଁ କ୍ୟାବିନ ଓ ତଳ ମହଲା ବେଳେବେଳେ ବୁଲାକୁକୁରଙ୍କ ରାତ୍ରିଯାପନର ସ୍ଥଳୀ ତ ବେଳେ ବେଳେ କୋଇଲା, ଭଙ୍ଗାଟିଣ, ଛିଣ୍ଡାଅଖା, ଖାଲିଅମୂଲ ପେଟି ମାନଙ୍କ ରହିବା ସ୍ଥାନ। ଏଭଳି ଏକ ଅତି ମାମୁଲି ବସ୍ତୁ ଯେ ଭାରତୀୟ ସଂସ୍କୃତିର ପ୍ରତୀକ ଭାବେ ସୁଇଡ଼େନରେ ସ୍ଥାନ ପାଇପାରିବ - ତାହା ଓଡ଼ିଶାର ଶିଳ୍ପୀ, କଳାପ୍ରେମୀ ଓ ବୁଦ୍ଧିଜୀବୀମାନଙ୍କୁ ଆଚମ୍ବିତ କରିପକେଇଲା।

ଏଭଳି ଏକ ବିକୃତ ଚିନ୍ତା ଓ ଶୈଳ୍ପିକ କଳ୍ପନାର ଡ଼ିଜାଇନର ଭବନାଥ ବହୁ ସମାଲୋଚନାର ଶରବ୍ୟ ହେଲେ। ମନେ ହେଲା କ୍ୟାବିନଗୁଡ଼ିକୁ ପ୍ରଦର୍ଶନୀରେ ସ୍ଥାନ ଦେଇ ଭବନାଥ ପ୍ରକାଣ୍ଡ ଭୁଲ କରି ପକେଇଛନ୍ତି। ପୁରୁଖା ଓ ପୁରୁଣା ଶିଳ୍ପୀ ଠଉରେଇ ନେଲେ ଯେ ଭବନାଥଙ୍କ ସମୁଦାୟ ଲୋକପ୍ରିୟ କଳା ପ୍ରଦର୍ଶନୀଟି ବୋଧହୁଏ ଏହିଭଳି ଅର୍ବାଚୀନ, ଅପାଂକ୍ତେୟ ଓ ନିମ୍ନରୁଚି କଳା ସାମଗ୍ରୀର ସମଷ୍ଟି। ଭବନାଥ ଯେମିତି ଡ଼ହରା ସେମିତି ଥୋଡ଼େ ଅଜବବସ୍ତୁ ସଂଗ୍ରହ କରି ପ୍ରଦର୍ଶନୀ କରୁଛି। ଯୁବଶିଳ୍ପୀ ମାନେ ଆଧୁନିକ ଦୃଷ୍ଟିଭଙ୍ଗିରେ କ୍ୟାବିନ ଗୁଡ଼ିକ ପର୍ଯ୍ୟାଲୋଚନା କଲେ ଓ ମନ୍ତବ୍ୟ ଦେଲେ - ଏଗୁଡ଼ିକ ସୂକ୍ଷ୍ମ କଳାର ପ୍ରତୀକ ନ ହେଲେ ମଧ୍ୟ କୌତୁହଳୋଦ୍ଦୀପକ।

କ୍ୟାବିନ ଗୁଡ଼ିକୁ ସମାଲୋଚନାର ଘେରରୁ ମୁକ୍ତ କରିବା ପାଇଁ ଭବନାଥ ସେଗୁଡ଼ିକ ସପକ୍ଷରେ ତଥ୍ୟ ଯୋଗାଡ଼ କରିବାକୁ ଲାଗିଲେ। କ୍ୟାବିନ ଶବ୍ଦଟି ଇଂରାଜୀ ଓ କାଳକ୍ରମେ କେବିନ ଓ କାବିନ ହୋଇ ଆମ ଓଡ଼ିଆଭାଷା ଓ ସଂସ୍କୃତିରେ ମିଶିଗଲାଣି। ଏବେ ତା ବିହୁନେ ଆଉ ଚଳି ହେଉନି। ଅନୁମାନ କରି ହେଉଛି କ୍ୟାବିନ୍‌ର ପରିକଳ୍ପନା ଓ ସ୍ଥିତି ବେଶି ହେଲେ ଦେଢ଼ ଶହରୁ ଦୁଇଶହ ବର୍ଷର। ତେଣୁ ଧରି ନିଆଯିବ ଯେ ଏହା ଶିଳ୍ପ ବିପ୍ଳବ

ପରବର୍ତ୍ତୀ ବର୍ଦ୍ଧିଷ୍ଣୁ ନଗର ସଭ୍ୟତାର ପ୍ରତୀକ। କ୍ୟାବିନ ଗୁଡ଼ିକୁ ଯେ କେହି ସହୃଦୟତାର ସହିତ ଦେଖିଛି ବା ପାନ ବାଲା, ପାନ ଭାଙ୍ଗିବା ଭିତରେ କ୍ୟାବିନ ଚାରିପାଖ ବୁଲି ଆସିଛି ବା ତା'ଆଗରେ ପଡ଼ିଥିବା କାଠ ଢ଼ାବଲ ଓ ଲମ୍ୱା କାଠ ପଟାର ବେଞ୍ଚ ଉପରେ ବସି ଚା' ପିଉ ପିଉ କ୍ୟାବିନ ଭିତରେ ପ୍ରଦର୍ଶିତ ହୋଇଥିବା ମିଥୁନ ବା ଶ୍ରୀଦେବୀଙ୍କର ଗୋରା ମୁହଁ ଆଡ଼କୁ ଅନେଇଛି ସେ ନିଶ୍ଚିତ ଭାବେ ଏଗୁଡ଼ିକୁ ସାଧାରଣ ନ କହି ଅସାଧାରଣ କହିବ। ଜୁଆଳି ଭଳି ହକ୍ରେ ନିଶ ରଖିଥିବା, ''ବାଘ ଭଳି ଦୃଢ଼'' ମଣିଷର ଚା ପିଇବାର ଉଦ୍ଦାମତା ବା ରେକ୍ସୋନା ସାବୁନ ଲଗେଇ ଲଗେଇ ସୁନ୍ଦର 'ତ୍ୱଚା' ହେଇଯାଇଥିବା ଚିତ୍ରତାରକାର ସଫେଦ ମୁହଁ ବା ବରଯାତ୍ରୀ ଚର୍ଚ୍ଚା ପାଇଁ ସର୍ତ୍ତ କରିଥିବା 'ପାନ ବାହାର୍' ର ପ୍ୟାକେଟ ଗୁଡ଼ିକ ଉପରେ ନିଜର ଦାଢ଼ିଆ ମୁହଁ ଛାପିଥିବା ଲୋକଟିର ଔଦ୍ଧତ୍ୟ ଯିଏ ନ ଦେଖିଛି, ସେ କ୍ୟାବିନର ଶୈଳ୍ପିକ ମହତ୍ତ୍ୱ ବୁଝିପାରିବନି।

ଏ ହେଲା ମୋଟାମୋଟି କ୍ୟାବିନ ଭିତରର କଥା। କ୍ୟାବିନ ବାହାରେ ତା'ର କାଠ ପଟା ବା ଟିଣ କାନ୍ଥ ମାନଙ୍କରେ ଯୁରିଆ ସାର, ଇନ୍ଦିରାଙ୍କ ଅନ୍ତିମ ଭାଷଣର ''ମୋ ପ୍ରତିରକ୍ତ ବିନ୍ଦୁ...'' ସହିତ କଂଗ୍ରେସର ନିର୍ବାଚନ ସଂକେତ ପାଞ୍ଜାକୁ ଜନତା ଦଳର ଚକ ଓ ବିଜେପିର ପଦ୍ମ, ଗବର ସିଂ ର 'ସୋଲେ' ବା ରାଜକପୂରଙ୍କ 'ମେରା ନାମ ଜୋକର' ର ରଙ୍ଗିନ ପୋଷ୍ଟର। ଯଦି ପୋଷ୍ଟର କିଛି ଛିଣ୍ଡି ଯାଇଛି ଭିତରୁ ଦେଖାଯିବ ପେଟର ସମସ୍ତ ଗୋଳମାଳ ପାଇଁ ସେବ୍ୟ ଭାସ୍କର ଲବଣ ବା ଚ୍ୟବନ ପ୍ରାସ ବା ଏଭାରେଡ଼ି ବ୍ୟାଟେରୀର ଛବି। କ୍ୟାବିନଟିକୁ ଆଉ ଟିକିଏ ଆତ୍ମୀୟତାର ସହିତ ଗବେଷକର ଦୃଷ୍ଟିଭଙ୍ଗୀ ନେଇ ଦେଖିଲେ, ଏଇଠୁ ମିଳିବ ଦେଶୀ ପାଓ୍ୱାର ସୋଡ଼ା, ବ୍ଲୁ ଫିଲ୍ମସ୍‌ର କ୍ୟାସେଟ୍

ଏବଂ 'ପିଚ୍ଛିଳ ଝିଲ୍ଲୀ' ଯୁକ୍ତ ପରିବାର ନିୟନ୍ତ୍ରଣର ଅମୋଘ ଅସ୍ତ୍ର।

ଏଇତକ କଥାରୁ ଅନୁମାନ କରିହେବ ଯେ କ୍ୟାବିନ ମଣିଷର କାୟିକ ମାନସିକ ଭାରସାମ୍ୟ ରଖିବା ସାଙ୍ଗକୁ ତାର ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ମୂଲ୍ୟବୋଧକୁ ଉଜ୍ଜୀବିତ କରେ। ପୁଣି ଚିତ୍ତବିନୋଦନର ସମସ୍ତ ତାତ୍‌କାଳିକ ବ୍ୟବସ୍ଥାର ବିଜ୍ଞାପନ ଦେଇ ଯୁବ ପ୍ରାଣକୁ ରସାପ୍ଳୁତ କରି ଏ ଦେଶର ଐତିହ୍ୟରେ ଏକ ଯୁଗୋପଯୋଗୀ ସଫଳ କ୍ରିୟାଶୀଳ ସ୍ଥାପତ୍ୟ ଓ କଳା ସାମଗ୍ରୀରୂପେ ଗୃହୀତ ହୋଇ ସାରିଛି। ହଁ, କ୍ୟାବିନ ପୁଣି ଭାରତୀୟ ଦର୍ଶନର ଜୀବନ୍ତ ପ୍ରତିଫଳନ - ଏକ ଅସ୍ଥାୟୀ, କ୍ଷଣିକ, ଏଇଠି ଅଛି ଅଥଚ ଏଇଠି ନାହିଁ ଭାବନାର ଦ୍ୟୋତକ, ମ୍ୟୁନିସିପାଲିଟି କର୍ତ୍ତୃପକ୍ଷଙ୍କ ଆଶୀର୍ବାଦରେ ପଲ୍ଲବିତ, ଉଠାଦୋକାନୀର ମାନବିକ ଚେତନାରେ ଶାଣିତ କ୍ୟାବିନ ହିଁ ଯେ ଭାରତୀୟ ସଂସ୍କୃତିର ପ୍ରତୀକ ହୋଇପାରିବ, ଏ ସଂପର୍କରେ ଭବନାଥଙ୍କ ତିଳେ ହେଲେ ସନ୍ଦେହ ନ ଥିଲା। ଏଣୁ ଉପର ଠାଉରିଆ ତଥାକଥିତ ସମାଲୋଚନାରେ ସେ ବିଚଳିତ ନ ଥିଲେ।

ତୁଣ୍ଡ ବାଇଦ ସହସ୍ର କୋଶକୁ ପ୍ରମାଣିତ କରି ଭବନାଥଙ୍କ କ୍ୟାବିନ ସୁଇଡ଼େନ ନେବା କଥା ଭୁବନେଶ୍ୱର ସହରରେ ଚହଟି ଗଲା। ଭବନାଥ ଏବେ ଯେଉଁ ଆଡ଼କୁ ଗଲେ ତାଙ୍କ ଆଖିରେ କାଠ କ୍ୟାବିନ ଗୁଡ଼ିକ ଆହୁରି ଆପଣାର ହୋଇ ଉଠିଲେ। ଭବନାଥ ପାନ ଖାଇବା ନାଁରେ, ଚା ଖାଇବା ନାଁରେ ବିଭିନ୍ନ କ୍ୟାବିନ ଗୁଡ଼ିକ ପାଖରେ ପହଞ୍ଚିଲେ। ଦାଦା, ରୋହିତ, ସଂଗ୍ରାମ ସମସ୍ତେ କ୍ୟାବିନ ଖୋଜିବାରେ ଲାଗିଲେ। ଚା, ପାନ କ୍ୟାବିନ ବାଲା ଭବନାଥ ଚାଲୁ ଚା ମାଗିଲେ, ସ୍ପେସାଲ ଚା ଦେଲେ, ପାନରେ ଅଳେଇଚ ଲବଙ୍ଗ ଗୋଟିଏ ବଦଳରେ ଦୁଇ ଚାରିଟା ଲେଖା ପୁରେଇ ହାତକୁ ବଢ଼େଇଲେ। ବୋପାରାଣ ଢ଼େଙ୍କି ଗିଳ। ଭବନାଥ

ଦିନକୁ ଦଶ ପନ୍ଦର ଚା ପିଇଲେ। ଗ୍ୟାଷ୍ଟ୍ରିକ୍ ବଢ଼ିଗଲା। ଆଉ ପାନ ଚୋବାଇ ଚୋବାଇ ୦୦ ନାଳ ପଡ଼ିଗଲା। ଏପଟ କ୍ୟାବିନରେ ଚା ପିଇଲେ ରାସ୍ତା ସେପଟ ବାଲା ଡ଼ାକ ପକେଇଲେ, "ଆଜ୍ଞା ଏଇ ଆଡ଼କୁ ଦୃଷ୍ଟି ପଡୁ"। ଅସଲ କଥା ହେଲା ଭବନାଥ ନୂଆ ଅଳପ ବୟସର କ୍ୟାବିନ ଚାହୁଁ ନ ଥିଲେ। ଏଣୁ ଭଙ୍ଗା, ଦଦରା କ୍ୟାବିନର ମାଲିକ ମାନେ ଝଂଝାଳରୁ ମୁକ୍ତି ପାଇବା ପାଇଁ ଭବନାଥଙ୍କୁ ପଟେଇବାରେ ଲାଗିଲେ। ଏଣିକି ନାଁରେ ଭବନାଥ ମଧ୍ୟ ଖାଲି ଭଙ୍ଗା, ଶିଉଳି ଧରା, ଛତୁଫୁଟା, ଜଙ୍କ୍ ଲଗା ଟିଣ ବାଡ଼ିଆ କ୍ୟାବିନ ଖୋଜିଲେ। ରବୀନ୍ଦ୍ର ମଣ୍ଡପ ଛକ, ତିନି ନମ୍ବର ମାଳି ସାହି, କଳ୍ପନା ଅଞ୍ଚଳ, ପୁରୁଣା ଭୁବନେଶ୍ୱର କ୍ଲବ ପାଖା ପାଖି ଗଳିକନ୍ଦି ଦେଖି ସାରିଲା ପରେ ସ୍ଥିର ହେଲା ଯେ ସା'ନ୍ତରାପୁର ଛକର ଗଦା ଭାଇନାଙ୍କ ପାନ କ୍ୟାବିନ, ରବୀନ୍ଦ୍ର ମଣ୍ଡପ ଛକର କୁନା ଭାଇନାଙ୍କ ଚା କ୍ୟାବିନ, ପୁରୁଣା ଷ୍ଟେସନ ପାଖ ନବ ବାରିକର ଉଠା ସ୍ୟାଲୁନ୍ ଓ ମାଳି ସାହି ସଂଲଗ୍ନ ଛକରେ ବହୁଦିନରୁ ତାଲାବନ୍ଦ ହେଇ ପଡ଼ିଥିବା କୀର୍ତ୍ତନ ସେଠୀଙ୍କ ଲଣ୍ଡ୍ରି, କ୍ୟାବିନ ଗୁଡ଼ିକ ସୁଇଡ଼େନ ଯିବ। ଦିନ କେଇଟା ଭିତରେ ଚିହ୍ନଟ ହେଇଥିବା କ୍ୟାବିନ ଗୁଡ଼ିକ ଟ୍ରଲିରେ ଲଦା ହେଇ ଡ଼ିକେ କଲେଜ ହତା ଭିତରେ ପହଞ୍ଚିଗଲେ। ଭବନାଥଙ୍କ ସହକର୍ମୀମାନେ ଶିକ୍ଷୀ ହେଇଥିଲେ ବି ନାକ ଟେକିଲେ। ପାଟି ଖୋଲି ସିନା କିଛି କହିଲେନି, କଲେଜ ପାଖ ରବି ଚା ଦୋକାନରେ ଟୀକା ଟିପ୍ପଣୀ ବାଢ଼ିଲେ। ଭବନାଥ ସତେରେ ପାଗଳ ନା ପଇସା ମାରିବା ସକାଶେ ଏଇ ଭଙ୍ଗା ଚା କ୍ୟାବିନ ତିନି ଚାରୋଟି ଆଣି ସୁଇଡ଼େନ ନେବାପାଇ ଜମା କଲାଣି ? ଭଙ୍ଗା କ୍ୟାବିନ ସାଙ୍ଗକୁ ଗୋଟିଏ ଦଦରା ଅଟୋରିକ୍ସା ଓ ପେଡ଼ାଲ ବାଲା ସାଇକେଲ ରିକ୍ସା ମଧ୍ୟ କିଣାହେଇ ଆସିଛି। ଡ଼ିକେ କଲେଜର ବଡ଼ବାବୁ ଆକାଶ ଓ ସାନବାବୁ ପାତାଳ ଭବନାଥଙ୍କୁ

ସବୁବେଳେ କୋଟେସନ୍ ଓ ଟେଣ୍ଡର କଥା ଶୁଣଉଚନ୍ତି । ଭବନାଥଙ୍କ ହିସାବ ଓଲଟା । ଯେତେ ଭଙ୍ଗା, ଦଦରା, ପୁରୁଣା, ଉଇଖିଆ ଓ ଛତୁଉଠା କ୍ୟାବିନ ତାର ସେତେ ବେଶୀ କିମତ୍ । ଏଇ ହେଲା ମ୍ୟୁଜିୟମ୍ ବାଲାଙ୍କ ହିସାବ । ଭବନାଥ ତ କ୍ୟାବିନ କିଣୁନାହାନ୍ତି, କିଣୁଛନ୍ତି ଏକ ଆନ୍ତର୍ଜାତିକ ପ୍ରଦର୍ଶନୀ ପାଇଁ କଳା ସାମଗ୍ରୀ । ଟେଣ୍ଡରରେ କଳା ସୃଷ୍ଟି କେଉଁଠି କିଣା ହେଇଚି ଯେ ଭବନାଥ କିଣିବେ । ଅଡ଼ିଟ୍ ବାଲା ମାରନ୍ତୁ ବା ତାରନ୍ତୁ ।

ଯାଉଣୁ ଆସୁଣୁ ଭବନାଥ କ୍ୟାବିନ୍‌ଗୁଡ଼ିକୁ ଅତି ଆତ୍ମୀୟତାର ସହିତ ଚାହିଁରହୁଛନ୍ତି । ଗଦା ଭାଇନା, କୁନା ଭାଇନା, ନବ ବାରିକ ଓ କୀର୍ତ୍ତନ ସେଠୀଙ୍କ କ୍ୟାବିନ ଗୁଡ଼ିକ ସେମାନଙ୍କ ମାଲିକ ମାନଙ୍କର ଆସକ୍ତିର ଡ଼ୋର ଛିଣ୍ଡେଇ ଭବନାଥଙ୍କ ପାଖରେ ଅଚିହ୍ନା ଅଚିହ୍ନା ହେଉଛନ୍ତି । ନିଜ ଗାଁ ଗଣ୍ଡା, ସାଇ ପଡ଼ିଶା ଓ ବାପା ବୋଉକୁ ଛାଡ଼ି ଝିଅ ଆସିଚି ବୋହୂ ହେଇ । ହାତେ ଓଢ଼ଣା ଟାଣି ଠିଆ ହେଇଛି । ସଙ୍କୁଚିଲେ, ନିଉଛାଳିଲେ ଗୋଡ଼ ବଢ଼େଇବ । କି ଭାଗ୍ୟ ଏଇ କ୍ୟାବିନ ଗୁଡ଼ିକର । ଏଇଠି ଅଇଁଠା ଖଲିପତ୍ର ଚାଟୁଥିଲେ, ଏବେ କାଶୀ-ଯାତ୍ରା । କ୍ୟାବିନ ଗୁଡ଼ିକୁ ସମସ୍ତଙ୍କ ଈର୍ଷା । ଦି ଆଖିରେ ସହି ପାରୁନାହାନ୍ତି । ଏଣେ ଭବନାଥ ଲାଗି ପଡ଼ିଛନ୍ତି କ୍ୟାବିନ ଗୁଡ଼ିକର କଳାତ୍ମକ ମାନବୃଦ୍ଧି କରିବାରେ । ଆଧାପକ ବଳରାମ ମହାରଥୀ ଓ ଛାତ୍ର ମାନସ ଜେନା ଏଭାରେଡ଼ି ବ୍ୟାଟେରୀ ଠାରୁ ଆରମ୍ଭ କରି ବିଶ୍ୱମୋହିନୀ ଗୁଡ଼ାଖୁ ପର୍ଯ୍ୟନ୍ତ ଯେତେ ଆନୁସଙ୍ଗିକ ଚିତ୍ର କ୍ୟାବିନ ବାହାର ପଟେ ଆଙ୍କି ଦେଲେଣି । ହେମାମାଳିନୀ ଗୁଡ଼ାଖୁ ଡ଼ିବା ଧରି ତାର ସଫେଦ ଦାନ୍ତ ମେଞ୍ଚାକ ଦେଖେଇ ହଉଚି । କଳା ବିଲେଇଟି ଏଭାରେଡ଼ି ବ୍ୟାଟେରୀ ପାଖରେ କଟମଟ କରି ଚାହିଁଛି । ମୋଟା ରୋଟା ମାଂସପେଶୀ ଥିବା ମରଦଟୀ କ୍ୟାବିନ ପଛ ପଟା ଉପରେ ଦେହ ମୁଣ୍ଡରେ ଲାଇଫ ବଏ

ଲଗେଇ ଲଗେଇ କ୍ୟାବିନଟାକୁ ସଫାସୁତୁରା `କରି ଦେଲାଣି। ସେମିତି ଡ଼ାବର ଆମଲା ଓ ମହାଲକ୍ଷ୍ମୀ ବିଳାସ କେଶ ତୈଳ ମାଖି ମାଖି ପିଚା ଉପରକୁ ବାଳ ଲମ୍ବି ଯାଇଥିବା ଗୋରୀ ସ୍ତ୍ରୀ ଲୋକଟିର ରୂପ ଯୌବନରେ କୀର୍ତ୍ତନ ସେଠୀଙ୍କର କ୍ଷାରପାଣି ଖିଆ କ୍ୟାବିନଟି ସତେ ଯିମିତି ମହକି ଉଠୁଛି। ବିଦେଶ ଯିବେତ, କ୍ୟାବିନ ଗୁଡ଼ିକ ସଜେଇ ହେଉଛନ୍ତି। ହଲେଇ ଗେଲେଇ ହେଉଛନ୍ତି। ଧନ୍ୟ ଧନ୍ୟ ଭାରତ ଉତ୍ସବ। ତୋର ଅପାର ମହିମା। ତୋ କୃପାରୁ ପଙ୍ଗୁ ଗିରି ଲଂଘିଲେ। ଜଡ଼ା କାଲ ବାଗ୍ମୀ ବୋଲେଇଲେ। ଗୋଟିଏ ଅବାଞ୍ଛିତ ଅନାମଧେୟ ଚିତ୍ରକର ଭବନାଥ ଆଇ.ଏ.ଏସ୍ ନ ହେଇ ମଧ ଲୋକପ୍ରିୟ କଳା ପ୍ରଦର୍ଶନୀର କମିଶନର କହିହେଲେ, ଆଉ ଶେଷରେ ଏହି ହତଭାଗା କାଠକ୍ୟାବିନ ଗୁଡ଼ିକ ଏଣ୍ଟିକ୍ କଳା ନାମ ଧାରଣ କରି ଷ୍ଟକ୍‌ହୋମ ଯିବାପାଇଁ ଗୋଡ଼ ବଢ଼େଇଲେଣି। ଯୁଗଟା ଓଲଟି ଗଲା। କଳିଙ୍ଗଦେଶର କଳା ପଛରେ ପଡ଼ିଲା, ଆଉ ନବ ବାରିକର ପାନ କ୍ୟାବିନ ଭାରତୀୟ ସଂସ୍କୃତିର ପ୍ରତୀକ ହେଇଗଲା।

ସତକୁ ସତ କ୍ୟାବିନ ଗୁଡ଼ିକ ଉପରେ ମାଟିଆ କାଗଜ, ପଲିଥିନ ଛରି ଗୁଡ଼ିଆ ହେଇ ପ୍ୟାକିଙ୍ଗ୍ ଆରମ୍ଭ ହେଲା। କ୍ୟାବିନ୍ ଭିତରର ଦେଶଜ ବାସ୍ନାକୁ ରକ୍ଷା କରିବା ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରାଗଲା। ଏଇତକ ତ ପଇସା। ନୂଆ କ୍ୟାବିନରେ ଏହି ସନ୍ତୁଳନ ଆସନ୍ତା କୁଆଡୁ? କ୍ୟାବିନର ଅବୟବ ରୂପ ଓ ମହକ ଧୀରେ ଧୀରେ ପ୍ୟାକିଙ୍ଗର ବଳୟ ଭିତରେ ଆବଦ୍ଧ ହେଇଗଲା। ବାହାରୁ ଏବେ ମନେ ହେଲା ସତେ ଯିମିତି ଲକ୍ଷ ଲକ୍ଷ ଟଙ୍କା ମୂଲ୍ୟର ମହାର୍ଘ୍ୟ କଳାକୃତି। "ହ୍ୟାଣ୍ଡଲ ଉଇଥ୍ କେଅାର" ଲେଖା ହୋଇ ଅପେକ୍ଷା କରିଛନ୍ତି, ଜାହାଜରେ ଚଢ଼ି ବିଦେଶ ଭ୍ରମଣରେ ଯିବେ। ଏବେ ଯିଏ କ୍ୟାବିନକୁ ଦେଖିଲା ସେ କ୍ୟାବିନ ଠାରୁ ନିଜକୁ

ହେୟ ଓ ଅପାଂକ୍ତେୟ ମନେ କଲା। କ୍ୟାବିନ ଗୁଡ଼ିକ ପାଣି ଜାହାଜ, ଉଡ଼ାଜାହାଜ ହେଇ ଷ୍ଟକ୍‌ହୋମ୍‌ରେ ପହଞ୍ଚିଲେ ଓ କୁଲଟର୍ ହ୍ୟୁସେଟ୍‌ରେ ସସମ୍ମାନେ ପ୍ରବେଶ କଲେ। ଏଇଠି ସେମାନଙ୍କୁ ଅନାବରଣ କରାଗଲା। ଲୋକପ୍ରିୟ କଳାପ୍ରଦର୍ଶନୀର ଭାରତୀୟ ବଜାରର ରାସ୍ତା କଡ଼େ କଡ଼େ ସେଗୁଡ଼ିକ ଗୋଡ଼ ଭାଙ୍ଗି ଠିଆ ହେଲେ ଯିମିତି ରବୀନ୍ଦ୍ର ମଣ୍ଡପ ଛକ, ମାଳି ସାହି ଓ ଷ୍ଟେସନ୍ ସ୍କୋୟାର ପାଖରେ ସେମାନେ ଦୁଇ ତିନି ଦଶନ୍ଧି ଧରି ଠିଆହେଇ ରହିଥିଲେ। କ୍ୟାବିନ୍ ଭିତରଯାକ ଫାଙ୍କା, କିନ୍ତୁ ମୃଦୁ ମୃଦୁ ମହକରେ ହ୍ୟୁସେଟର ପରିବେଶ ଭାରତ ଭାରତ ହେଇ ଉଠିଲା।

ରୋହିତ, ସଂଗ୍ରାମ ହିନ୍ଦି ସିନେମା ପୋଷ୍ଟର, ଦୁର୍ଗା, ଗଣେଶ, ମହାତ୍ମା ଗାନ୍ଧୀ, ପଣ୍ଡିତ ନେହେରୁଙ୍କ କ୍ୟାଲେଣ୍ଡରରେ କ୍ୟାବିନ ଭିତର କାନ୍ଥଗୁଡ଼ିକ ଭରିଦେଲେ। ତା ସାଙ୍ଗକୁ ଲକ୍ଷ୍ମୀ ବିଡ଼ି, କ୍ୟାଭେଣ୍ଡରସ୍ ସିଗାରେଟ ଖୋଳ। ଅମିତାଭ, ମନୋଜ କୁମାର, ଶ୍ରୀଦେବୀ ଓ ନୂତନଙ୍କ ଛୋଟ ଛୋଟ ପୋଟ୍ରେଟ୍ ମଝିରେ ମଝିରେ ଛାପି ଦିଆଗଲା। ହାତ ପାଆନ୍ତାରେ ରୋହିତ ଯାହା ପାଇଲେ କ୍ୟାବିନ କାନ୍ଥରେ ଚପେଇ ଦେଲେ। ଚିତ୍ରତାରକା, ରାଜନୈତିକ ନେତା, ପ୍ରାତଃ ସ୍ମରଣୀୟ ଚରିତ୍ର, ଦେବଦେବୀ, ବିଡ଼ି, ସିଗାରେଟ ଲେବଲ ଇତ୍ୟାଦି ଯାବତୀୟ ଚିତ୍ରିତ, ମୁଦ୍ରିତ ସାମଗ୍ରୀରେ କ୍ୟାବିନର ଅର୍ନ୍ତଭାଗକୁ ଆଚ୍ଛାଦିତ କରି ଦିଆଗଲା। କ୍ୟାବିନ୍ ଗୁଡ଼ିକର ନିଜସ୍ୱ ଚାରିତ୍ରିକ ମୂଲ୍ୟବୋଧକୁ ସମ୍ମାନ ଦେଇ ସେଗୁଡ଼ିକ 'ଗୁଣକର୍ମ' ଅନୁସାରେ ଚାରୋଟି ପୃଥକ୍ ପୃଥକ୍ ଅନୁଷ୍ଠାନରେ ବାଣ୍ଟି ଦିଆଗଲା। ସେଗୁଡ଼ିକ ହେଲା, ଗଦା ଭାଇନାଙ୍କ ପାନ ଦୋକାନ, କୁନା ଭାଇନାଙ୍କ ଚା ଦୋକାନ, ନବ ବାରିକର ସ୍ୟାଲୁନ୍ ଓ କୀର୍ତ୍ତନ ସେଠୀଙ୍କ ଲଣ୍ଡ୍ରି।

ସକାଳୁ ପାନ ଦୋକାନ ଚା ଦୋକାନ ଖୋଲିବା ପୂର୍ବରୁ

ଯେମିତି ସାଜସଜାର ପର୍ବଟିଏ ଆରମ୍ଭ ହେଇଯାଏ, ରୋହିତ ଓ ସଂଗ୍ରାମ ସେମିତି ବିଭିନ୍ନ ଦୋକାନକୁ ମାନିଲା ଭଳି ବିଭିନ୍ନ ସରଂଜାମ ଓ ଆନୁସଙ୍ଗିକ ଜିନିଷ ପତ୍ର ଦେଖି ଚାହିଁ ସଜଡ଼ା ସଜଡ଼ି କଲେ। ଯେତେକ ଖାଲି ଡ଼ିବା ଆସିଥିଲା ସେଗୁଡ଼ିକୁ ଏମୁଣ୍ଡ ସେମୁଣ୍ଡ ଲମ୍ୱେଇ ଦିଆଗଲା। ତା ସାଙ୍ଗକୁ ଦିଆସିଲି ଓ ସିଗାରେଟ ଖୋଳ। ସେସବୁ ତାଲିକା କରି ବସିଲେ ବହି ସରିଯିବ। ପାନ ଦୋକାନରେ ବାଉଁଶ ପାଛିଆରେ ବଙ୍ଗାଳୀ ଛାଚି ପାନ, ଦେଶୀ ପାନର କାଟା, ଚୂନ କାଠୁଆ, ହାତେ ଲମ୍ୱର ତାଳ ବାହୁଙ୍ଗାର ଛେଚା, ଖଇର ପିଇ ପିଇ ପାକିଳି ଯାଇଥିବା ଗାମୁଛା, ମସଲା ଭିତରେ ପାଣ୍ଡିଆ ସୁବୁଦ୍ଧି, ଗୋପାଳ, ଶିବଦାଦା, ସ୍ୱାଦିଷ୍ଟ ଜାଫ୍ରାନ୍, ଲକ୍ଷ୍ମୀ ବିଡ଼ି, ହାତବଳା ପିକା, ରେକ୍ସୋନା, ହମାମ୍, ଲକ୍ସ ସାବୁନ୍, ଆଫଗାନ କାଶ୍ମୀର ସ୍ନୋ, ନଖ ପଚା ରଙ୍ଗ, ଅଳତା ଆହୁ, ତା ସାଙ୍ଗକୁ ଡ଼ାବର ଆମଲା ଓ ମହାଲକ୍ଷ୍ମୀ ବିଳାସ କେଶ ତେଲ। ବାଟରେ ତେଲ ଶିଶି ପ୍ୟାକେଟ ଓଲଟି ପଡ଼ି ଦି ଚାରିଟା ରଫା ହେଇଯାଇଛି। ପ୍ୟାକେଟ୍‌ଟା ଯାକ ତେଲ ଜୁବୁବୁବୁ। ମହମହ ବାସୁଛି। ମସଲା, ପିକା ଏବେ ତେଲ ବାସ୍ନାରେ କ୍ୟାବିନ୍‌ଟା ମହକି ଉଠିଲା ଓ କୁଲଟର୍ ହ୍ୟୁସେଟ୍ ସାରା ଚରିଗଲା। ଖାଲି ବାସନା। ମନେ ହେଲା ଭୁବନେଶ୍ୱରର ସାରା ମାଳି ସାହିର ଲଳନା ମାନେ ଉଠି ଆସିଚନ୍ତି ଏଇ କୁଲ୍‌ଟର୍ ହ୍ୟୁସେଟ୍ ଭିତରକୁ। ଶିଶି, ମାର୍ଗାରିଏତା, ପୋଂଗଲ ଓ ଅନ୍ୟାନ୍ୟ ମାନେ ଉର୍ଦ୍ଧ୍ୱନାସା ହେଇ ପ୍ରଦର୍ଶନୀ ଘର ଭିତରେ ଏମୁଣ୍ଡ ସେମୁଣ୍ଡ ପହଁରି ଗଲେ।

ତା ପରେ ଚା କ୍ୟାବିନ ପାଳି ପଡ଼ିଲା। ଯେତେକ ମସିଆ, ଲୁଚା କୁଚା, ଚେପଟା ରସ ହାଣ୍ଡି, କେଟ୍‌ଲି, ଗିଲାସ୍, ଡ଼ଙ୍କି ଅଣାଯାଇଥିଲା ଏଇ କ୍ୟାବିନ୍ ଭିତରେ ସଜାଡ଼ି ଦିଆଗଲା। ମନେହେଲା ଦୋକାନଟି ମାନ୍ଧାତା ଅମଳର। କୁଲଟର୍ ହ୍ୟୁସେଟ ବାଲା କ୍ୟାବିନ୍

ଭିତରେ ନିଆଁ ପାଣି କାରବାର କରିବା ପାଇଁ ରୋକ୍‌ଠୋକ୍ ମନା କରିଦେଇଥିଲେ। ମିଛି ମିଛିକା ଇଟା ଓ ମାଟିର ଚୁଲି ତିଆରି ହେଲା। ରୋହିତ ଅଖାରେ ଆଣିଥିବା ଦରପୋଡ଼ା ଅଙ୍ଗାର, ପାଉଁଶ, ଡ଼ିକାସିନ ଖଦା ଚୁଲି ପାଖରେ କୁଢ଼େଇ ଦେଲେ। କଳା ରଙ୍ଗ ଲଗେଇ ନୂଆ ଚୁଲିକୁ ପୁରୁଣା କରିଦିଆଗଲା। କ୍ୟାବିନ୍ ବାଁ ପଟେ ମାଟି ଗିଲାସ ଭରି ହେଇଥିବା ଚାରିଟା ବଡ଼ ବଡ଼ ଟୋକେଇ ଜମା କରିଦିଆଗଲା। କ୍ୟାବିନ୍ ଭିତରର ଥାକରେ ଖାଣ୍ଟି ବୁକ୍‌ବଣ୍ଡ ପତି ବାଲା ଚା ପ୍ୟାକେଟ୍ ଗୁଡ଼ିକ ଧାଡ଼ି ମୁଣ୍ଡିଆ କରି ରଖିଦିଆଗଲା। ରୋହିତ ଜାଣି ଜାଣି ଚିନି ଅମୁଲ ଚା ଗୁଣ୍ଡ ଏଣେ ତେଣେ ଢ଼ଳା ଢ଼ଳି କଲେ ଓ ଚା ଛଣା ମସିଆ କନାକୁ ଚୁଲି ଉପରେ ଶୁଖେଇଲେ।

ଆଉ ରହିଲା ସ୍ୟାଲୁନ୍ ଓ ଲଣ୍ଡ୍ରି। ସେଗୁଡ଼ିକ ନିଜ ପାଂରଂପରିକ ଢ଼ଙ୍ଗରେ ସଜେଇ ହେଇ ମଜ୍‌ଗୁଲ ହେଇ ଉଠିଲେ। ସ୍ୟାଲୁନ୍ ରୁଢ଼ ଗୁଣ୍ଡ ଠାରୁ ଆରମ୍ଭ କରି ଦାଢ଼ି ଖିଅର ପୋଛା କାଗଜ ପର୍ଯ୍ୟନ୍ତ ଯାବତୀୟ ଅପଦାର୍ଥ ଭବନାଥଙ୍କ ତାଲିକାରେ ସ୍ଥାନ ପାଇଥିଲା। ସ୍ୟାଲୁନର ଛଉ ଛଉଆ ଫଟା ଦର୍ପଣ, ରୁମ ଉପୁଡ଼ା କୁକୁରର ପିଠି ଭଳି ଘସିଆ "ଟରକିସ୍ ଟାୱାଲ୍" ଧଇଁପେଲା ଅଘୁରା କାଠ ଚୌକି ଏବଂ ସର୍ବୋପରି ତଲୱାର, ଫ୍ରେଞ୍ଚକଟ୍, ହାୱାଇ କଟ୍ ପ୍ରଭୃତିର ମଡ଼େଲ ଚିତ୍ର ଥିବା ଗୋଟିଏ କାଚବନ୍ଧା ଫୋଟ କ୍ୟାବିନ୍ ଭିତରେ ଝୁଲେଇ ଦିଆଗଲା। ଏସବୁ ସରଂଜାମ ଭିତରେ ଯିମିତି ଏକ ଅତି ଆପଣାର ପରିଚିତ ଭାରତୀୟ ଗନ୍ଧ ଛପି ରହିଥିଲା, ସ୍ୟାଲୁନ୍‌ର "କଟୁରିଆ" "ଫଟିକିଆ" ଗନ୍ଧକୁ ଆହୁରି ରସସିକ୍ତ କରିବା ପାଇଁ। ରୋହିତ 'ଡ଼େଟୋଲ୍' ପାଣି କରି ଚାରିଆଡ଼େ ଛିଞ୍ଚା ଛିଞ୍ଚି କଲେ। ସ୍ୟାଲୁନ୍‌ର ଭିତର କାନ୍ଥ ମାନଙ୍କରେ ହିନ୍ଦି ତେଲୁଗୁ ସିନେମାର ବଛା ବଛା ହିରୋ ମାନଙ୍କର ଆଲେଖ୍ୟ

ଖଞ୍ଜି ଦିଆଗଲା। ଆଲେଖ୍ୟ ନିର୍ବାଚନ ସମୟରେ ଭବନାଥ କେବଳ କଳି, ନିଶ, କର୍ତ୍ତିତ ଦାଢ଼ି ଯୁକ୍ତ ସୌମ୍ୟ ପୁରୁଷମାନଙ୍କ ଉପରେ ହିଁ ଜୋର ଦେଲେ। ସଂଗ୍ରାମ ଏଭଳି ଏକ ପୁରୁଷ ପ୍ରାଧାନ୍ୟ ଆଲେଖ୍ୟ ନିର୍ବାଚନରେ ନିଜର ଅସନ୍ତୋଷ ପ୍ରକାଶ କଲେ। ଭବନାଥଙ୍କ ଉଦ୍ଦେଶ୍ୟରେ କହିଲେ, ''ବୁଢ଼ାଙ୍କୁ ଖାଲି ଏଥିରୁ ଗଣ୍ଡେ ଦେଖାଗଲା। ନଛା ମାର୍କା ହିରୋଇନରୁ ଦୁଇତିନୋଟି କଟ୍ ଆଉଟ୍ ଲଗେଇଲେ ସ୍ୟାଲୁନ୍ ଆପେ ଭିଡ଼ ଜମନ୍ତା''। ସଂଗ୍ରାମ ଭାବିନେଲା ନବ ବାରିକ ଏଠି ଆସି ସତେ ସ୍ୟାଲୁନ୍ ଖୋଲିବ ଆଉ ସୁଇଡ଼େନ୍‌ର ବାସିନ୍ଦା ହିରୋଇନ୍ ଫୋଟ ଦେଖିଲା ପରେ ତାଙ୍କର ତର ସହିବନି ଏଠି ବସି ବାଳ କାଟିବା ପାଇଁ। ସଂଗ୍ରାମଙ୍କ ମନଭିତରର କଥା କିଏ କଳି ପାରିବ। ସେ ବୋଧହୁଏ ଭାବୁଥିଲା ଯଦି ଦୈବାତ ଜଣେ ଅଧେ ଅଳପ ବୟସୀ ସ୍ୟାଲୁନ୍‌ରେ ସତେ ସତେ ବାଳ କାଟିବା ପାଇଁ କହି ବସନ୍ତି ତା ହେଲେ ସଂଗ୍ରାମ ହୁଏତ ତାଙ୍କ କହଁରା ବାଳରେ କତୁରି ଧରେଇବା ପାଇଁ ପଛଘୁଞ୍ଚା ଦେବନି।

ଶେଷରେ କୀର୍ତ୍ତନ ସେଠୀଙ୍କ ଲକ୍ଷ୍ମୀ ଆଡ଼କୁ ସମସ୍ତେ ମୁହେଁଇଲେ। ସଂଗ୍ରାମ-ହିରୋ ଫୋଟ ମାରିବା ପାଇଁ ମୋଃଟେ ଦେଲାନି। ଧାଡ଼ିକି ଧାଡ଼ି ଲମ୍ବେଇ ଦେଇ ଗଲା ହିରୋଇନ୍ ମାନଙ୍କର କୃତ୍ରିମ ହସରେ ଫାଟି ପଡ଼ୁଥିବା ନାଲି ଆଉ ଗୋଲାପି ଓଠ, ଦୁଷ୍ଟାମିର ଆଖି ଆଉ ବକ୍ଷୋଜ ମାନଙ୍କର ପ୍ରତିଦ୍ୱନ୍ଦ୍ୱିତା ମୂଳକ ଏକ ପ୍ରଦର୍ଶନୀ। ରୋହିତଙ୍କ କ'ଣ ମନେ ହେଲା କେଜାଣି ଘୋଡ଼ାରେ ସବାର ହେଇଥିବା ଓ ଡାହାଣ ହାତରେ ଉନ୍ମୁକ୍ତ ତରୋବାରି ଧରିଥିବା ଶିବାଜୀ ଓ ସୁଭାଷଙ୍କ ରଙ୍ଗୀନ କ୍ୟାଲେଣ୍ଡର ଦୁଇଟି ଲକ୍ଷ୍ମୀର ପଛ କାନ୍ଥରେ ଝୁଲେଇଦେଲେ। ଏମାନଙ୍କ ପଛରେ ସଂଗ୍ରାମର ଅତିପ୍ରିୟ ମାଧୁରୀ ଦୀକ୍ଷିତ ଓ ହେମାମାଳିନୀ ଲୁଚିଗଲେ। ସଂଗ୍ରାମର ବୋଧହୁଏ ମନେ ହେଉଥିଲା ସେମାନଙ୍କ ହାତରୁ ଖଣ୍ଡାଟି ମାନ ଛଡ଼େଇ

ନେଇ କ୍ୟାଲଣ୍ଡର ଦୁଇଟିକୁ ଛିନ୍ ଭିନ୍ କରିଦେବ। କାହିଁ ମାଧୁରୀ ଦୀକ୍ଷିତଙ୍କ ରୂପ ସୌଷ୍ଠବର କମନୀୟତା କାହିଁ ମରଠାର ରୁକ୍ଷଦାଢ଼ି ଧାରୁଆ ନାକ ଓ କୋରଡ଼ ଆଖି? ଭବନାଥ ଇସ୍ତିର ଡ଼ାହାଣ ପଟ କାଛରେ ଭାରତ ମାତାଙ୍କ ଫୋଟ ଓ କୀର୍ତ୍ତନଙ୍କ ଓରିଜିନାଲ ନଡ଼ିଆ ସାଲୁକନା ସାଙ୍ଗକୁ ଶୁଖିଲା ପଇଡ଼ କାଛଠଣାରେ ଥାପିଦେଲା। ଶୁଖିଲା ପଇଡ଼ର କାକୁଡ଼ା ପେଟ ପଛରେ ହେମାମାଳିନୀର ନାଲିଆ ଓଠ ଦୁଇଟି ଲୁଚିଗଲା। ସଂଗ୍ରାମଙ୍କ ଯୋଜନାର ପାଞ୍ଚ ଛ ଅଣା ଯାଏ ମାଡ଼ ଖାଇଗଲା।

ପ୍ରଦର୍ଶନୀ ଉଦ୍‌ଘାଟନ ଆଗ ଦିନ କ୍ୟାବିନ୍ ଗୁଡ଼ିକ କର୍ମତତ୍ପର ହୋଇ ଉଠିଲେ। ରୋହିତ ଗଦା ଭାଇନା ଭୂମିକାରେ ଅବତୀର୍ଣ୍ଣ ହେବା ପାଇଁ ଆପେ ଆପେ ହଁ ଭରିଲେ। ତାଙ୍କ ନାଲିଆ ଖୋର୍ଦ୍ଧା ଗାମୁଛା, ଇଷତ୍ ବୃହଦାକାର ଅଣ୍ଡକୋଷକୁ ସଂପୂର୍ଣ୍ଣ ଆଚ୍ଛାଦିତ କରିପାରୁନଥିଲା। ପୁରୀ ପଣ୍ଡା, ତାଙ୍କ ଅଭ୍ୟାସ ନିଆରା। ଥନ୍ତଲା ପେଟ ଉପରେ ଅଧା ଢ଼ଙ୍କା ବାବା ଓ କାନ୍ଧରେ ଥାଉ ଖଣ୍ଡେ ମସିଆ ଗାମୁଛା, ପ୍ରାୟତଃ ଲଣ୍ଡା ଓ ପଛରେ ଗୋଛାଏ ଚୁଟି। ରୋହିତ ପିସି ସରକାରଙ୍କ ଭଳି ଚା ଗ୍ଲାସ ଗୁଡ଼ିକୁ ଶୂନ୍ୟେ ଶୂନ୍ୟେ ଯାତଆତ କରେଇଲେ। ଗ୍ଲାସ ଦିଶିଲାନି। ଖାଲି ସାମାନ୍ୟ କଷାୟ ଦୁଗ୍ଧ ବର୍ଣ୍ଣର ଅଳେଇଚ ଓ ତେଜପତ୍ର ଦିଆ ଚା'ର ଧାରା ଭାଗୀରଥୀ ଭଳି ବୋହିଗଲା। ଆଃ କି ଅବର୍ଣ୍ଣନୀୟ ସେହି ମହକ। ସେଦିନ କୁଲଟର୍ ହ୍ୟୁସେଟ୍‌ର ସମସ୍ତ ଅନ୍ତେବାସୀ ଦି ତିନି କପ ଭରି ଗଦା ଭାଇନାଙ୍କ ଚା ପିଇଗଲେ।

ସଂଗ୍ରାମ ପାନ କ୍ୟାବିନ୍ ଦାୟିତ୍ୱରେ ରହିଲେ। ଚା ସାଙ୍ଗରେ ପାନର କାଟତି ହେଲାନି। ଭବନାଥଙ୍କ କଥାରେ ଶିଶି, ମାର୍ଗେରିଏଟା ସାଦା ପାନରୁ ଖଣ୍ଡେ ଖଣ୍ଡେ କଳରେ ପୂରେଇଲେ। ସମସ୍ତେ ଡ଼ରିଲେ ଛେପକୁ। ଆମର ଏଠି ହେଇଥିଲେ ସେହି ଦିନକରେ

କୁଲଟର୍ ହ୍ୟୁସେଟ୍‌ରେ କାନ୍ଥ କଣ, ସିଡ଼ିର ତଳ, ଝରକା ଗ୍ରିଲ୍ ସବୁ ରଞ୍ଜିତ ହେଇଯାଆନ୍ତା। ସିଗାରେଟ୍ ଆଉ ବିଡ଼ି ପ୍ରବଳ ବିକ୍ରି ହେବାର ପୂର୍ବାଭାସ ଦେଖାଗଲା। ନୃସିଂହ ସ୍ୟାଲୁନ୍‌ରେ ଆଉ ଭେଦାଚଳମ୍ ତାଙ୍କ ଫାଲଟା ମାରି ଲୁଙ୍ଗିରେ ଠିଆହେଲେ। ବାସ୍ତବିକ କୀର୍ତ୍ତନ ସେଠୀଙ୍କ ଲୁଙ୍ଗିଟି କୀର୍ତ୍ତନଙ୍କ ହସ୍ତଗତ ହେବା ପୂର୍ବରୁ ତେଲଙ୍ଗା ଧୋବା ଆଚେୟାଙ୍କ ମାଲିକାନାରେ ଥିଲା। ଏଣୁ ଭେଦାଚଳମ୍ ଯଥାର୍ଥରେ ଆଚେୟାଙ୍କ ସ୍ଥାନ ପୂରଣ କଲାଭଳି ମନେ ହେଲା। ପ୍ରଦର୍ଶନୀ ଉଦ୍‌ଘାଟନ ଦିନ ଭାରତର ରାଷ୍ଟ୍ରଦୂତଙ୍କ ଉଦ୍‌ଘାଟନୀ ଭାଷଣ ସରୁ ନ ସରୁଣୁ ଅଧିକାଂଶ ଚା କ୍ୟାବିନ୍ ଆଡ଼କୁ ମାଡ଼ି ଆସିଲେ। ଅଦା, ଅଳେଇଚ ଓ ତେଜପତ୍ର ଦିଆ ଚା'ର ମହକ ବୋଧହୁଏ ସେମାନଙ୍କୁ ମତୁଆଲା କରିଦେଇଥିଲା। ନିମନ୍ତ୍ରଣ ପତ୍ରରେ ଉଲ୍ଲେଖ ଥିଲା ଯେ ଭାରତୀୟ ଟେରାକୋଟା ଖୁରିରେ ଅତିଥି ମାନଂକୁ ଚା ଦୋକାନ ପାଖରେ ଚା ପରିବେଷଣ କରାଯିବ। ଚା କିଏ ନ ପିଇଛି। କିନ୍ତୁ ଚା କ୍ୟାବିନ ସଂଲଗ୍ନ କାଠ ବେଞ୍ଚରେ ବସି ଟେରାକୋଟା ଖୁରିରେ ଚା ପିଇବାର ଏକ ଅଦ୍ଭୁତ ପରିକଳ୍ପନାର ମାଦକତାରେ ଆକୃଷ୍ଟ ହେଇ ଅଧିକାଂଶ ସୁଇଡ଼ିସ୍ ଭିଡ଼ ଜମେଇଲେ। ଗଦା ଭାଇନା ଭୂମିକାରେ ଅଭିନୟ କରୁଥିବା ରୋହିତ ବାଁ ହାତରେ ଖୁରି ଓ ଡ଼ାହାଣ ହାତରେ ଚା' ଭରା କେଟଲି ଧରି ତିଆର। ଭବନାଥ ଇଙ୍ଗିତ ଦେଲେ ପରିବେଷଣ ଆରମ୍ଭ ହେବ। ଭାରତର ରାଷ୍ଟ୍ରଦୂତ, ଷ୍ଟକ୍‌ହୋମ୍‌ର ମେୟର, କୁଲଟର୍ ହ୍ୟୁସେଟ୍‌ର ନିର୍ଦ୍ଦେଶକ, ବୋ ସିଲଭାନ୍, ଶିଶି, ମାର୍ଗାରିଏତା, ଭବନାଥ, ଭୀମସେନ୍ ଯୋଷୀ, ଦାଦା ଅତି ସନ୍ତର୍ପଣରେ କ୍ୟାବିନ ଆଡ଼କୁ ମୋହିଁଲେ। ଚା' ପରିବେଷଣ ଆରମ୍ଭ ହେଲା। ସଢ଼ ସାଢ଼ ସମସ୍ତେ ପିଇଲେ। ଖୁରି ପରେ ଖୁରି। ଦୁଇ, ତିନି ଚାରି ପର୍ଯ୍ୟନ୍ତ କଥାଗଲା। ଅଦା, ଅଳେଇଚ, ତେଜପତ୍ର ବାସ୍ନାରେ

ମୁହଁ ବାନ୍ଧି ହେଇଗଲା । କିନ୍ତୁ ହାତରୁ ଖୁରି ଅଲଗା ହେଉନି । ଚା' ଶେଷ ହେଇ ଆସିଲାଣି । ଜଣେ ଦି ଜଣ ଭବନାଥଙ୍କ ପାଖକୁ ଆସି କାନରେ କିଛି ଫୁସ୍‌ଫାସ୍ ହେବା ଦେଖାଗଲା । ତା ପରେ ଭବନାଥ ଚା କ୍ୟାବିନ ଡ୍ରାବଲ ଉପରେ ଠିଆ ହେଇ ଘୋଷଣା କଲେ ଯେ ଯେଉଁମାନେ ଟେରାକୋଟା ଖୁରି ପ୍ରତି ଅନୁରକ୍ତ ସେମାନେ ଆନନ୍ଦର ସହିତ ସେଗୁଡ଼ିକୁ ଉପହାର ମନେ କରି ସ୍ୱସ୍ୱ ଗୃହମାନଙ୍କୁ ନେଇ ପାରନ୍ତି । ସୁଇଡ଼ିସ ସାଇବ ସାଇବାଣୀଙ୍କ ଆନନ୍ଦ କହିଲେ ନ ସରେ । ଅନ୍ୟଥା ଖୁରିଗୁଡ଼ିକ ରେଲ୍ ଲାଇନ୍ ଧାରେ ଧାରେ ବା ବସ୍‌ଷ୍ଟାଣ୍ଡ ଅଳିଆଗଦାରେ ଖରାକାକର ଖାଇ ପଡ଼ିରହନ୍ତେ । ସାଇବ ମାନଙ୍କ ବକିଂହାମ୍ ପକେଟ ଭିତରେ ଉଷୁମ ପିଇ ପିଇ ଚାଲିଲେ ସମ୍ଭବତଃ ଡ୍ରଇଁ ରୁମ୍‌ରେ ଭାରତ ଉତ୍ସବର ସ୍ମାରକୀ ହେଇ ରହିବା ପାଇଁ ।

ପରଦିନ ସୁଇଡ଼ିସ୍ ଟିଭି ଭବନାଥଙ୍କୁ ଘେରା କଲେ । ଭବନାଥ ଚା କ୍ୟାବିନ ଓ ପାନ ଦୋକାନ ଆଗରେ ଠିଆ ହେଇ ଅଦାଦିଆ ଚା ବନେଇବା ପ୍ରଣାଳୀ ସଂପର୍କରେ ବୟାନ ଦେଲେ । ବରଜ ଠାରୁ ଆରମ୍ଭ କରି ଖିଲ ପର୍ଯ୍ୟନ୍ତ ପାନର ବିଭିନ୍ନ ଅବସ୍ଥା ଉପରେ ସଚିତ୍ର ଟିପ୍ପଣୀ ଦେଲେ । ଡ୍ରାବର ଆମଲା କେଶ ତେଲର ଦ୍ରବ୍ୟଗୁଣ ଓ ସୁବାସ ନେଇ ଗୋଟିଏ କ୍ଷୁଦ୍ର ଗପ ଶୁଣେଇଲେ । ଗପଟିର ବିସ୍ତାର ଏଠି ଅନାବଶ୍ୟକ । ସାରାଂଶ ହେଲା ଡ୍ରାବର ଆମଲା ମୁଣ୍ଡକୁ ଓ ବାଳକୁ ସୁବାସିତ ରଖିବା ସାଙ୍ଗକୁ ଭାଙ୍ଗି ଯାଇଥିବା ସ୍ୱପ୍ନମାନଙ୍କୁ ଯୋଡ଼ିବାରେ ମଧ୍ୟ ସକ୍ଷମ ହେଇପାରିବ ।

କ୍ଲଚର୍ ହ୍ୟୁସେଟ୍‌ରେ ତା ପରର ଭିଡ଼ କହିଲେ ନ ସରେ । ସେମାନେ କିପରି ଜାଣିବେ ଯେ ଏଠି କିଣା ବିକା ହେଉନି ? ନା ଗଦା ଭାଇନା ନା କୀର୍ତ୍ତନ ସେଠି । ସମସ୍ତେ ଯେଝା ରୂପ ଧରି ଷ୍ଟକ୍‌ହୋମ୍‌ରେ ବୁଲା ବୁଲି କରୁଛନ୍ତି । ଭାରତୀୟ

କାରିଗର ଦଳଙ୍କ ଏବେ ଫେରିବା ବେଳ। କୁଲଟର୍ ହ୍ୟୁସେଟ୍‌ରେ ତାଙ୍କୁ ଦେଖେ କିଏ ? ଖାଲି ଭବନାଥ ଯାହା ପଇଁତରା ମାରୁଛନ୍ତି।

ମିସ୍ ମୋରଲେଙ୍କ ବୟସ ଅଶି ପାଖାପାଖି। ବେଶି ମୋଟା କି ପତଳା ନୁହଁ। ସଢ଼ି ଯାଇଥିବା ଆତ ଭଳି ଗାଲ ଦୁଇଟି ନତପତ୍ ହେଉଛି। କିନ୍ତୁ ଆଖି ଦୁଇଟିରେ ତଥାପି ସ୍ୱପ୍ନର ନୀଳିମା ଭର୍ତ୍ତି ହେଇ ରହିଛି। ଗୋଲାପି ଛିଟର ସ୍କାର୍ଟ, ହାତରେ ନାଲିଆ ରଙ୍ଗର ଓହଳା "ହ୍ୟାଣ୍ଡ ବ୍ୟାଗ୍"। ମିଠା ମିଠା କଥା। ଭବନାଥଙ୍କୁ ପଚାରିଲେ "ମୋର ଡ଼ାବର ଆମଲା କେଶ ତେଲ ଶିଶିଟିଏ ଦରକାର, ଦେଇପାରିବ ? ଏହି ବାସ୍ନା ସହିତ ବହୁଦିନରୁ ମୋର ପରିଚିତି। ମୁଁ ସଚେତନ ଏଇଟା ପ୍ରଦର୍ଶନୀ। ଏଠି ବିକା କିଣାର ପ୍ରଶ୍ନ ନାହିଁ। କିନ୍ତୁ ସ୍ୱପ୍ନ ଯୋଡ଼ିବା ପାଇଁ ତମେ କ'ଣ ସାହାଯ୍ୟ କରିପାରିବନି ?" ମିସ୍ ମୋରଲେଙ୍କ କଥାରେ ଦରଦ ଭରି ରହିଥିଲା। କଥା କହିଲାବେଳେ ସିଏ ତାଙ୍କ ନୀଳ ଆଖି ଦୁଇଟିକୁ ଆହୁରି ଗଭୀର କରି ଦେଉଥିଲେ। ତାଙ୍କ ମନ କାହାକୁ କେଜାଣି ଖୋଜୁଥିଲା। ସେ ପାନ କ୍ୟାବିନ୍ ଭିତରକୁ ମୁହଁ ନେଇ ଆଘ୍ରାଣ କଲେ। କି ଚମତ୍କାର ! ଏବେ ତାଙ୍କ ସ୍ୱପ୍ନରେ ଡ଼େଣା ଯୋଡ଼ି ହେଇଗଲା। ଏଣିକି ଉଡ଼ି ଯିବ। ଭବନାଥ ମିସ୍ ମୋରଲେଙ୍କ ଭାବ ଓ ଭାବାନ୍ତରର ପ୍ରତ୍ୟେକ ପରିଚ୍ଛେଦକୁ ବୁଝିବାକୁ ଚେଷ୍ଟାକରୁଥିଲେ। ମିସ୍ ମୋରଲେ ଯାହା ପାଇଁ ମିସେସ୍ ହୋଇଥାନ୍ତେ ତା ବିହୁନେ ଏବେବି ଅଶିବର୍ଷରେ ସେ କୁମାରୀ। ମିସ୍ ମୋରଲେ ଏବେ ଭବନାଥଙ୍କ ଭାବର ନିକଟ ହେବାପାଇଁ ଚେଷ୍ଟାକଲେ, "କଲିକତାର ଏକ ଅଙ୍କାବଙ୍କା ଗଳି। ହାତ ଛନ୍ଦାଛନ୍ଦି ହେଇ ବୁକୁ ମେଳି ପଡ଼ିଥିବା ଦୋକାନ। ଅଳତା, ନାଲିଶଙ୍ଖା, କସ୍ତୁରି, ଆଉ ଡ଼ାବର ଆମଲା କେଶ ତେଲ। କି ପ୍ରାଣ ପ୍ରାଚୁର୍ଯ୍ୟ ଗନ୍ଧ। ଆସକ୍ତିର , ସମ୍ମୋହନର, ସ୍ୱପ୍ନର ଓ ବିଚ୍ଛେଦର। ଡ଼ାବର। ଭବନାଥ, ତମେ ଏ ଗନ୍ଧରେ କେବେ

ମାତିଛ ? ଡ଼ାବର ଭିଜା ଗଭାରେ ହେନା ଖୋସିଛ ? ଭବନାଥ, ଏସବୁର ଉତ୍ତର ପାଇଁ ମୁଁ ତମ ପାଖକୁ ଆସିନି । ତମେ ସତେରେ ଶିଶିଟିଏ ଦେଇପାରିବ ?''

ଉଦ୍‌ଘାଟନ ଭାଷଣରେ ଭାରତୀୟ ରାଷ୍ଟ୍ରଦୂତ କହିଥିଲେ, ''ଏହି ବଜାରରେ ପାନ କ୍ୟାବିନ ପାଖରେ ଠିଆ ହେଲେ ଡ଼ାବର ଓ ପାନର ବାସ୍ନା ମୋତେ ମତୁଆଲା କରି ଦେଉଛି । ମୁଁ ଘରମୁହାଁ ହେଇଯାଉଛି ।'' ତାଙ୍କ ସ୍ୱାମୀଙ୍କ କଥାରେ ଗୁଜୁରାଟୀ ଭଦ୍ରମହିଳା ଶ୍ରୀମତୀ ପଟେଲ ମିସ୍ ମୋର୍‌ଲେଙ୍କ ଭଳି ହସିଦେଇଥିଲେ । ଭବନାଥଙ୍କ ଉଚିତ୍ ଥିଲା ତାଙ୍କ ହାତକୁ ସେ ଡ଼ାବର ଆମଲା ଶିଶିଟି ବଢ଼େଇ ଦେଇଥାନ୍ତେ । ଆଦବ କାଏଦା ଭିତରେ ସମସ୍ତେ ଆତ୍ମୀୟତାର ଏଇ ଟୁକୁଡ଼ା ଗୁଡ଼ିକୁ ଭୁଲିଯାଇଥିଲେ ।

ମିସ୍ ମୋରଲେ ତାଙ୍କ ପ୍ରଶ୍ନର ଉତ୍ତର ଅପେକ୍ଷାରେ । ଭବନାଥ ଅତି ବିନମ୍ରରେ ହଁ ଭରିଲେ, ''ପ୍ରଦର୍ଶନୀ ସରିଗଲେ ମୁଁ ଆପଣଙ୍କୁ ଗୋଟିଏ କାହିଁକି ଗଣ୍ଡାଏ ଡ଼ାବର ଶିଶି ଭେଟି ଦେବି'' । ଫେରିବା ପୂର୍ବରୁ ମିସ୍ ମୋରଲେ ଭବନାଥଙ୍କ ଦୁଇ ଗାଲ କଡ଼େ ଚୁମା ଖାଇଲେ । କି ଶୀତଳ ସେ ସ୍ପର୍ଶ । ବାଲଟିକର ସମସ୍ତ ଲହଡ଼ି ଯିମିତି ଭବନାଥଙ୍କ ଉପରେ ଅଜାଡ଼ି ହେଇଗଲା ।

ପ୍ରଦର୍ଶନୀ ଉଠେଇବା ସମୟ ପହଞ୍ଚିଲା । ଭାରତ ସରକାର ନିଷ୍ପତ୍ତି ନେଲେ ଯେ ଲୋକପ୍ରିୟ କଳା ପ୍ରଦର୍ଶନୀର ସବୁ ସାଜ ସରଂଜାମ ସୁଇଡ଼େନର ସରକାର ଓ ଜନସାଧାରଣଙ୍କୁ ଭେଟି ଦିଆଯିବ । ଅସଲ କଥାଟି ହେଲା - ଚା, ପାନ କ୍ୟାବିନ୍ ଭଳି ଅଲୋଡ଼ା ସଂପତ୍ତି ଗୁଡ଼ିକୁ ଅଯଥା ଲକ୍ଷାଧିକ ଟଂକା ବିମାନ ଭଡ଼ା ଖର୍ଚ୍ଚ କରି ଭାରତ ନ ଫେରାଇ ସେଇଠି ଛାଡ଼ିଦେଇ ଆସିଲେ ''ନଈପାଣି ନଂଇରେ, ପିତୃଲୋକ ସନ୍ତୋଷ'' ନ୍ୟାୟରେ ସେଗୁଡ଼ିକ ବୋଫୋରସ୍ ଦେଶ ପ୍ରତି ଭାରତର ଦରଦ ପ୍ରକାଶ କରିବାରେ ସହାୟକ ହେବ ।

ଭବନାଥ ବାଣ୍ଟି ଚାଲିଛନ୍ତି। ପର୍ଯ୍ୟଟନ ସଂସ୍ଥାର ମାଲିକ, ସରକାରୀ, ବେସରକାରୀ ଲୋକଙ୍କ ଭିଡ଼ି ଜମିଛି। ଶିଶି ତାଲିକା କରି ଚାଲିଛି। କିଏ ସମ୍ବଲପୁରୀ, ଶାଢ଼ୀ ଆଡ଼କୁ ହାତ ବଢ଼ଉଚି ତ ଆଉ କିଏ ଠାକୁରାଣୀ ମନ୍ଦିର ପାଖ ଘୋଡ଼ାକୁ କାନ୍ଧେଇବା ଉପକ୍ରମ କରୁଛି। ଦଳେ ଇମିଟେସନ୍ ମାର୍ବଲ ଫଳକ ଗୁଡ଼ିକ ନିର୍ବିଘ୍ନରେ କିମିତି ଉଠାଯାଇ ପାରିବ ତା ସଂପର୍କରେ ସବିଶେଷ ଆଲୋଚନା କରୁଛନ୍ତି। ଆଉ ଦଳେ କାନ୍ଥରୁ ଝିଟିପିଟି ଓ ଅସରପା ସଂଗ୍ରହ କରିବାରେ ଲାଗି ପଡ଼ିଛନ୍ତି। ଭବନାଥ ଦେଇ ଚାଲିଛନ୍ତି। ବାଣ୍ଟି ଚାଲିଛନ୍ତି। କିନ୍ତୁ ମନ ଖୋଜୁଛି ସେଇ ଅଶିବର୍ଷର କୁମାରୀଟିକୁ। କି ମୋଲାୟମ ତା ଓଠ ଦୁଇଟିର ସ୍ପର୍ଶ। ମିସ୍ ମୋରଲେ। ମୋରଲେ ନୁହେଁ "ମୋରରେ"। ମୁଁ ତମର ଭାଙ୍ଗି ଯାଇଥିବା ସ୍ୱପ୍ନକୁ ଯୋଡ଼ିଦେବି। ତମର ଗଭା ନ ଥିଲେ ବି ହେନା ଖୋସିଦେବି। ମିସ୍ କାହିଁ? ଶିଶିକୁ ପଚାରିବେ ହେଲେ। ଶିଶି ବା ଜାଣିବ କିମିତି? ଶିଶିର ହୁଏତ ଡ଼ାକ୍ତର ଆମଲା ଦରକାର। କିନ୍ତୁ ସିଏ ଘରକଥା। ଭବନାଥ ଅନ୍ୟମନସ୍କ, ଶିଶି ଜାଣିପାରିଲା।

ସିଏ ଭୁଲି ଯାଇଥିଲା, ପ୍ରାୟ ପ୍ରତି ସଂଧ୍ୟାରେ କୁଇଟର୍ ହ୍ୟୁସେଟ୍‌କୁ ଆସୁଥିବା ଏହି 'ବିଖରେ ହୁଏ ସପନେ' ଅଭିସାରିକାଟିକୁ ଯିଏ କ୍ୟାବିନ ପାଖରେ ଠିଆ ହେଇ ଭିତରକୁ ଅନାଏ, ବାସ୍ନା ଆଘ୍ରାଣ କରେ, ଭବନାଥକୁ ଖୋଜେ ଆଉ ଫେରିଯାଏ। ଶିଶି କହି ପକାଇଲା, " ଯିଏ, ଫେରିଲା ବେଳେ ମନେହୁଏ ତାର ନୂଆକରି କଅଁକି ଯାଇଥିବା ପକ୍ଷ ଦୁଇଟିରେ ଉଡ଼ିଯାଉଛି?"

ଭବନାଥ କହିଲେ, 'ଶିଶି! ହଁ ସେଇତ। ମିସ୍ ମୋରଲେ"। ଶିଶି ନିଜ ଭ୍ୟାନିଟି ବେଗରୁ କାର୍ଡ଼ଟିଏ ଭବନାଥ ହାତକୁ ବଢ଼େଇ ଦେଲା। ସେଇଟା ମିସ୍‌ର ଭିଜିଟିଂଗ୍ କାର୍ଡ଼। ତା ପଛପଟେ ମିସ୍ ଲେଖିଥିଲା "ଭବନାଥ! ମୁଁ ତୁମକୁ ଖୋଜୁଛି"।

# ଏଲିଫାଣ୍ଟେନ୍ ଏଲିଫାଣ୍ଟେନ୍

ଓଡ଼ିଶା ଦେଶଟି ପାଞ୍ଚଶହ ବର୍ଷତଳେ ଗଜମାନଙ୍କର ଦେଶ ଥିଲା। ଏଠିକାର ରାଜା ଓ ସମ୍ରାଟ୍ ମାନଙ୍କୁ ଗଜପତି କୁହାଯାଉଥିଲା। ଏବେ ଭାବିଲା ବେଳକୁ ମିଛ ମିଛ ଲାଗୁଛି। ସେହି ମହାଗଜ ମାନଙ୍କର ଦାୟାଦ ପୁରୀ ରାଜାଙ୍କର ବୁଢ଼ୀହାତୀଟି କେଉଁ ଦିନଠୁଁ ସ୍ୱର୍ଗବାସ କଲାଣି। ଏବେ ଖାଲି ମଝିରେ ମଝିରେ ଖବର କାଗଜ ମାନଙ୍କରେ ପଢ଼ିବାକୁ ମିଳୁଛି "ବଣୁଆ ହାତୀଙ୍କ ଉପଦ୍ରବ" "ହାତୀ ବାଟୋଇକୁ ଚକଟି ମାରି ଦେଇଛି"। "ହାତୀ ଚନ୍ଦକା ଜଙ୍ଗଲରୁ ପଶି ଆସି ପାଖ ଗାଁରେ ଫସଲ ନଷ୍ଟ କରି ଦେଇଛନ୍ତି"। ଏମିତି ଖବର ଶୁଣିବାକୁ ଭବନାଥଙ୍କୁ ଭଲ ଲାଗେ। ଅନ୍ତତଃ ଜଣାପଡ଼ିଯାଏ ଗଜପତିଙ୍କ ଦେଶରେ ହାତୀଙ୍କ ବଂଶ ସଂପୂର୍ଣ୍ଣ ଲୋପ ପାଇଯାଇ ନାହିଁ। ତା ନହେଇଥିଲେ ମାର୍କ ସେଣ୍ଡରସ୍ ସାଇବ ଓଡ଼ିଶାରେ ହାତୀଟିଏ କିଣି କୋଣାର୍କ ରୁ ବାହାରି ବିହାର ସୋନପୁର ମେଳାରେ ପହଞ୍ଚନଥାନ୍ତା। ସାଇବ ଭାବିଲା ସତେ ଯେମିତି ସେ ଜାଙ୍ଗୁଲାଙ୍କ ହାତୀ ଉପରେ ଚଢ଼ିଛି। ଦିଗ୍ ବିଜୟର ପଟୁଆରରେ ବାହାରିବ।

ଓଟିଡ଼ିସିରେ ଚାକିରି କରୁଥିବାବେଳେ ଭବନାଥ ଥରେ ହାତୀକୁ ନେଇ ମସ୍ତବଡ଼ ଭୁଲ୍ କରି ପକେଇ ଥିଲେ। କଲିକତାର କମ୍ୟୁନିକେସନ୍ କନ୍‌ସାଲ୍‌ଟଣ୍ଟର ଡ଼ିଜାଇନର ଆଫ୍ରିକାର ଦୁଇଟି ମସ୍ତବଡ଼ ଦନ୍ତାହାତୀର ରଙ୍ଗୀନ ଫଟୋ ଦେଇ ତା ତଳେ ସିମିଳିପାଳ ନାଁ ଛାପିଦେଇଥିଲା।

ମୋଟାମୋଟା ଶାଳ ପିଆଶାଳ ଗଛ ବେକ୍‌ଗ୍ରାଉଣ୍ଡରେ ଦନ୍ତାହାତୀ ଦୁଇଟି ବେଶ୍ ମାନୁଥିଲେ। ଭବନାଥ ଭାବିଲେ ଯୁଆଡ଼େ ଦେଖିଲେତ ମାଇ କୁଟିହାତୀ। ଟେଣ୍ଡାପୋଢ଼ ସାଇଜକୁ ଖସି ଆସିଲେଣି। ଏଣୁ ବିଦେଶୀ ପର୍ଯ୍ୟଟକଙ୍କୁ ଓଡ଼ିଶାକୁ ଟାଣିବାକୁ ହେଲେ ପୋଷ୍ଟର ଉପରେ ଦୁଇଟି ଦନ୍ତାହାତୀ ବସାଇ ଦେଲେ ଚଳିବ। ଚଳିଗଲା ମଧ୍ୟ।

ଶିଳ୍ପୀଟିଏ ହେଇ ଉତ୍କଳ ଦେଶରେ ଜନ୍ମ ହେଇଥିଲେ ବହୁତ ଥର ହାତୀମାନଙ୍କ ହାବୁଡ଼ରେ ପଡ଼ିବାକୁ ହୁଏ। ମନ୍ଦିରକୁ ଯାଅ ଦେଖିବ ହାତୀ ଠିଆହୋଇଛି ପଦ୍ମଫୁଲ ଧରି। ନ ହେଲେ ସିଂହଟିଏ ତା ଉପରେ ମାଡ଼ି ବସିଛି। ରକ୍ଷା, ସିଂହ ହାତୀଟିର କୌଣସି ଠାରେ ଖଣ୍ଡିଆ ଖାବୁରା କରିନାହିଁ। କୋଣାର୍କରେ ପହଞ୍ଚିଲେ ଦେଖିବ ମାଂସ ତୁଲ୍ ତୁଲ୍ ହୋଇଥିବା ହାତୀ ଶହ ଶହ ବର୍ଷ ଧରି ଠିଆ ହୋଇଚି। ତା ଶୁଣ୍ଢକୁ ବି କୋଣ୍ଢ ପାଇବନାହିଁ। ସେଇ ଆଡୁ ଆଖି ଫେରେଇ ଆଣି ମନ୍ଦିର ପୀଠ ତଳକୁ ଚାହିଁଲେ ବୋଧହୁଏ ଲକ୍ଷେ କି ଦିଲକ୍ଷ ହାତୀ। କେତେ ଭଙ୍ଗି। କେତେ ଗାରିମା, କେତେ ଔଦ୍ଧତ୍ୟ ଓ କେତେ ଶାଳୀନତା। ଏହାଠାରୁ ବଳି ହାତୀ ପୃଥିବୀରେ ଆଉ କେଉଁଠି ନ ଥିବେ। ଏଣୁ ଜୁରିକ୍‌ରେ ହାତୀ ପ୍ରଦର୍ଶନୀ କଥାଟି ଶୁଣିବା ପରଠାରୁ ଗଜପତି ଦେଶର ଚିତ୍ରଶିଳ୍ପୀ ଭବନାଥ ବିଶେଷ ଉତ୍‌ଫୁଲ୍ଲିତ ହେଇପାରିଲେ ନାହିଁ। ଭାବିନେଲେ କୋଣାର୍କ ଅଛିନା ଚନ୍ଦକା ଜଙ୍ଗଲ ଅଛି ଯେ ସହଜରେ ହାତୀ ଉପରେ ପ୍ରଦର୍ଶନୀ ହୋଇପାରିବ। ରିଟ୍‌ବର୍ଗ ମ୍ୟୁଜିୟମର ଅନ୍ୟ ଏକ ଶାଖା "ଜୁମ୍ କିଲ୍"ରେ ହାତୀ ପ୍ରଦର୍ଶନୀର ଆୟୋଜନ ହୋଇଥାଏ। ଭବନାଥ ଭାବିଲେ କଳିବା ସୁଇସ୍ ସାଇବ ମାନଙ୍କ ବୁଦ୍ଧି କେତେ? କିମିତିକା ପ୍ରଦର୍ଶନୀଟି କରି ପକେଇବେ। ରିଟ୍‌ବର୍ଗ ମ୍ୟୁଜିୟମର ନିର୍ଦ୍ଦେଶକ ଡ଼କ୍ଟର ଏବରହାର୍ଡ଼ ଫିସର୍ ଭବନାଥଙ୍କ ବନ୍ଧୁ। ତାଙ୍କ ନିମନ୍ତ୍ରଣରେ ଭବନାଥ ଜୁରିକ୍‌ରେ ପହଞ୍ଚିଛନ୍ତି।

ଘଟଣାକ୍ରମେ ଏହି ହାତୀ ପ୍ରଦର୍ଶନୀଟି ସେହି ସମୟରେ ଜୁରିକ୍‌ରେ ଆୟୋଜନ କରାଯାଉଛି। ଭବନାଥଙ୍କ ଧାରଣା ଥିଲା ଯାଇ ଯାଇ ଏମାନେ ଯିବେ କେତେଦୂର - ଆଫ୍ରିକା କିମ୍ବା ବର୍ମା ଯାଇ ଭଲ ଭଲ ରଙ୍ଗୀନ୍ ଫଟୋ ନେଇ ଆସିବେ, ଆଉ ତାକୁ ବଡ଼ ବଡ଼ ବ୍ଲୋଅପ୍ କରି ମ୍ୟୁଜିୟମରେ ଖାଞ୍ଜି ଦେବେ। ଏବରହାର୍ଡ୍ ତ ଭାରତୀୟ କଳା ସଂପର୍କରେ ଆମୂଳଚୂଳ ଜାଣନ୍ତି। ହୁଏତ ବିଚାରିଟା ହାତୀ ମୁଣ୍ଡିଆ ଗଣେଶଙ୍କ ଫଟୋ ବା କଟ୍ ଆଉଟ୍ ପ୍ରଦର୍ଶନୀରେ ରହିବ। କନ୍ଦା ପଥର ବା ଖଡ଼ି ପଥରର ଗଣେଶ ଉତ୍କଳିକାରୁ ଆଣିବା ବ୍ୟୟସାପେକ୍ଷ। ପ୍ରଦର୍ଶନୀ ବଡ଼ ଧରଣର ହୋଇଥିଲେ ତ ରିଟ୍‌ବର୍ଗରେ ହେଉଥାନ୍ତା।

ଉଦ୍‌ଘାଟନ ଉତ୍ସବର ଚମତ୍କାରପ୍ରଦ ଘଟଣା ହେଲା ଦୁଇଟି ହାତୀ ଦର୍ଶକମାନଙ୍କୁ ଅଭିବାଦନ ଜଣେଇ ମ୍ୟୁଜିୟମ୍ କବାଟରେ ମୃଦୁ ଶୁଣ୍ଢ ସ୍ପର୍ଶ କରିବେ। ଆଉ କବାଟ ଆପେ ଆପେ ଖୋଲିଯିବ। ତାହାହିଁ ହେବ ପ୍ରଦର୍ଶନୀର ଉଦ୍‌ଘାଟନ ଓ ତା ପରେ ପରେ ଦଳେ ସ୍କୁଲ ପିଲା ମ୍ୟୁଜିୟମ୍ ଭିତରେ ଭାରତୀୟ ମିନିଏଚର୍ ହାତୀଗୁଡ଼ିକୁ ଦେଖି ନିଜ ଡ୍ରଇଁ ବହିରେ ଛବି ଆଙ୍କିବେ, ରଙ୍ଗ ଭରିବେ ଓ କଳା ଲାଇନ୍ ଦେଇ ତାକୁ ଅଳଂକରଣ କରିବେ। ଏ ପିଲାମାନେ ଆଗରୁ ଦିନେ ଜୁରିକ୍‌ର ଚିଡ଼ିଆଖାନାରେ ହାତୀଙ୍କ ସାଙ୍ଗରେ ରହି ହାତୀକୁ ଭଲ ଭାବରେ ଦେଖିଛନ୍ତି ଓ ବୁଝିଛନ୍ତି। ସେଥିପାଇଁ ଏବରହାର୍ଡ୍ ଚିଡ଼ିଆଖାନା ମାଲିକଙ୍କ ସାଙ୍ଗରେ ବିଚାର ବିମର୍ଷ କରି ଯୋଜନାଟିର ରୂପାୟନ କରିଛନ୍ତି।

ତା' ପରେ ଭବନାଥ ପଛକୁ ପଛ କଳ୍ପନା କରି ଚାଲିଲେ। ଜୁରିକ୍ ନଗରୀକୁ ହାତୀ ଆସିବ କୁଆଡୁ? ଚିଡ଼ିଆଖାନାର ହାତୀ ଏଭଳି କାର୍ଯ୍ୟରେ ଲଗାଯାଇ ପାରିବ ନାହିଁ। ଏବରହାର୍ଡ୍ ପ୍ରଦର୍ଶନୀ ପାଇଁ ଭିଷଣ ବ୍ୟସ୍ତ। ଏଣୁ ତାଙ୍କୁ ପଚାରି ବୁଝିବା ଠିକ୍ ହେବନି

ଭାବି ଭବନାଥ ଚୁପ୍ ରହିଲେ। ସକାଳୁ ସକାଳୁ ଚଟାପଟ୍ ଦିଟା ପାଉଁରୁଟି ତଣ୍ଟିରେ ଗଳେଇ ଦେଇ ଭବନାଥ, ବଂଧୁପତ୍ନୀ ବାରବରା ତାଙ୍କ ଦୁଇଝିଅ ଅଂଜଳୀ ଓ ଲୋତିକା ସେମାନଙ୍କ ପିଠିରେ ରୁକ୍‌ସାକ୍ ଓ ସେଥିରେ ମୂଷା ଆକୃତିର ପାଉଁରୁଟି ଭର୍ତ୍ତି-ଚାଲିଲେ ପ୍ରଦର୍ଶନୀ ଦେଖିବାପାଇଁ। ସେମାନେ ଭବନାଥଙ୍କୁ ସବୁକଥା ଲୁଚେଇ ରଖିଛନ୍ତି। ହୁଏତ ଆଗରୁ କହିଦେଲେ ଫସର ଫାଟିଯିବ ଓ ତା ପରକୁ ହୁଏତ ପାଣିଚିଆ ବି ଲାଗିପାରେ।

ହାତୀ ପ୍ରଦର୍ଶନୀ ଉପଲକ୍ଷେ ଆଜି ଜୁରିକ୍ ନଗରୀର ମୁଖ୍ୟରାସ୍ତା ଗୁଡ଼ିକର ଟ୍ରାମ ଚଳାଚଳ ବନ୍ଦ। ଆଗରୁ ଜୁରିକ୍‌ର ମେୟରଙ୍କଠାରୁ ସ୍ୱତନ୍ତ୍ର ଭାବେ ଅନୁମତି ନିଆଯାଇଛି। ରାସ୍ତାରେ ଗାଡ଼ି ଘୋଡ଼ା ବି ଚଳପ୍ରଚଳ କରୁନି। ସକାଳେ ସାଢ଼େ ସାତରୁ ସାଢ଼େ ଦଶ। ଏମିତି ରାସ୍ତାଘାଟ ସମସ୍ତ ଯାନବାହାନ ପାଇଁ ବନ୍ଦ ରହିବ ବୋଲି ଖବର କାଗଜ ଜରିଆରେ ଜଣେଇ ଦିଆଯାଇଛି। କାରଣ ହେଲା ଜୁରିକ୍ ହ୍ରଦ୍ କୂଳର ଥିଏଟର ଘର ସାମନା ପଡ଼ିଆରେ ଖେଳୁଥିବା ଗ୍ରେଟ୍ ରେମନ୍ ସର୍କସ ଟେଣ୍ଟରୁ ପ୍ରାୟ ଷୋହଳ ଗୋଟି ସୁସଜ୍ଜିତ ହାତୀ ଜୁରିକ୍ ହ୍ରଦ କୂଳେ କୂଳେ ପୁରୁଣା ସହରର ରାସ୍ତାରେ ରାସ୍ତାରେ କୁନ୍‌ଷ୍ଟ ହାଉସ୍ କଡ଼ ଦେଇ 'ଜୁମ୍‌କିଲ୍' ହାଉସ୍ ପାଖରେ ପହଞ୍ଚିବେ। କଥା କହୁଁ କହୁଁ ଦୂରରୁ ହାତୀ ପଟୁଆର ବାହାରିବା ଆଖିରେ ପଡ଼ିଲା। କୌଣସି ହାତୀ ଉପରେ ମାହୁନ୍ତ ବସିନାହାନ୍ତି। କେବଳ ଦି ଜଣ ମାହୁନ୍ତ ରାଜା ମାର୍କା ବେଶଟି ଲେଖାଏଁ ପଡ଼ି ହାତୀ ପଟୁଆର ଆଗେ ଆଗେ ବାଟ କଢ଼େଇ ନେଉଛନ୍ତି। ହାତୀ ଉପରେ ଯେଉଁ ହଉଦା ପଡ଼ିଛି ତା ଉପରେ ବିରାଟ ବିରାଟ ମୂଷା ସୁନେଲି ରଙ୍ଗରେ ଧଳା ସିଲ୍‌କ କନା ଉପରେ ଛପା ହୋଇଛି। ଯେ କେହି ବୁଝିପାରିବ ହାତୀ ଯେକି ବିଘ୍ନରାଜ ଗଣେଶଙ୍କ ପ୍ରତୀକ, ମୂଷାତାର ବାହନ। ଉପସ୍ଥିତ ଦର୍ଶକ ମାନଙ୍କୁ ଭାରତୀୟ

ସଂସ୍କୃତିରେ ହାତୀ ସଂପର୍କରେ ଏକ ଝଲକ ଦେବା ପାଇଁ ଏବରହାର୍ଡ୍ଙ୍କ ଲିଖିତ ମ୍ୟୁଜିୟମ୍‌ରୁ ପ୍ରକାଶିତ ଜର୍ମାନ ଭାଷାର ଏକ ଛୋଟିଆ ବିଜ୍ଞାପନ ପତ୍ର ବଣ୍ଟା ଚାଲିଛି। ଜୁରିକ୍ ରାଜଦାଣ୍ଡରେ ହାତୀ ଓ ମୂଷାର ପରିକଳ୍ପନା ବେଶ କୌତୂହଳ ସୃଷ୍ଟିକଲା। ପରେ ପରେ ଦେଖିବାକୁ ମିଳିଲା ମାହୁନ୍ତ ପୋଷାକର ଛାତି ଉପରେ ମଧ ବାହନ ମୂଷାର ସଂକେତ ଓ ମାହୁନ୍ତ ଦୁଇଜଣ ଯେଉଁ ପତାକା ଧରିଛନ୍ତି ସେଥିରେ ଓଡ଼ିଶୀ ଢ଼ଙ୍ଗରେ ଦୁଇଟି ଗଜାନନ ମୁଖା ଲେଖା ହୋଇଛି। ଭବନାଥ ଭାବିଲେ ଏବରହାର୍ଡ୍ ତାଙ୍କ ଆସିବାକୁ ଆଉ ଟିକିଏ ଅପେକ୍ଷା କରିଥିଲେ ସେ ପତାକା ଦୁଇଟିକୁ ଜମେଇ ଦେଇଥାନ୍ତେ। ବାରବରା କହିଲେ ''ଭବନାଥ ତମେ ଯିମିତି ଭାରତରେ ରାତାରାତି ପ୍ରଦର୍ଶନୀ ପାଇଁ ହେଉବା ଯେ କୌଣସି ଉତ୍ସବ ପାଇଁ ହେଉ, ସବୁ କଥା ଚଟାପଟ୍ କରି ପକାଅ ଏଠି ସିମିତି ହୁଏନା। ମାସ ମାସ ଆଗରୁ ଆୟୋଜନ ନ ହେଇଥିଲେ କିଛି ହୁଅନ୍ତାନି। ଏଣୁ ତୁମେ ଆସିବା ପର୍ଯ୍ୟନ୍ତ କଣ ରହିହୁଅନ୍ତା। ତମେତ ଏବରହାର୍ଡ୍ଙ୍କୁ ଜାଣ। ଏସବୁ କଥାରେ ସେ କେତେ ହୁସିଆର। ଭବନାଥ ଭାବୁଥିଲେ ଓଡ଼ିଶାରେ ବି ଆଗେ ଏଇମାନଙ୍କ ଦେଶଭଳି ଟିକିନିଖି ଯୋଜନା କରି ଆଗୁଆ କାମ ହେଉଥିଲା। ନ ହେଲେ ''ବାହାଘର ବେଳେ ବାଇଗଣ ରୁଆ'' କଥାଟା ଚ଼ଳିଥାନ୍ତା କିମିତି ? ବାହାଘର ବେଳେ ବାଇଗଣ ରୁଆ ହୁଏନି। ଏମିତି ଅନେକ କଥା ହେଇହେଇ ଭବନାଥ ଓ ଫିସର୍ ପରିବାର 'ଜୁମ୍ କିଲ୍' ହାଉସ୍‌ରେ ପହଞ୍ଚିଲେ। ସେଠି ହାତୀମାନେ ଆହୁରି ପହଞ୍ଚି ନାହାନ୍ତି। ହାତୀ ପୁଣି ଚାଲିବେତ ? ରାସ୍ତା ଧାରେ ଧାରେ ଜୁରିକ୍‌ର ନରନାରୀ, ଆବାଳ ବୃଦ୍ଧ ବନୀତା ହାତୀ ଦେଖିବାପାଇଁ ଗଣେଶ ଓ ମୂଷା ପତାକା ଧରି ଠିଆ ହେଇଛନ୍ତି। ହାତୀମାନେ ଢ଼ଳି ଢ଼ଳି ମୁଣ୍ଡକୁ ହଲେଇ ହଲେଇ ତଳକୁ ଉପରକୁ କରି ଚାଲିଛନ୍ତି। ମନେହେଉଛି ଜୁରିକ୍‌ରେ ଆଜି

ଗଣେଶ ଚତୁର୍ଥୀ। ଖରାଦିନେ ଥଣ୍ଡା କାକରରୁ ଉଦ୍ଧାର ପାଇବା ପାଇଁ, ବିଘ୍ନ ବିନାଶକ ଗଜାନନଙ୍କ ସମ୍ମାନାର୍ଥେ ଠିଆ ହେଇଛନ୍ତି ହଜାର ହଜାର ଜୁରିକ୍ ବାସୀ। ଧନ୍ୟ ଧନ୍ୟ ଗଜାନନ ତୋ ଅପାର ମହିମା। ଖାଲି ବାକି ରହିଲା ଜାଣିବା ପାଇଁ ଏମାନେ ଆଫ୍ରିକାର, ବର୍ମାର ନା ଓଡ଼ିଶାର। ପଟୁଆର ପାଖେଇ ଆସିଲା ପରେ ଜଣାପଡ଼ିଲା ଏମାନେ ନିଶ୍ଚିତ ଭାବେ ଓଡ଼ିଶାର ନୁହଁନ୍ତି। ବିରାଟ ବିରାଟ ପାହାଡ଼ ସଦୃଶ ବପୁମାନ୍ କଦଳୀ ମଂଜା ଭଳି ଲମ୍ବା ଲମ୍ବା ଦାନ୍ତ ଓ ତାଳଗଛ ଭଳି ଶୁଣ୍ଢ ହଲେଇ ଝପଟି ଆସୁଛନ୍ତି ହାତୀ ଦଳ କିନ୍ତୁ ଇତିହାସ ପୃଷ୍ଠା ଓଲଟାଇ ସ୍ମୃତିକୁ ଚକଟିଲେ ଜଣା ପଡୁଛି ଏଗୁଡ଼ିକ ଠିକ୍ ଗଜପତି ରାଜାର ହାତୀ। ଗଜପତି ରଜା ଯୁଦ୍ଧ ପଟୁଆରରେ ଗଲାବେଳେ ଏଥିରୁ ପାଞ୍ଚଶ ହଜାରେ ବିଶାଳକାୟ ଦନ୍ତା କଳା ମେଘ ଭଳି ମାଡ଼ିଯାଉଥିବେ। ବାଟ ଅବାଟ ନ ମାନି ଶତ୍ରୁ ଶିବିରରେ ହଇଚଇ ପଡ଼ିଯାଉଥିବ। ମନେ ପଡ଼ିଲା ପ୍ରଫେସର ରଜେନ୍ଦ୍ର ପ୍ରସାଦ ଦାସ ତାଙ୍କ କୋଣାର୍କ ମନ୍ଦିରର ବୟ ଚକଡ଼ା ତର୍ଜମା କରୁକରୁ 'ସୁଦେହିକ' ହାତୀକଥା କହୁଥିଲେ। ଏଗୁଡ଼ିକତ ଠିକ୍ ସେଇମିତିକା ଦେଖାଯାଉଛନ୍ତି। ରେମନ୍ ସର୍କସ ବାଲା କଣ ବିଦେସେଟ୍ ହାତୀ ରଖିଛନ୍ତି? ନା ସେହି ବୁଢ଼ା ହଡ଼ା ଦୁର୍ବଳିଆ ହାତୀଗୁଡ଼ିକୁ ଜୁରିକ୍‌ରେ ଭଲଭଲ ଚିଜ୍, ବଟରେ ଖୁଆଇ ଅଙ୍ଗୁର ରସ ପିଆଇ ସୁଦେହିକ କରିଦେଇଛନ୍ତି। ହାତୀମାନେ ବୀର ଦର୍ପରେ ଜୁରିକ୍‌ର ପାହାଡ଼ିଆ ଅଙ୍କାବଙ୍କା ରାସ୍ତାଦେଇ 'ଜୁମ୍ କିଳ' ହାଉସ୍ ଆଡ଼କୁ ମାଡ଼ି ଆସୁଛନ୍ତି। କିଲ୍ ପାଖା ପାଖି ଠିଆ ହେଇଥିବା ଶହେ ଦୁଇଶହ ସୁଇସ୍ ପିଲା ଚିଲ୍ଲେଇ ଉଠିଲେ ''ଏଲିଫାଣ୍ଟେନ୍ ଏଲିଫାଣ୍ଟେନ୍''। ସମସ୍ତେ ମୂଷିକ ବାନିଆନ୍ ପିନ୍ଧିଛନ୍ତି। ହାତରେ ଖଣ୍ଡିଏ ଖଣ୍ଡିଏ ମୂଷା ଆକୃତିର ରୁଟି। କିଏ ମୂଷାର ମୁଣ୍ଡରୁ ପୁଳାଏ କାମୁଡ଼ି ସାରିଲାଣିତ ଆଉ କିଏ ଲାଙ୍ଗୁଡ଼ ଗିଳିସାରିଲାଣି।

ହାତୀ ଦଳ ପାହାଡ଼ିଆ ରାସ୍ତାର ଟିକିଏ ଉପରକୁ ଉଠିଯାଇ ଅଟକି ଗଲେ। ଆଗରେ ଆଗେଇ ଆସିଲେ ଦୁଇ ଦନ୍ତାହାତୀ, ଓଟିଡ଼ିସି ପୋଷ୍ଟରରେ ଛପା ହାତୀଭଳି ଦେଖାଯାଉଛନ୍ତି। ସମସ୍ତେ ତରସି ଗଲେ। ଉପସ୍ଥିତ ଦର୍ଶକମାନଙ୍କୁ ହାତୀ ଦୁଇଟି ଶୁଣ୍ଢ ଉଠେଇ ଅଭିବାଦନ ଜଣେଇଲେ।

ତା ପରେ ଧୀରେ ଧୀରେ ଆଗେଇ ଗଲେ ମ୍ୟୁଜିୟମ୍‌ର କବାଟ ପାଖକୁ। ଶୁଣ୍ଢ ଉଠେଇ ଛୁଉଁନଛୁଉଣୁ କବାଟ ଦୁଇଟି ଆପେ ଆପେ ଖୋଲିଗଲା। ହାତୀ ପଛେଇ ପଛେଇ ମ୍ୟୁଜିୟମ୍ ସାମ୍‌ନାର ଅଷ୍ଟାଦଶ ଶତାବ୍ଦୀର ମର୍‌ମେଡ଼ର ପାଣି ଫୁଆର। ଫୁଆର ପାଖରେ ପହଞ୍ଚିଲେ ପାଣିର ଲୋଭ ସମ୍ଭାଳି ନ ପାରି। ଏଇଠି ଶୀତ କାକରକୁ ଦେହସୁହା କରି ଚାରୋଟି ଜଳକନ୍ୟା ଓ ଚାରୋଟି ପରଲଗା ପରୀ ଛୁଆ ପାଣିରେ ଖେଳୁଛନ୍ତି। ଜଳକନ୍ୟା ଚାରିଜଣ ମାଠିଆରୁ ଅନବରତ ପାଣି ଫୁଆରାରେ ଢ଼ାଳି ଚାଲିଛନ୍ତି ଓ ପରୀଛୁଆ ମନେ ହେଉଛି ପାଟି କୁଳି କରି ପାଣି ଫିଙ୍ଗୁଛନ୍ତି। ସକାଳ ଖରାରେ ସାତରଙ୍ଗର ଇନ୍ଦ୍ରଧନୁ ଖେଳିଯାଉଛି ଉଦ୍‌ଘାଟନ ଉତ୍ସବକୁ ଅଧବେଳ ବର୍ଣ୍ଣିଳ କରି। ଏମାନେ ସମସ୍ତେ ବ୍ରୋଞ୍ଜର। ଦେହରେ ସମୟର ପେଟିନା। ଏମାନଙ୍କ ସହିତ ହାତୀ ମିଶିଗଲେ। ରଙ୍ଗ ତ ଏକା। ଏବେ ସେମାନେ ଶୁଣ୍ଢରେ ପାଣି ଶୋଷାଡ଼ି ଦେଇ ପୁଣି ଫୁଆରାରେ ଛାଡ଼ିଲେ। ଫୁଆରର ପାଣି ଚହଲି ଉଠିଲା। ହାତୀ ଦୁଇଟି ନିଜ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଭୁଲିଯାଇ ପାଣି ଫିଙ୍ଗାରେ ମାତିଗଲେ। ଦେଖଣାହାରୀଙ୍କ ମଧ୍ୟରୁ ଜଣେ ଅଧେ ମତ ଦେଲେ ଜଳକନ୍ୟା ଉଠେଇ ଦେଇ ଚାରୋଟି ହାତୀ ଶୁଣ୍ଢ ଖଞ୍ଜିଦେଲେ ଫୁଆରାରେ ଏକ ନୂତନତ୍ୱ ଆଣି ହୁଅନ୍ତା ଏବଂ ତାହା ହୁଅନ୍ତା ଏହି ପ୍ରଦର୍ଶନୀର ସ୍ମାରକୀ। ଦୁଇ ଶହ ବର୍ଷର ଫୁଆରର ବ୍ରୋଞ୍ଜ ମୂର୍ତ୍ତି ଉଠେଇ ଦେବା ପ୍ରସ୍ତାବ ଭବନାଥଙ୍କ

ମନକୁ ପାଇଲାନାହିଁ। ତାଙ୍କର ମନେ ହେଲା ଯଦି ଚ୍ଚୁରିକ୍ ବାସୀଙ୍କ ହାତୀ ପ୍ରେମ ବଳି ପଡୁଛି ତାହେଲେ ଜ୍ୟୁରିକ୍‌ର କୌଣସି ଛକ ଜାଗାରେ କୋଣାର୍କ ଢ଼ଙ୍ଗର ହାତୀଟିଏ ଠିଆ କରେଇ ଦିଆଯାଇପାରେ। ଇଂରାଜୀ ସାହେବ ମାନେ ସିନା ବହୁତ ଚେଷ୍ଟା କରି ସୁଦ୍ଧା ନବଗ୍ରହ ପାଟଟିକୁ ନେଇ ପାରି ନ ଥିଲେ, ଏବେ କିନ୍ତୁ ରଘୁ ମହାପାତ୍ରଙ୍କୁ କହିଲେ ହାତୀଟିଏ ଗଢ଼ି ଦିଅନ୍ତେ ଓ ସୁଇସ୍ ସାଇବ ମାନେ ଯୋଗାଡ଼ ଯନ୍ତ୍ର କରି ସେଇଟିକୁ ଜ୍ୟୁରିକ୍ ଉଠେଇ ଆଣନ୍ତେ ଜ୍ୟୁରିକ୍ ହ୍ରଦ ଭିତରେ ବସେଇ ଦେଲେ ମଧ୍ୟ ସମସ୍ତେ ସବୁବେଳେ ଦେଖିପାରନ୍ତେ। ପାଣି ଓ ହାତୀ ମଧ୍ୟରେ ସଂପର୍କ ବଳବତ୍ତର ରହନ୍ତା। ଜ୍ୟୁରିକ୍‌ରେ ଖୋଦେଇ କରି ଦେଲେ ହୁଅନ୍ତା ଯେ ଏଠି କନ୍ଦା ପଥର କାହିଁ? ପୁଣି ସେଇ ଅସୁବିଧା। ପଥର ଉଠେଇ ଆଣିବା। ତା ସାଙ୍ଗକୁ ଓଡ଼ିଆ କାରିଗର ଦଳକ ରହିବା, ଖାଇବାରେ ହଇରାଣ ହରକତ। ସେମାନଙ୍କୁ ପ୍ରତିଦିନ ଡ଼ାଲମା ଓ ଭାଙ୍ଗ ଦେବ କିଏ? ଏଠି ଥଣ୍ଡାରେ ନିହାଣ ଠିକ୍ ଚାଲିବନି। ଛୁଅିକାମ ହେବା ଏକାବେଳକେ ଅସମ୍ଭବ।

ମାହୁନ୍ତ ହାତୀ ଦୁଇଟିକୁ ତାଗିଦା ଦେଲା। ହାତୀ ଦୁଇଟି ବୋଲ ମାନି ପାଣି ଖେଳରୁ ବିରତ୍ ହେଲେ। ପ୍ରଦର୍ଶନୀ ଉଦ୍‌ଘାଟନର ପରବର୍ତ୍ତୀ କାର୍ଯ୍ୟକ୍ରମ ଥିଲା ଶୁଣ୍ଢରେ ଝୁଲେଇ ଛୋଟ ଛୋଟ ପିଲାମାନଙ୍କୁ ଦୋଳିଖେଳେଇବା। ଏବେ ବିଳମ୍ବରେ ହେଲେ ମଧ୍ୟ ଶିଶୁଙ୍କ ମନୋରଞ୍ଜନ କାର୍ଯ୍ୟକ୍ରମ ଆରମ୍ଭ କରାଗଲା। ବହୁ ବାପା, ମାଁ, ଅଭିଭାବକ, ଅଭିଭାବିକା ନିଜ ନିଜ ପିଲାଛୁଆଙ୍କୁହାତୀ ଶୁଣ୍ଢରେ ବସେଇ ଦୋଳି ଖେଳେଇଲେ। କିଏ କିଏ ଗୋଟିଏ ଛାର ପଶୁ ଦାୟିତ୍ୱରେ ନିଜ ଛୁଆକୁ ଛାଡ଼ି ଦେବାପାଇଁ ମଙ୍ଗିଲେ ନାହିଁ। ବାରବରା ମଧ୍ୟ ଅଞ୍ଜଳିକୁ ଛାଡ଼ି ଦେବାପାଇଁ ମନା କରିଦେଲେ। ଲୋଡିକା ବଡଟେ ଝିଅ, ଏଣୁ ତାର ଦୋଳି ଖେଳିବାର ପ୍ରଶ୍ନ ଉଠୁନି।

ଏସବୁ କାର୍ଯ୍ୟ ଚାଲିଥିବା ବେଳେ ହାତୀ ମାନେ ଭଦ୍ରତା ନ ମାନି 'ମଳତ୍ୟାଗ' କରିବା ଆରମ୍ଭ କଲେ। ସାଇବମାନେ ଏଭଳି ଏକ ପରିସ୍ଥିତି ପାଇଁ ଆଗରୁ ପ୍ରସ୍ତୁତ ନ ଥିଲେ। ହାତୀମାନେ ପାଣିରେ ଖେଳାଖେଳି କରି ସାମାନ୍ୟ ଉତ୍ତେଜିତ ହେବା ଫଳରେ ବୋଧହୁଏ ଏଭଳିଏକ ଦାୟିତ୍ୱହୀନ କାର୍ଯ୍ୟ କରିପକାଇଲେ। ହାତୀ ଖାଏ ଯେତେ ହଗେ ସେତେ। ଛୋଟ ଛୋଟ ପାହାଡ଼ ଭଳି କୋଡ଼ିଏ ତିରିଶଟି ଗଦା। କଥା ହେଉଛି ଯେ ଟଏଲେଟ୍ କାଗଜରେ ପୋଛା ପୋଛି କରି ସଫା କରି ଦେଇ ହେବନି। ହାତୀକୁ ହାତ ପାଉନି। ହୁଏତ ବାଜାରରରେ ମିଳୁଥିବା ସବୁଯାକ ଟଏଲେଟ୍ ପେପର ଅଣ୍ଟିବ ନାହିଁ। କିଂ କର୍ତ୍ତବ୍ୟ ବିମୂଢ଼ ହେଇ ଦଳେ ମ୍ୟୁଜିୟମ୍ କର୍ମଚାରୀ ସେଗୁଡ଼ିକୁ ଗୋଟାଗୋଟି କରି ଗୋଟାଏ ଜାଗାରେ ଗଦେଇଲେ। ବିଚରା ମାହୁନ୍ତ ପ୍ଲାଷ୍ଟିକ୍‌ର ଛରି ମୁଣା ଧରି ଧାଇଁଲା ଏବଂ ନିଜ ହାତୀ ମାନଙ୍କର ପରିତ୍ୟକ୍ତ 'ମଳ' ମୁଣାରେ ଭର୍ତ୍ତି କରିବାକୁ ଲାଗିଲା। ଭବନାଥଙ୍କ ପାଇଁ ଏତାଦୃଶ୍ୟ କାର୍ଯ୍ୟ ଆଦୌ ଅଭଦ୍ରୋଚିତ ନଥିଲା। ଝାଡ଼ା ଝପଟ କଥା ରୋକିବ କିଏ? କୁଆଡ଼େ ଥରେ ଆଠଗଡ଼ ରାଜା ଓ ତାଙ୍କ ସଭାପଣ୍ଡିତ ହାସ୍ୟକବି ଯଦୁମଣୀ ଏକା ସାଙ୍ଗରେ ଡ଼ଙ୍ଗାରେ ଯାଉଥିଲେ। ରାଜାଙ୍କୁ ପ୍ରବଳ ତଲବ ଦେଖେଇଲା। ରାଜା ହେଉବା ଚଣ୍ଡାଳ ହେଉ ଆଉ ରୋକେ କିଏ? ସାଙ୍ଗେ ସାଙ୍ଗେ ରାଜା ଟେରା ବାନ୍ଧିବାକୁ ଆଦେଶ ଦେଲେ। ପାଇକ ଟେରା ପକେଇ ଦେଲେ। ରାଜା ଅତର୍କ୍କୀ ସମ୍ଭାଳି ନ ପାରି ସେହି ଡ଼ଙ୍ଗା ଉପରେ 'ମଳତ୍ୟାଗ' କଲେ। ତା ପରେ କଣ ସବୁ ହେଇଥିବ ସେ ସଂପର୍କରେ ଆଲୋଚନା ଏଠାରେ ନିରର୍ଥକ। ଯାହା କହିବା ପାଇଁ ଭବନାଥ ଚାହୁଁଥିଲେ ସେଥିପାଇଁ ଉଦାହରଣର ଏତିକି ଅଂଶ ଯଥେଷ୍ଟ। 'ମଳତ୍ୟାଗ' ଠାରୁ ବଳିପରମ ସୁଖ ଆଉ କିଛି ନାହିଁ। ହାତୀମାନେ ତାହାହିଁ କରିଛନ୍ତି।

ଏଭଳି ଏକ ହାଲୁକା ହାସ୍ୟରସାତ୍ମକ ପରିସ୍ଥିତିରେ ଏବରହାର୍ଡ଼ଙ୍କର ହଠାତ୍ ଗୋଟିଏ କଥା ମନେ ପଡ଼ିଲା। ସେ ପ୍ରସ୍ତାବ ଦେଲେ ଭବନାଥ। ହାତୀତ ଭେଜିଟେରିଏନ୍ ପ୍ରାଣୀ। ଏଣୁ ଏହାର 'ମଳ'ରେ ଗାଈର ଗୋବର ଭଳି ପାଣ ଦାୟୀନି ଶକ୍ତି ଭରିରହିଥିବ। ଗାଈ ଗୋବର ପ୍ରବଳ ଭାବରେ ଜମି ବାଡ଼ିର ପ୍ରାକୃତିକ ଖତ ଭାବରେ ବ୍ୟବହୃତ ହେଇ ପାରୁଛି। ଏଣୁ ହାତୀ 'ମଳ' ବଗିଚାରେ ବ୍ୟବହାର କଲେ ଜମିର ଉର୍ବରିକା ଶକ୍ତି ଶହେଗୁଣ ବଢ଼ିଯିବ। ଏଣୁ ଚାଲ ଗୋଟେଇବା। ସାଙ୍ଗେ ସାଙ୍ଗେ ଏବରହାର୍ଡ଼ ଓ ଭବନାଥ ଘରୁ ଆଣିଥିବା ରୁକ୍‌ସାକ୍ ଗୁଡ଼ିକ ଖାଲି କରି ସେଥିରୁ ଦଶ ପନ୍ଦର ଯାଏ ଭର୍ତ୍ତି କଲେ। ଭବନାଥ ନିଜେ ଏଭଳି କାର୍ଯ୍ୟ କେବେ କରିନଥାନ୍ତେ। ସେ ଗୋବର ଗୋଟେଇ ନାହାନ୍ତି ନୁହେଁ ହାତୀଙ୍କ 'ମଳ' ବର୍ଜନୀୟ। କିନ୍ତୁ ବଂଧୁ କହୁଛନ୍ତି, ଏଣୁ ଲାଗିପଡ଼ିଲେ। ବାରବରା ଦୁଇ ବଂଧୁଙ୍କର ଏଭଳି କାର୍ଯ୍ୟ ଦେଖି ମୁରୁକି ମୁରୁକି ହସୁଥାନ୍ତି। ଅନ୍ୟ ଦେଖଣାହାରୀମାନେ ଭାବିଲେ, 'ଆମେ ମସ୍ତବଡ଼ ଭୁଲ୍ କଲୁ। ହାତୀ ଆମ ପାଇଁ ଉପହାର ସ୍ୱରୂପ ଦେଇଥିବା ବଲ୍‌ଗୁଡ଼ିକ ଆମେ ଗ୍ରହଣ କଲୁନାହିଁ। ମନେ ହେଉଛି ଏ ଦୁହେଁ ଖୁବ୍ ଶିଆଣିଆ। ବୋଧହୁଏ ମ୍ୟୁଜିୟମର ନିର୍ଦ୍ଦେଶକ ଏବରହାର୍ଡ଼ ଏଇ ଭାରତୀୟ ବୁଦ୍ଧିରେ ପଡ଼ି ସୁଯୋଗ ମାରିନେଲେ। ଭାବିଲା ବେଳକୁ ଆଉ କିଛି ଅଛି ଯେ କିଛି କରିହେବ। ଆଗରୁ ଦୁଇ ମୁଣାରେ ବୋଝେଇ କରି ଦୁଇ ମାହୁନ୍ତ ନେଇ ଯାଇଥିଲେ। ଏବେ ଏଇ ଦୁଇ ଜଣ ସବୁ ଶେଷ କରିଦେଲେ। ହଠାତ୍ ଉପକାର ଭିତରେ ଏତିକି ହେଲା ଯେ ମ୍ୟୁଜିୟମ୍ ଓ ଫାଉଣ୍ଡେନ୍ ସାମନା ଜାଗାଟି ପ୍ରାୟ ସଫା ହୋଇଗଲା। ଦୁଇବଂଧୁ ବଂଧୁପତ୍ନୀ ବାରବରା, କନ୍ୟା ଅଂଜଳି ଓ ଲୋତିକା ଫେରିଲେ। ପିଠିରେ ବୋଝେଇ ହୋଇଥାଏ ରୁକ୍‌ସାକ୍‌ରେ ହାତୀଙ୍କ ପରିତ୍ୟକ୍ତ

'ମଳ'। ଗର୍ବରେ ସେମାନଙ୍କ ଛାତିଫାଟି ପଡୁଥାଏ। ସେମାନେ ଯିମିତି ଦିଗ୍‌ବିଜୟ କରି ଫେରୁଛନ୍ତି।

ଘରେ ପାଦ ଦେଉ ନ ଦେଉଣୁ ଏବେର୍‌ହାର୍ଡ଼ଙ୍କୁ ତର ସହିଲାନି। ଚଟାପଟ୍ ବାଡ଼ି କବାଟ ଦେଇ ବଗିଚାରେ ସିଧା ସିଧା 'ମଳ' ନଣ୍ଡ ଗୁଡ଼ିକୁ ହାତରେ ଖେଳେଇ ପକେଇ ପରିବା ପଟାଳିରେ ବିଛେଇ ଦେଲେ। ଭବନାଥ ତାପରେ ଗଣେଶ ଚତୁର୍ଥୀରେ ଚୁଡ଼ାଚକଟା ବାଣ୍ଟିଲା ପରି ଗୋଲାପ, ଟ୍ୟୁଲିପ୍, ଅରକିଡ୍ ଓ ଚେରି, ଏପଲ୍ ମୂଳମାନଙ୍କରେ ବଡ଼କୁବଡ଼, ସାନକୁ ସାନ ମାପରେ ବାଣ୍ଟିଦେଲେ। ମନରେ ଅମାପ ଆନନ୍ଦ। ଏଇ ଥରକ ଅନୁଚ୍ଛା ଫୁଲଗଛ ଗୁଡ଼ିକ ଶିଘ୍ର ପୁଷ୍ପବତୀ ହେବେ। ଫଳରେ ଗଛ ଗୁଡ଼ିକ ନଇଁ ପଡ଼ିବ। ଗୋଲାପ ଫୁଟିବ ଯେ ବାସନା ମହକିଯିବ। ଟ୍ୟୁଲିପ୍ ରଙ୍ଗ ଆହୁରି ଗାଢ଼ା ହୋଇଯିବ। ସାଲାଡ୍, ମୂଳା, ଗାଜର, ଟମାଟୋ ସବୁ ଏନ୍‌ଲାରଜ ମେସିନ୍‌ରେ ନେଗେଟିଭ୍‌ର ଛାଇ ବଢ଼ିଗଲା ଭଳି ଏମାନେ ବଢ଼ିଯିବେ। ଏସବୁ ଭାବନାର କିନ୍ତୁ ଆର୍ଥନୈତିକ କାରଣ ନ ଥିଲା। ଥିଲାକେବଳ ଏକ କୃଷି ବୈଜ୍ଞାନିକର ଦୃଷ୍ଟିଭଙ୍ଗୀ। ଏକ ମଡ଼ର୍ଣ୍ଣ ଏକସ୍‌ପେରିମେଣ୍ଟ। ସାଇବ ମାନଙ୍କୁ ସବୁବେଳେ ଏକାକଥା ଭଲ ଲାଗେନି। କିଛି କିଛି ଏକ୍‌ସପେରିମେଣ୍ଟ୍ କରି ବସନ୍ତି, ବର୍ତ୍ତମାନ ଦୁଇବଂଧୁ ଯେଉଁ ପ୍ରୋଜେକ୍ଟଟିକୁ ହାତକୁ ନେଲେ ବାସ୍ତବିକ ତା ସଂପୂର୍ଣ୍ଣ ଭାବେ ନୂତନ ଧରଣର। ତା ପରବର୍ତ୍ତୀ ଦିନ ଗୁଡ଼ିକର ଘଟଣା ଏଇ ଭଳିଆ। ସେଦିନ କଥା କିମିତି ସରିଗଲା। ସଂନ୍ଧ୍ୟା ହେଲାବେଳକୁ କୁଆଡ଼େ ଥିଲେ କେଜାଣି ପଣ ପଣ ଡ଼ାହାଣିଆ ମାଛି ଭଣ ଭଣ ହେବାକୁ ଲାଗିଲେ। ମଳାଂଶ ଗୁଡ଼ିକ ଖନ୍‌ଭିନ୍ କରି 'ଏଡ୍‌ଭାନ୍‌ସଡ୍ ଷଡ଼ି' ଗବେଷଣା କରିବାକୁ ଲାଗିଲେ। ତା ପରଦିନ ସକାଳୁ ଅସରାଏ ବର୍ଷା। ତୋରାଣି ଆସିଲା ଧରିବା ଭଳି ସେଗୁଡ଼ିକ ସଡ଼ ସଡ଼ ହେବାକୁ ଲାଗିଲା।

ତା ଭିତରେ ହଜାର ହଜାର ପୋକ ଆବିର୍ଭୂତ ହେଲେ ଯିମିତି ରକ୍ତବୀଯର ପ୍ରତିରକ୍ତ ବିନ୍ଦୁରୁ ଜନ୍ମିଥିଲେ ଶତ ସହସ୍ର ଅସୁର। ବର୍ତ୍ତମାନ ବଗିଚାର ସୁଗନ୍ଧିତ ଅବାହାଓ୍ବା ସଢ଼ିଯାଇଥିବା ହସ୍ତୀ ମଳାଂଶର ଉତ୍କଟ ବାସନାରେ କଦର୍ଯ୍ୟ ହେବାକୁ ଲାଗିଲା। ଯିଏ କେହି କବାଟ ଖୋଲି ବଗିଚାରେ ଖରା ପୁଇଁବା ପାଇଁ ଭାବିଲା ନାକ ତାର ଫାଟି ପଡ଼ିଲା ବାସ୍ନାରେ।

ଏବରହାର୍ଡ଼ ଓ ଭବନାଥ ନିଜକୁ ଦୋଷୀ ମଣିଲେ। ଜୁରିକ୍‌ର ଧରାଯାଉ କୃଷି ବିଶ୍ୱବିଦ୍ୟାଳୟର ପ୍ରଫେସରଙ୍କ ପାଖକୁ ଟେଲିଫୋନ ହେଲା। ବୋଧହୁଏ କୃଷି ବିଜ୍ଞାନୀ ଜଣକ ଉପଦେଶ ଦେଲେ ଯେତେଶୀଘ୍ର ସମ୍ଭବ 'ମଳାଂଶ' ଗୁଡ଼ିକୁ ବଗିଚାରୁ ଉଠେଇ ନେବାପାଇଁ। ସଂଧ୍ୟା ହେଇ ଯାଉଥାଏ। ଆକାଶରେ କଳାମେଘ। ଏଠି ମେଘ, ବର୍ଷା, ଖରା କାହାର କିଛି ଠିକଣା ନାହିଁ। ଏଇ ବର୍ଷା ଅଜାଡୁଛି ତ ପର ମୁହୂର୍ତ୍ତରେ ଫର୍ଚ୍ଚା ଖରା ଭୂଇଁ ଶୁଖେଇ ଦେଲାଣି। ଭବନାଥ ଠଉରେଇ ନେଲେ କିଛି ଗୋଟିଏ ଅଘଟଣ ଘଟିଗଲା। 'ହାତୀମଳକୁ' ନେଇ ଏବରହାର୍ଡ଼ ଓ ବାର୍‌ବରାଙ୍କ ଭିତରେ ଦି ଚାରି ପଦ ଉଚ୍ଚ ବାଚ ହେଲା। ତାପରେ ଏବରହାର୍ଡ଼ ଭବନାଥଙ୍କୁ ବଗିଚା ଆଡ଼େ ଡ଼ାକିଲେ। ଦୁଇ ବଂଧୁ ଦୋଷୀ ଭଳି ପୁଣି ଏକ୍ସପେରିମେଣ୍ଟ ଆରମ୍ଭ ପାଇଁ ସଜ ହେଲେ। ପ୍ଲାଷ୍ଟିକ୍‌ର ବଡ଼ ଡ଼ବା ମାନ ଆସିଲା। ବିଭିନ୍ନ ଗଛ ମୂଳେ ଥୁଆ ହେଲା। ଭବନାଥ ଟର୍ଚ୍ଚ ଟିପି ଧରିଲେ ଆଉ ଏବରହାର୍ଡ଼ ଗୋଟେଇବା ଆରମ୍ଭ କଲେ। ଯେତିକି ତରତରରେ 'କ୍ଲମ୍ କିଲ୍' ଫାଉଣ୍ଡେନ୍ ପାଖରୁ ସଂପୂର୍ଣ୍ଣ ନଷ୍ଟଗୁଡ଼ିକୁ ଗୋଟେଇ ଥିଲେ ତାର ଦୁଇ ଗୁଣ କି ଚାରିଗୁଣ ବେଗରେ ହାତ ଚାଲିଲା। ମଝିରେ ସିନେମା ହଲ ଭିତରେ ରିଲ୍ ଛିଣ୍ଡିଗଲେ ଯିମିତି ହୁଏ। ଭବନାଥ ତଟସ୍ଥ ହୋଇ ଚାହିଁ ରହିଥାନ୍ତି। ବେଳେ ବେଳେ ଫୁଲ ମାନଙ୍କ ଉପରେ ଟର୍ଚ୍ଚ ପକେଇ ସେମାନଙ୍କ ସୌନ୍ଦର୍ଯ୍ୟ ଦେଖିବା

ପାଇଁ ତାଙ୍କର ଇଚ୍ଛାହୁଏ। କାଳେ ଏବରହାର୍ଡ଼ ବିରକ୍ତ ହେବେ ଏଣୁ ଗୋପାଳପୁରର ଲାଇଟ୍ ହାଉସ୍‌ର ଲାଇଟ୍‌ଭଳି ଏ ଗଛ ମୂଳରୁ ସେ ଗଛ ମୂଳକୁ ଘୁରେଇ ଚାଲିଥାନ୍ତି। ଏବରହାର୍ଡ଼ ମଝିରେ ମଝିରେ ତର୍ଜମା ଦେଉଥାନ୍ତି। ଭବନାଥ, ଆମେ ହାତୀ ମଳ ସଂପର୍କରେ ଯାହା ଧରଣା କରିଥିଲେ ତାହା ସଂପୂର୍ଣ୍ଣ ଭ୍ରମାତ୍ମକ। ଏଣୁ ଆମେ ବଗିଚାର ଉର୍ବର ଜମିର ଅଧିକ କ୍ଷତି କରିବା ପୂର୍ବରୁ ଅତିଶୀଘ୍ର ମଳଗୁଡ଼ିକୁ ସଫା କରିଦେବା ଦରକାର। ତାପରେ ସଂଗୃହିତ ମଇଳା ବଡ଼ ବଡ଼ ପ୍ଲାଷ୍ଟିକ୍ ଜରିମୁଣା ଭିତରେ ଭର୍ତ୍ତିହୋଇ ଘର ଆଗରେ ଦୁଇ ଦିନ ରହିଲା ମ୍ୟୁନିସିପାଲଟି ଗାଡ଼ି ଆସିବା ଯାଏଁ। ସକାଳୁ ସଂଧ୍ୟା ମୁଣା ଗୁଡ଼ିକୁ ଦେଖିଲେ ଭବନାଥ ଓ ଏବରହାର୍ଡ଼ଙ୍କର ନିଜ ବୋକାମି କଥା ମନେପଡ଼େ। ନିଜକୁ ବିଦ୍ରୁପ କରିବାକୁ ଇଚ୍ଛାହୁଏ, ଅବଶେଷରେ କ୍ରମେ ମ୍ୟୁନିସିପାଲିଟି କର୍ତ୍ତୃପକ୍ଷଙ୍କ ଦୟାରୁ ମୁଣା ଗୁଡ଼ିକ ଅପସରି ଗଲା। ସତ କିନ୍ତୁ ଦେଖାଗଲା ବଗିଚାର ଗଛଗୁଡ଼ିକ ସବୁଜରୁ ହରିଦ୍ରାଭ ହେଇଯାଉଛି। ଫୁଲସବୁ ଶୁଖି ଝଡ଼ିଗଲା। ପ୍ରଜାପତି, ଭଅଁର, ମହୁମାଛି ଇତ୍ୟାଦି ଉଡ଼ିବା ବନ୍ଦ କରିଦେଲେ। କଳା କଳା ଚଢ଼େଇ ଆଉ ଚେରିଫଳ ଖାଇଲେନି, ଯେମିତି ଅଦିନରେ ବାର୍ଦ୍ଧକ୍ୟ ଆସିଯାଏ। ବଗିଚା ସିମିତି ଦେଖାଗଲା। ଶ୍ରୀ ହୀନ। କଥା ଛପି ରହିଲାନି। ଜଣାଗଲା ଏହା ନିଶ୍ଚିତ ଭାବେ ଗଜପତିଙ୍କ ମହିମା। କଥା କାନକୁ କାନ ହେଇ ଜୁରିକ୍ ସହର ସାରା ବ୍ୟାପିଗଲା। ମ୍ୟୁଜିୟମର ସମସ୍ତ ସହକର୍ମୀ ଜାଣିଲେ। ସେ ବର୍ଷତ ଫସଲ ନଷ୍ଟ ହେଲା ଆଉ ଦୁଇ ବର୍ଷ ଧରି ବଗିଚାରେ ଘାସ ସୁଦ୍ଧା କଅଁଳିଲା ନାହିଁ।

ଅଂଜଳି ଓ ଲୋତିକା ବେଳେ ବେଳେ ମଜାରେ ତାଳିମାରି ମାରି ନାଚିଲେ। ଆଉ ଗାଇ ଉଠିଲେ "ଏଲିଫାଣ୍ଟେନ୍" ଏଲିଫାଣ୍ଟେନ୍।

ଏବରହାର୍ଡ଼ ଆଉ ରାଗିଲେନି। ପ୍ରଦର୍ଶନୀର ଏତେ ସୁନାମ

ହେଲା ଯେ ପ୍ରଦର୍ଶନୀ ପୁସ୍ତିକା ବାରମ୍ବାର ଛପାହେଲା । ପ୍ରତି ନୂଆ ପୁସ୍ତିକା ଛାପି ସାରିବା ପରେ ଏବରହାର୍ଡ୍ ମଧ୍ୟ ନିଜ ଅଫିସ ଚୌକିରେ ବସି ଟିକିଏ ବଡ଼ ପାଟିରେ ପଢ଼ିବାକୁ ଲାଗିଲେ ''ଏଲିଫାଣ୍ଟେନ୍ ଏଲିଫାଣ୍ଟେନ୍'' ।

# ଶ୍ରୀମତୀ ନେରୁଦା

ତା ନାଁଟି ହୁଏତ ଭବନାଥଙ୍କ ଠିକ୍ ମନେ ପଡୁନି। ସେ ବୋଧହୁଏ ଭବନାଥଙ୍କୁ ନେରୁଦା ବୋଲି କହିଥିଲା। ଜଣେ ସ୍ତ୍ରୀ ଲୋକକୁ 'ନେରୁଦା' ବା ନେରୁ 'ଦାଦା' କହିବା ପାଇଁ ଭବନାଥଙ୍କ ମନ ମାନିଲା ନାହିଁ। 'ନେରୁଦା ' କହିଲେ 'ଲିଙ୍ଗଶୁଦ୍ଧି' ହେଉ ନ ଥିବାରୁ ଭବନାଥଙ୍କ ପାଟିରେ ପରଟି ଯାଉଥିଲା ନେରୁଦି। ଯାହାକୁ ଆଉ ଅଧିକା ତର୍ଜମା କଲେ ନେରୁଦିଦି ହୋଇଯିବ। କୁନ୍ଦୁଲୁ କାଦଲ ମଣିଷଟିଏ। ମସ୍କୋର ଲୋକଯାକ ଅଧିକାଂଶ ଏମିତି। ଶୀତଦିନ ହେଲେ ଭୁବନେଶ୍ୱର ଉଡ଼ାଜାହାଜ ପଡ଼ିଆରେ ଏଭଳି ମାଇପି ଲୋକ ଦଳ ଦଳ ଦେଖିବାକୁ ମିଳନ୍ତି।କିନ୍ତୁ ନେରୁଦି ସେମାନଙ୍କ ଭିତରୁ ଜଣେ ବୋଲି କହିଦେଇ ଚୁପ୍ ରହିଗଲେ କଥାଟି ଅସୁନ୍ଦର ହେବ।

ନେରୁଦି କାହିଁକି କେଜାଣି ଦେଖିବାକୁ ଈଷତ୍ ଶ୍ୟାମଳ, ଗହମିଆ ରଙ୍ଗ। ଗାଲ ଦୁଇଟି ଛେନା ପୋଡ଼ ଭଳି। ତା ସାଙ୍ଗକୁ ନୀଳ ଡ଼ୋଳା ଥାଇ ଉସାଣିଆ ଆଖି। ଦେଖିଲେ ମନେ ହେବ ଏହି ଆଖି ଦିଟାରେ ଅନେକ କଥା ଛପି ରହିଛି। ମସ୍କୋ ବିମାନ ବନ୍ଦରର ଧୂସର ରଙ୍ଗର କାଚ ଆଢୁଆଳୁ ନେରୁଦିଙ୍କ ଏହି ଆଖି ଦୁଇଟି ଉପରେ ଭବନାଥଙ୍କ ପ୍ରଥମ ଦୃଷ୍ଟି ପଡ଼ିଥିଲା। ବିମାନ ଯାତ୍ରୀଙ୍କ ଭିଡ଼ ଭିତରୁ ଭବନାଥଙ୍କୁ ଠାବ କରିବାରେ ନେରୁଦିଙ୍କୁ ମୋଟେ ପରିଶ୍ରମ କରିବାକୁ ପଡ଼ିଲାନି। ନୀଳ ରଙ୍ଗର ଜୀନ ପେଣ୍ଟ ସାଙ୍ଗକୁ କାଣ୍ଡିଆର କୁର୍ତା, କାନ୍ଧରେ ମଠା ଚାଦର ଆଉ

କନ୍ଥାର ଝୁଲା ମୁଣି । ଭବନାଥ କାଚ ଏପଟୁ ତାଙ୍କ ଆଡ଼କୁ ଅପଲକ ଆଖିରେ ଚାହିଁ ରହିଥିବା ମହିଳା ଜଣକୁ ହାତ ହଲେଇ ସ୍ୱାଗତ ଜଣେଇଲେ । କାଚ କାନ୍ଥର ଦୁଇପଟୁ ଦୁଇଟି ପାପୁଲି ଯୋଡ଼ି ହେଇଗଲା ଆଉ ଭବନାଥଙ୍କ ମନଟି ନେରୁଦିର ଭସା ଆଖି ଭିତରେ ହଜିଗଲା ।

ଜଣ ଜଣ ହେଇ ଭବନାଥଙ୍କ ସହଯାତ୍ରୀ ମାନେ ମସ୍କୋ ଏୟାରପୋର୍ଟର ଲାଉଞ୍ଜ ଛାଡ଼ିଲେ । ମନେହେଲା ଭବନାଥଙ୍କୁ ଏକା କରି ସମସ୍ତେ ଛାଡ଼ି ଚାଲିଯାଉଛନ୍ତି । ସୁଇଡ଼େନ ଓ ସୁଇଜରଲ୍ୟାଣ୍ଡରେ ଚେଷ୍ଟାକରି ମଧ ଭବନାଥ ମସ୍କୋପାଇଁ ଭିସାଟିଏ ଯୋଗାଡ଼ କରିପାରିଲେ ନାହିଁ। ଭାରତ ଉତ୍ସବ ବାଲା ଭରସା ଦେଇ କହିଥିଲେ ମସ୍କୋ ଏୟାର ପୋର୍ଟରେ ପାଦ ଦେଉ ଦେଉ ଭିସା କାଗଜ ଆପେ ଆପେ ପହଞ୍ଚିଯିବ । ଏୟାର ପୋର୍ଟର ଶୀତଳ ନିରବତା ଭାଙ୍ଗି କାହାର ପାଦଶବ୍ଦ ଶୁଣାଗଲା । ଶବ୍ଦଗୁଡ଼ିକ ଭିତରେ କଠୋରତାର ଛନ୍ଦ । ଭବନାଥ ନିଜକୁ ସଜାଡ଼ିନେଲେ । ଚାହିଁଲା ବେଳକୁ ଦୁଇଟି ସିକ୍ୟୁରିଟି ପୁଲିସ ଲମ୍ୱା ଲମ୍ୱା ଗୋଡ଼ ବଢ଼େଇ ତାଙ୍କଆଡ଼କୁ ମାଡ଼ି ଆସୁଛନ୍ତି । ସବୁ ଦେଶର ପୁଲିସ ଗୁଡ଼ିକ ଏକା ଭଳି ଦିଶନ୍ତି । ପୋଷାକର ରଙ୍ଗ ଯାହା ଭିନ୍ନ ଭିନ୍ନ । ଭବନାଥ ଭାବିଲେ ଭିସା କାଗଜ ନେଇ ଆସୁଛନ୍ତି । ନେରୁଦି ହୁଏତ ଆଣିପାରିଥାନ୍ତେ । ପୁଲିସ ଦୁଇଜଣ ଭବନାଥଙ୍କୁ ଚାହିଁ ମସ୍କୋର ଖରାଭଳି ମେଘୁଆ ମୁହଁରେ ଟିକିଏ ହସର ରେଖାଟି ମାନ ଆଙ୍କିଦେଇ ପୁଣି ଗମ୍ଭୀରତା ମଧ୍ୟରେ ହଜିଗଲେ । ଭବନାଥ ତାଙ୍କ ପିଛା ଧରିଲେ । ଦୁଇ ତିନୋଟି କାଚର ଦୁଆର ପାରିହେଲା ପରେ ନେରୁଦି ପାଖରେ ପହଞ୍ଚିଲେ । ନେରୁଦି ତାର ଇଷତ୍ ଗୋରା ହାତଟି ବଢ଼େଇ ଭବନାଥଙ୍କୁ ସ୍ୱାଗତ କଲା । ସ୍ପର୍ଶ ଭିତରେ ଯିମିତି ଗୋଟିଏ ଆତ୍ମୀୟତାର ଶିହରଣ ଉଭୟଙ୍କ ଭିତରେ ଖେଳିଗଲା । ନେରୁଦି ମୁହଁରେ ମେକପ୍

ନେସି ହେଇ ପଡ଼ିଥିଲା । ଓଠରେ ପିଙ୍କ୍ ରଙ୍ଗର ଲିପ୍ଷ୍ଟିକ୍ । ଭ୍ରୂତଳେ ଛାମକୋଳି ରଙ୍ଗର ଶେଡ୍ । ଆଖିତଳେ ଲୁଚିପାରି ନଥିବା ବୟସର ଦାଗ । ବାଳ ରଙ୍ଗେଇଚି । ଭାରତର ଅତିଥିଙ୍କୁ ଆଣିବତ ! କାନରେ ଇମିଟେସନ୍ ସୁନାର ଦୁଇଟି ନୋଳି । ଗଳାରେ ଦି ସୋରା ରୁପା ହାର ବଡ଼ କଣ୍ଠିର । ମଝିରେ ନାଳି ନାଳି ପୋହଳା । ସ୍ତନ ଦୁଇଟି ଉତୁଙ୍ଗ । ଛିଟ ସିଲ୍କ ବ୍ଲାଉଜ୍ ଭିତରେ ଯିମିତି ଅଥୟ । ପେଟ ତଳେ ବହଳା ଚମର ବଳୟ । ଏୟାର ପୋର୍ଟକୁ ଆସିବା ଆଗରୁ ନେରୁଦି ବହୁତ ଚିନ୍ତାକରିଛି । ଖସି ଯାଉଥିବା ବୟସକୁ ଧରି ରଖିବା ପାଇଁ ବହୁ ଭାବରେ ଚେଷ୍ଟାକରିଛି । ଚିତ୍ରକରର ଆଖି । ବାରି ହେଇ ଯାଉଛି ନେରୁଦିର ବୟସ । ଚାଳିଶି ଉପରକୁ ।
ପଦେ ଦୁଇ ପଦ ସମ୍ଭାଷଣ ପରେ ପରେ ନେରୁଦି ଭବନାଥଙ୍କୁ ବହୁ ପୁରୁଣା ବନ୍ଧୁ ଭଳି ତାରିଫ୍ କରିବାରେ ଲାଗିଲା । ଆରମ୍ଭ କଲା ଚେହେରା ଆଡୁ । ଭବନାଥ ଟିକିଏ ଶଙ୍କିଗଲେ ଯିମିତି ଦମକାଏ ଶୀତଳ ପବନରେ ଦେହଟା ହେଇଯାଏ । ନେରୁଦି କହିଲା 'ଡ଼କ୍ଟର ଭବନାଥ, ଆପଣ ବୋଧହୁଏ ତିରିଶି ପାଖାପାଖି' । ଜଣେ ବିଦେଶିନୀଙ୍କ ମୁହଁରେ ଏମିତି କଥା ପଦକ ଅପ୍ରତ୍ୟାଶିତ ମନେ ହେଲେ ମଧ ଆପାତତଃ ସ୍ୱାଗତ ଯୋଗ୍ୟ । ଭବନାଥ ଉତ୍ତର ବା କ'ଣ ଦିଅନ୍ତେ, ମୁରୁକି ହସି ଦେଲେ । ନେରୁଦି ଆଉ ଯାହା ଆଗେଇଥାନ୍ତା ନିଜକୁ ସମ୍ଭାଳି ନେଲା । ଉଭୟେ ଏକଜିଟ୍ ଦ୍ୱାର ଦେଇ ବାହାରେ ପହଞ୍ଚିଲେ । ନେରୁଦି ତାର ନୀଳ ରଙ୍ଗର ଓଭର କୋଟ ମଡ଼େଇ ହେଲା । କଳାରଙ୍ଗର ଲିମୋସାଇନ୍ ପାର୍କିଂରେ ଅପେକ୍ଷା କରିଛି । ନେରୁଦି ଓ ଭବନାଥ ପଛ ସିଟରେ ବସିଲେ । ସଂଧ୍ୟା ଆସନ୍ନ । ଶୀତ ଦିନ । ବାହାରେ ବରଫର ଗୁଣ୍ଡି ଭୁରା । ରାସ୍ତାରେ ଆଲୁଅ ଜଳି ସାରିଥାଏ । ମସ୍କୋଆ ନଦୀର କୂଳେ କୂଳେ କାର୍ ଛୁଟିଲା । ନଦୀର ହେମାଳ ପାଣିରେ ବହୁତକ କୋଠା

ଓ ତାର ଆଲୋକିତ ଝରକା ଗୁଡ଼ିକର ପ୍ରତିବିମ୍ବ ହେମାଳ ପାଣିକୁ ସୁନା କରିଦେଇଛି। ମନେ ହେଉଛି ତରଳ ଲାଭାର ଧାରାଟିଏ। ଭବନାଥ ସୋଭିଏତ୍ ମସ୍କୋର ସଂଧ୍ୟା ଉପଭୋଗ କରିବାକୁ ଲାଗିଲେ। ନେରୁଦି ସେହି ମୁହୂର୍ତ୍ତ ଗୁଡ଼ିକ ପାଇଁ ଯେମିତି ଅଲୋଡ଼ା ହୋଇପଡ଼ିଲା। ବୋଧହୁଏ ସେ ନିଜକୁ ସାମାନ୍ୟ ଅସହାୟା ମନେକଲା। ନିରବତା ଭାଙ୍ଗି ନେରୁଦି ଭବନାଥଙ୍କୁ ପଚାରିଲା ତାଙ୍କ ସ୍ତ୍ରୀଙ୍କ କଥା, ପରିବାର କଥା। ସବୁରି ଭିତରେ ଭବନାଥଙ୍କୁ ତାରିଫ କରିବାର ପ୍ରଚ୍ଛନ୍ନ ଉପକ୍ରମ। ଭବନାଥ ଏବେ ମସ୍କୋର ଦୃଶ୍ୟ ଉପଭୋଗ ସହିତ ନେରୁଦିର ପ୍ରଶ୍ନ ଗୁଡ଼ିକର ଉତ୍ତର ଯେତେ ସୀମିତ ହେଇପାରେ, ହଁ ନାଁରେ ସାରିଦେଉଥିଲେ।ଗାଇଡ଼ ଅତିଥିଙ୍କୁ ତାଙ୍କ ସ୍ୱପ୍ନଭିତରେ ବୁଡ଼ିବା ପାଇଁ ସୁଯୋଗ ଦେବା କଥା।

କାର୍ କ୍ରେମଲିନ୍ ଛକ ପାଖର ମସ୍କୋ ହୋଟେଲ୍ ଆଗରେ ପହଞ୍ଚିଲା। ମନେ ହେଉଛି ଅଷ୍ଟାଦଶ ଶତାବ୍ଦୀର ବାରୋକ୍ ଶୈଳୀରେ ନିର୍ମିତ ପ୍ରକାଣ୍ଡ କୋଠା। ପାଞ୍ଚ ଛ ମହଲା ହେବ। କାର୍‌ରୁ ଓହ୍ଲେଇ ଭବନାଥ ଓ ନେରୁଦି ଏହି ହୋଟେଲର ତିନି ମହଲା ଉପରେ ଥିବା ଏକ ସିଙ୍ଗଲ୍ ରୁମ୍‌ରେ ପହଞ୍ଚିଲେ। ନେରୁଦି ଭବନାଥଙ୍କୁ ତାଙ୍କ ରୁମ୍‌ରେ ଛାଡ଼ିଦେଇ ରାତ୍ରିଭୋଜନର ନିମନ୍ତ୍ରଣ ଜଣେଇ ପ୍ରଥମ ମହଲା ରିସେପସନ୍ ପାଖରେ ଅପେକ୍ଷା କରିବି ବୋଲି କହି ତଳକୁ ଓହ୍ଲେଇଲା। ଭବନାଥ ନିଜକୁ ଆଶ୍ୱସ୍ତ ଅନୁଭବ କଲେ। ଜଣେ ବିଦେଶିନୀ ଗାଇଡ଼ର ଏକରକମ ଜବରଦସ୍ତ ବ୍ୟବହାରରେ ଭବନାଥ ନିଜକୁ ଠିକ୍ ଖାପ ଖୁଆଇ ପାରୁନଥିଲେ। ରୁମରେ ଖଟ ଉପରେ ବସିପଡ଼ି କ୍ରେମଲିନ୍ ସ୍କୋୟାର ପଟର ଝରକା ଖୋଲିଲେ। କମ୍ୟୁନିଷ୍ଟ ସାମ୍ୟବାଦର ମୂଳପୀଠ ଏହି ସ୍କୋୟାର ଯେଉଁଠି କବର ଭିତରେ ଚିରନିଦ୍ରାରେ ଶୋଇ ରହିଛନ୍ତି ଲେଲିନ୍। ତାଙ୍କ ଦର୍ଶନ ପାଇଁ ଲମ୍ୱା ଧାଡ଼ି ଏବେବି ଶେଷ ହେଇନି।

ତା ପଛକୁ ପ୍ରେସିଡ଼ିଅମ୍ ହଲ ଯେଉଁଠି ନୀତି, ନିୟମର ବେଦ ମନ୍ତ୍ର ଉଚ୍ଚାରିତ ହୁଏ। ତାକୁ ଉଚ୍ଚା ଉଚ୍ଚା ପାଚିରି ଘେରି ରହିଛି। ପ୍ରବେଶ ଦ୍ୱାରରେ ଚିତ୍ରିତ ପଥର ମୂର୍ତ୍ତି ଭଳି ଠିଆହେଇ ରହିଛନ୍ତି ଜଗୁଆଳ। ମୁହଁରେ, ଠିଆହେବା ଭଙ୍ଗିରେ ଶାସନର କଠୋରତା, ଶୃଙ୍ଖଳାର ବେଡ଼ି। ଉପରେ ଲାଲ ପତାକା ଫର୍ ଫର୍ ହେଇ ଉଡ଼ୁଛି। ସ୍କୋୟାରରେ ଏବେ ବି ଦଳ ଦଳ ପର୍ଯ୍ୟଟକ ବୋଧହୁଏ ଅକ୍ଟୋବର ବିପ୍ଳବ ପ୍ୟାରେଡ଼ର ରୋମନ୍ଥନ କରୁଛନ୍ତି। ଏହି ସ୍କୋୟାର ସାମ୍ୟବାଦର ତୀର୍ଥସ୍ଥଳୀ। ଏଠାର ପ୍ରତ୍ୟେକ ଧୂଳି କଣାରେ ମହାନ ବିପ୍ଳବୀ ନେତାମାନଙ୍କ ପଦ ରଜ ମିଶି ରହିଛି। ତା ସହିତ ଲକ୍ଷ ଲକ୍ଷ ନିଷ୍ପେଷିତ ଶ୍ରମିକ ଓ କୃଷକର ଲହୁ ଓ ଲୁହ ପ୍ରତ୍ୟେକ ଧୂଳି କଣାକୁ ପବିତ୍ର କରିଦେଇଛି। ଏଇଠି ଚରମ ତ୍ୟାଗ, ଉତ୍ସର୍ଗ ଓ ବିପ୍ଳବର ସ୍ପନ୍ଦନ। ନିରେଖି ଚାହିଁଲେ ଏବେ ବି ମନେହୁଏ ସମଗ୍ର ସୋଭିଏତ୍ ରୁଷର ଜନତା ବଜ୍ର ଗମ୍ଭୀର ସ୍ୱରରେ ସାମ୍ୟବାଦ, ମାନବିକତା ଓ ସମତାର ମହିମା ଘୋଷଣା କରୁଛି। ହାତ ଟେକି ଦୃଢ଼ ମୁଷ୍ଟିରେ ଲାଲ ସଲାମ ନେଉଛି। ରକ୍ତରେ ସ୍ୱାକ୍ଷର କରୁଛି ମାନବିକତାର ପୃଷ୍ଠା ଖୋଲି।

କ୍ରେମ୍ଲିନ୍ ଛକର ଅପର ପଟେ ଭବନାଥଙ୍କ ହୋଟେଲ ପାଖା ପାଖି ଲେନିନ୍‌ଙ୍କ ପଥରର ଆବକ୍ଷ ମୂର୍ତ୍ତି ତଳେ ଚିର ପ୍ରଜ୍ୱଳିତ ଅଗ୍ନିକୁଣ୍ଡ। କଳା ମାର୍ବଲର ବେଦିକା ତଳୁ ପାହାଚ ପାହାଚ ହେଇ ଉପରକୁ ଉଠି ଯାଇଛି। ଏହି ବେଦିକାର ଅନ୍ୟପଟେ ବ୍ରୋଞ୍ଜର ଶ୍ରମିକ ଓ କୃଷକ ହାତ ଛନ୍ଦାଛନ୍ଦି ହେଇ ଠିଆ ହେଇଛନ୍ତି। ସେହି ଚରମ ତ୍ୟାଗ ଓ ଆଦର୍ଶର ପରିବେଶ। କିନ୍ତୁ ଏହି ଆଦର୍ଶର ବାହୁଛାୟା ତଳେ ପାର୍ଥିବ ପ୍ରେମରେ ଛନ୍ଦି ହେଇଯାଉଛନ୍ତି ଶହ ଶହ ନବ ବିବାହିତ ଦଂପତି। ପୁରୁଷ କଳା ପୋଷାକରେ ଓ ସ୍ତ୍ରୀ ଶୁଭ୍ରବସ୍ତ୍ରା ହେଇ ଘନ ଘନ ଆଲିଙ୍ଗନ ଓ ମୁହୁର୍ମୁହୁଃ ଚୁମ୍ବନରେ

ନିଜକୁ ହଜେଇ ଦେଉଛନ୍ତି। ଅଗ୍ନିକୁ ସାକ୍ଷୀ ରଖି ଏକ ନବ ବିବାହିତ ଜୀବନ ଓ ଭବିଷ୍ୟତର ସୁନେଲି ସ୍ୱପ୍ନର ଶପଥ ନେଉଛନ୍ତି। ହୁଏତ ମନୋରମ ସଂଧ୍ୟାର ଶପଥ ସକାଳର ସୂର୍ଯ୍ୟକିରଣରେ ବରଫ ଭଳି ତରଳି ଯାଉଛି। ପୁରୁଷ ଖୋଜିଛି ଅନ୍ୟ ଏକ ପ୍ରେମଲତାର ସ୍ପର୍ଶ ଓ ସ୍ତ୍ରୀ ଖୋଜୁଛି ଅନ୍ୟ ଏକ ନୀଡ଼ ଯେଉଁଠି ସେ ମୁଣ୍ଡ ଗୁଞ୍ଜି ପାରିବ। ପୁଣି ପ୍ରତିଜ୍ଞା ଓ ପୁଣି ସ୍ଖଳନ।

ହଠାତ୍ ଭବନାଥଙ୍କ ରୁମର କଲିଙ୍ଗବେଲ ବାଜି ଉଠିଲା। ଭବନାଥ ପ୍ରକୃତିସ୍ଥ ହୋଇ ଉଠିଲେ। କବାଟ ଖୋଲିଲା ବେଳକୁ ପୁଣି ନେରୁଦି। ଭବନାଥ କ୍ରେମ୍‌ଲିନର ଐତିହାସିକ ପଟ୍ଟଭୂମିରେ ନିଜକୁ ହଜେଇ ଦେଇ ରାତ୍ରି ଭୋଜନର ସମୟ ଗଡ଼େଇ ଦେଇଥିଲେ। ଭବନାଥ ନେରୁଦି ପଛରେ ଚାଲିଲେ ମସ୍କୋ ହୋଟେଲ ଭୋଜନ ଗୃହକୁ। କାନ୍ଥରେ ବାରୋକ ଢ଼ଙ୍ଗର ତୈଳଚିତ୍ର ମଝିରେ ମଝିରେ ବ୍ରାକେଟ୍ ଓ ଆର୍ଚ୍ଚ ମାନଙ୍କରେ ଜଡ଼ଉ(ଗିଲ୍‌ଡେଡ୍) କରାଯାଇଥିବା କାଠ ବା ଷ୍ଟୁକୋର କାରିଗରୀ। ଖାଲି ଯାଗାମାନଙ୍କରେ ଟେପେଷ୍ଟ୍ରିର ସୁନ୍ଦର ସୁନ୍ଦର ଅଖ୍ୟାୟିକା ଓ ମଝିରେ ମଝିରେ ବଡ଼ ବଡ଼ ଦର୍ପଣ। ତାଙ୍କୁ ଚାହିଁ ଟେବୁଲ, ଚୌକି ଓ ଅନ୍ୟ ଆସବାବପତ୍ର। ହଲର ଗୋଟିଏ କଣରେ ଲଘୁ ସଂଗୀତ ସହ କାମୋନ୍ମତ୍ତା ନରନାରୀଙ୍କ ଉଦ୍ଦଣ୍ଡ ନୃତ୍ୟ। ସଂଗୀତ ଓ ନୃତ୍ୟର ଉଦ୍ଦାମ ଛନ୍ଦ ଓ ତା ସହିତ ବିଭିନ୍ନ ପାନୀୟ ମାନଙ୍କର ମୃଦୁ ମୃଦୁ ବାସ୍ନାରେ କୋଠରୀଟି ଉଠୁଥିଲା ଓ ପଡୁଥିଲା। ଅନ୍ୟଏକ କଣରେ ଦୁଇଟିକିଆ ଟେବୁଲଟିକୁ ନେରୁଦି ରିଜର୍ଭ କରିନେଇଥିଲା ଅତିଥିଙ୍କ ପାଇଁ ଓ ନିଜ ପାଇଁ। ଭବନାଥ ଏଭଳି ଏକ ବିଳାସ ଓ ସମ୍ଭୋଗର ଲାସ୍ୟମୟ ପରିବେଶକୁ ଟିକିଏ ତଳେ ଲକ୍ଷ୍ୟ କରିଥିବା ତ୍ୟାଗ ଓ ଉତ୍ସର୍ଗର ଭବ୍ୟ ଓ ମଧୁର ସ୍ମୃତି ସହିତ ଯୋଚି ବିଚାରୁଥିଲେ- ମସ୍କୋର, ନେରୁଦିର ଓ ତାଙ୍କ ନିଜର ସ୍ଥିତି।

ପରିଚାରିକା ରୂପାଥାଳିରେ ଆଣି ପରଷି ଦେଲା ଖାଦ୍ୟ ଓ ପାନୀୟ । ମନେ ହେଉଛି ନେରୁଦି ଆଗରୁ ବ୍ୟବସ୍ଥା କରିସାରିଥିଲା । ଏହା ସୌଜନ୍ୟ ମୂଳକ ନହେଲେ ମଧ୍ୟ ସ୍ନେହ ଓ ଶ୍ରଦ୍ଧାର ଆହ୍ୱାନ ଭାବି ଭବନାଥ ସବୁ ଗ୍ରହଣ କରିବାକୁ ପ୍ରସ୍ତୁତ ହେଲେ । ଯାହା କିଛି ଗ୍ରହଣ ନ କରିବାକୁ ହେଲେ ମଧ୍ୟ ନେରୁଦି ମାଧ୍ୟମରେ ହିଁ କରିବାକୁ ହେବ ଭାଷାର ବ୍ୟବଧାନ ପାଇଁ। ଏଣୁ ପାନୀୟ ସଂପର୍କରେ ନାସ୍ତିବାଣି ଶୁଣାଇବା କ୍ଷଣି ଅନୁମତି ନେଇ ନେରୁଦି ନିଜ ଭେନିଟି ବ୍ୟାଗ୍‌ରେ ବୋତଲ ଗୁଡ଼ିକ ଭର୍ତ୍ତି କରିନେଲା । ବହୁ ବର୍ଷ ଆଗରୁ ଭବନାଥ ନିଜେ ଏଭଳି କାର୍ଯ୍ୟ ଗାଁରେ ବ୍ରାହ୍ମଣ ଭୋଜନ ମାନଙ୍କରେ କରୁଥିଲେ । କିନ୍ତୁ ମସ୍କୋରେ ଓଡ଼ିଶାର ବ୍ରାହ୍ମଣୋଚିତ କାର୍ଯ୍ୟ ଜଣେ ସୋଭିଏତ୍ ଗାଇଡ୍ କରିପାରିବ ଏହା ତାଙ୍କୁ ଅଧିକ ଆଚମ୍ବିତ କରିଦେଲା । ଜୀବନରେ ବହୁବାର ଟୁରିଷ୍ଟ ଗାଇଡ଼ ଭୂମିକାରେ ଅବତୀର୍ଣ୍ଣ ହେଇମଧ୍ୟ ନିମନ୍ତ୍ରିତ ଅତିଥିଙ୍କ ଥାଳିରୁ ଖାଦ୍ୟ ଓ ପାନୀୟ ସେ କେବେ ଉଠେଇ ନେବାର ସାହସ କରିନାହାନ୍ତି । ନେରୁଦି ନିର୍ଲଜ ଭାବେ ଏକାର୍ଯ୍ୟ କରିପାରିଲା ଏଣୁ ତାକୁ ସାବାସ୍ ଦେବେ ନା ଘୃଣା କରିବେ ସେ ଦୋ ଦୋ ପାଞ୍ଚ ହେଉଥିଲେ । ଭବନାଥଙ୍କ ମନ କଥା ନେରୁଦି ବୋଧହୁଏ ବୁଝିପାରି ତାର ଏଭଳି କାର୍ଯ୍ୟର କୈଫିୟତ୍ ଭଳି କହିଲା ମସ୍କୋରେ ତାଙ୍କ ଦେଶର ଲୋକଙ୍କ ପାଇଁ କେବଳ ଭୋଡ଼କା । ରୁବଲରେ କିଣି ହେଇପାରିବ । ଅନ୍ୟାନ୍ୟ ୟୁରୋପୀୟ ପାନୀୟ ପାଇଁ କଞ୍ଚା ଡ଼ଲାର ଦରକାର । ତା ମିଳିବା ମଧ୍ୟ ସହଜସାଧ୍ୟ ନୁହଁ। ଏଣୁ ଆମେ ଗାଇଡ଼ ମାନେ ପାଣିପିଆ ଅତିଥିଟିଏ ପାଇଲେ ବୋତଲ ଗୁଡ଼ିକୁ ନିଜର କରିବାକୁ ଭୁଲୁନା । ତା ସଙ୍ଗେ ଏଭଳି କାର୍ଯ୍ୟ ଅସଂଗତ ଓ ଦୋଷାବହ ହେତୁ ଭବନାଥ ଏହି ଘଟଣାକୁ ନିଜ ପାଖରେ ଚାପି ରଖିବେ ଏତକ ଅନୁରୋଧ ମଧ୍ୟ କୈଫିୟତ

ସହିତ ସଂଗ୍ରଥିତ ଥିଲା। ଭବନାଥ ନିଜେ ଦୋଷୀଟି ଭଳି ହଁ ହଁ କରି ମୁଣ୍ଡ ନାଡ଼ିଲେ। ଖାଦ୍ୟ ବେଳକୁ ମଧ୍ୟ ଏକାକଥା। ଭବନାଥ ପାଞ୍ଚଶ ଗ୍ରାମ ଓଜନର ଦେଶୀକୁକୁଡ଼ାକୁ ପରିବାରର ପାଞ୍ଚଜଣଙ୍କ ମଧ୍ୟରେ ବାଣ୍ଟି ଖାଇବାରେ ଅଭ୍ୟସ୍ତ। ମସ୍କୋରେ ଗୋଟିଏ ଗୋଟିଏ କୁକୁଡ଼ା ଗୋଡ଼ ତାଙ୍କ ଜଙ୍ଘ ସହିତ ସମାନ ହେବ। କେତେ ଖାଇବେ। ଚିମୁଟେ ଦିଚିମୁଟା ଖାଉ ଖାଉ ହାଲିଆ, ଏଉଡ଼ି ଆସିଲାଣି, ବଳକାତକ ବା ହୁଅନ୍ତା କଣ ? ନେରୁଦି ମଫସଲି ଗୃହିଣୀ ଭଳି ଗୋଟେଇ ପୋଟେଇ ଜରିକାଗଜରେ ଗୁଡ଼େଇଦେଇ ତା ଥଳିରେ ଭର୍ତ୍ତିକଲା। ପରିଚାରିକା ଟେବୁଲ ପାଖରେ ଆଉଥରେ ପହଞ୍ଚିଲା ବେଳକୁ ଥାଳି ଖାଲି।

ମର୍ମ କଥାଟି ହେଲା ରାତ୍ରି ଭୋଜନ ବା ଜଳଖିଆ କେବଳ ବିଦେଶାଗତ ଅତିଥିଙ୍କ ପାଇଁ। ଗାଇଡ଼ କେବଳ ଗାଇଡ଼। ଭୋଜନ କରିବାର ସରକାରୀ ବ୍ୟବସ୍ଥା ନାହିଁ। ଗାଇଡ଼ ଚାକିରି ମସ୍କୋ ହେଉ ବା ଭୁବନେଶ୍ୱର ହେଉ, ଦେଶର ସଂସ୍କୃତି ଓ ଐତିହ୍ୟ ସଂପର୍କରେ ଭାଷଣ ଦେଇ ଦେଇ ଅତିଥିଙ୍କ ଚର୍ଚ୍ଚାରେ ନୟାନ୍ତ ହେଇ ଘରକୁ ଫେରି ଶୁଖିଲା ରୁଟି ବା ଚୁଡ଼ା ଚକଟା ଖାଇ ପେଟରେ ଓଦାକନା ପକେଇ ଶୋଇବା ପରିବର୍ତ୍ତେ ଏଭଳି ନିୟମ ବହିର୍ଭୂତ୍ ଓ ଅସୌଜନ୍ୟ ମୂଳକ କାର୍ଯ୍ୟ ନିଶ୍ଚିତ ଭାବେ ଯେ ଅଭିନନ୍ଦନୀୟ ଏକଥା ଭବନାଥ ମର୍ମେ ମର୍ମେ ଅନୁଭବ କରିପାରିଲେ। ତଥା କଥିତ ସାମ୍ୟବାଦର ରୁପେଲି ପରଦା ତଳେ ଦାରିଦ୍ର୍ୟର ନଖ ଦନ୍ତ ଗୁଡ଼ିକୁ ଅନୁମାନ କରିପାରିଲେ। ନେରୁଦି ବୋଧହୁଏ ପରିତ୍ୟକ୍ତା ଓ ଏକାକିନୀ। ମୁହଁରେ ବହଳ ମେକପ୍ ଓ ରସ ରସିଆ କଥା ନେରୁଦିଙ୍କ ଦୈନ୍ୟ ଓ ଅସହାୟତାକୁ ଘୋଡ଼େଇ ପାରିଲାନି। ଭବନାଥଙ୍କ ହୃଦୟ ସମ୍ବେଦନାରେ ଭରିଗଲା।

ମସ୍କୋରେ ଦିନ ପରେ ଦିନ ଆଦବ କାଏଦା, ଲିପଷ୍ଟିକ୍,

ପରଫ୍ୟୁମ୍‌ର କୁହେଳି ଭିତରେ ବିତିବାକୁ ଲାଗିଲା । ନେରୁଦି କଥା ମନେପଡ଼ିଲେ ଭବନାଥ ହୋଟେଲ ରୁମ୍‌ର ଝରକା ଖୋଲି ଲେନିନଙ୍କ ଆବକ୍ଷ ମୂର୍ତ୍ତିତଳର ଲେଲିହାନ ଅଗ୍ନିକୁଣ୍ଡକୁ ନିର୍ନିମେଷ ନୟନରେ ଅନେଇ ରହନ୍ତି । ନେରୁଦି ଦୁଇ ଦଶନ୍ଧି ତଳର ଯୌବନର ପାହାଚରେ ପ୍ରଥମ କରି ପାଦ ଦେଉଥିବା ସଦ୍ୟ ପ୍ରସ୍ଫୁଟିତ ଫୁଲଟିଏ । କଳା ପ୍ରଜାପତିଟିଏ ଉଡ଼ି ଆସି ଅଧର ଚୁମିଥିବ । ସେ ଅଙ୍ଗୁର ଲତା ଭଳି ଲୋଟି ପଡ଼ିଥିବ ପ୍ରେମର ଅତଳ ଗର୍ଭରେ । ପ୍ରଜାପତି ଚୁମି ଯାଇଥିବ ତାର ଗଣ୍ଡ, ଅଧର, ସ୍ତନ ଓ ଜଘନ । ଏଇମିତି ଦିନେ ଶୁଭ୍ର ବସ୍ତ୍ରାବୃତା ହେଇ ସଦ୍ୟସ୍ନାତା ନେରୁଦି ପ୍ରଜାପତିର ବାହୁରେ ବାହୁଛନ୍ଦି ମସ୍କୋର ମୁକ୍ତ ଆକାଶରେ ଉଡ଼ି ବୁଲିବାର ଉପକ୍ରମ କରିଥିବ । ସୋଭିଏତ୍ ରକେଟ ଠାରୁ ଆହୁରି ବେଗରେ ଯେଉଁଠି କେବଳ ଶୂନ୍ୟ ଆଉ ପ୍ରେମ । ତାପରେ ନୀଳ ଆକାଶରେ କଳାମେଘ ଘୋଟି ଆସିଥିବ । ଝଡ଼ ଝଞ୍ଜାରେ ପୃଥିବୀ ଅଶାନ୍ତ ହେଇ ଉଠିଥିବ । ପ୍ରେମର ବନ୍ଧନ ଶିଥିଳ ହେଇ ଉଠିଥିବ । ବାହୁବନ୍ଧନ ଖୋଲି ଯାଇଥିବ । ଆଉ, କଚାଡ଼ି ହେଇ ପଡ଼ିଥିବ ନେରୁଦି । ଏଣୁ ପ୍ରଜାପତିଟିଏ ଦେଖିଲେ ନେରୁଦି ପାଖୁଡ଼ା ଖୋଲିବ ଖୋଲିବ ହୋଇପଡ଼େ । ଏଭଳି ବୃନ୍ତଚ୍ୟୁତ ଫୁଲରୁ ମଧୁ ପିଇବା ପ୍ରଜାପତି ଭୁଲିଯାଏ ଏ ପିଇବାରେ ଆନନ୍ଦ ଅପେକ୍ଷା ଗ୍ଲାନି ବେଶି । ପ୍ରେମରେ ନୁହେଁ କାରୁଣ୍ୟରେ ଭବନାଥଙ୍କ ଆଖିପତା ଓଦେଇ ଯାଏ ।

ତା ହେଲେ ଏଇ ସେଇ ନେରୁଦି । ମସ୍କୋର ସଂସ୍କୃତି ବିଭାଗର ସରକାରୀ ଗାଇଡ଼ ସବୁ ବନ୍ଧନକୁ ଶିଥିଳ କରି ଉଡ଼ିବାକୁ ପୁଣି ଚେଷ୍ଟାକରୁଛି । ଦେଖିପାରୁନି ତାଭଳି ଶହ ଶହ ବୃନ୍ତଚ୍ୟୁତ ଫୁଲ ସମୟର ରଥଚକ୍ର ତଳେ ନିଷ୍ପେଷିତ ହେଇଯାଉଛନ୍ତି । ଭବନାଥ ତ ସହଜେ ଉଡ଼ିଗଲା ଚଢ଼େଇ । ନେରୁଦି ଆସି ଖବର ଦେଲା ଭବନାଥଙ୍କର ତାସକେଣ୍ଟ ପରିଦର୍ଶନ କାର୍ଯ୍ୟକ୍ରମ ସ୍ଥିରହୋଇ ଯାଇଛି ।

ଆସନ୍ତାକାଲି ମଧ୍ୟାହ୍ନ ଭୋଜନ ପରେ ଏରୋଫ୍ଲୋଟ ବିମାନରେ ବାହାରିବା। ସାଙ୍ଗରେ ମସ୍କୋ ଜାତୀୟ ସଂଗ୍ରହାଳୟର କ୍ୟୁରେଟର୍ ଗେଭିସ୍କି ଯିବ।

ଭବନାଥ ଭାବିଲେ ଯା ହେଉ ତାସକେଣ୍ଟର ପ୍ରଦର୍ଶନୀ ଗୃହଗୁଡ଼ିକ ଦେଖିନେଇ ଲୋକପ୍ରିୟ କଳାପାଇଁ ଉପଯୁକ୍ତ ଜାଗାଟିଏ ବାଛିନେଇ ହେବ। ତାସକେଣ୍ଟର ପରିବେଶ ଭିତରେ ଭାରତୀୟ ଭାବ ବେଶି। ଏଇ ଅଂଚଳରୁ ମୋଗଲ ସମ୍ରାଟ ବାବର ତାଙ୍କର ଭାରତ ଅଭିଯାନ ଆରମ୍ଭ କରିଥିଲେ। ଏହି ସହରରେ ସ୍ୱାଧୀନ ଭାରତର ଦ୍ୱିତୀୟ ପ୍ରଧାନମନ୍ତ୍ରୀ ଲାଲ୍ ବାହାଦୁର ଶେଷ ନିଶ୍ୱାସ ଛାଡ଼ିଥିଲେ। ବହୁ ଗୀର୍ଜାର ଗମ୍ବୁଜ, ଚୂଡ଼ା ଓ ମୋସେଲମ୍ ମାନଙ୍କର ଶିଖର ତାସକେଣ୍ଟ ଦିଗବଳୟକୁ କୁଞ୍ଚିତ କରିଦେଇଛି। ଦନ୍ତୁରିତ ବନଭୂମି। ପାର୍କମାନଙ୍କରେ ଶୋଭା ପାଉଥିବା ଖଜୁରୀ ଗଛମାନଙ୍କର ଦନ୍ତୁରିତ ଦେହ ଦେଖିଲେ ମୋଗଲ ବାଦଶାଙ୍କ କଥା ମନେପଡ଼ିଯାଏ। ମଝିରେ ଭୂମଧ୍ୟ ସାଗର ଡେଇଁଲେ ଆରବମାନଙ୍କ ଦେଶ। ଏଇଠାରୁ ଶହ ଶହ ଓଟ ପିଠିରେ ଟଟ୍ଟୁ ଘୋଡ଼ାମାନଙ୍କ ଉପରେ ସବାର ହେଇ ଚେଙ୍ଗିଜ୍ ଖାଁଙ୍କର ପୂର୍ବଜ ମାନେ ରୁଷ୍ପାଗିନାରୁ ଅଙ୍ଗୁର ମଦ ପିଇବା ଶିଖେଇ ଥିଲେ। ମୁଏଜିନ୍‌ମାନଙ୍କର ଗଗନ ପବନ ପ୍ରକମ୍ପିତ ସଂଧ୍ୟା ରାଗରେ ତାସକେଣ୍ଟ ସହର ପଲ୍ଲବିତ ହେଇ ଉଠୁଛି। ଏଠି ସାମ୍ୟବାଦର ଧ୍ୱଜା ଅଛି କିନ୍ତୁ ରୁବାୟତ ଓ ଓମରଖୟାମଙ୍କ ପ୍ରେମ ବଲ୍ଲରୀରେ ଧ୍ୱଜାଛଦି ହେଇ ଯାଇଛି। ବେଳେବେଳେ ଶିଳ୍ପୀର ଖିଆଲି ମନରେ ଭବନାଥ ଆଙ୍କି ଦେଉଛନ୍ତି ରୁବାୟତ୍ ଓ ଓମରଖୟାମ୍‌ର ଚିତ୍ର। ଭବନାଥ ଅଙ୍ଗୁର ଲତାଉପରେ ଝୁଙ୍କିପଡ଼ି ସ୍ୱକବିତା ବହିରୁ ଆବୃତ୍ତି କରୁଛନ୍ତି ଓ ଅନ୍ୟ ମନସ୍କହେଇ ମଦ୍ୟପାତ୍ର ବଢ଼େଇ ଦେଇଛନ୍ତି। ନେରୁଦି ଅଙ୍ଗୁର କୋଳିର ନାଲି ନାଲି ସୁରା ଢାଳି ଚାଲିଛନ୍ତି। ପର ମୁହୂର୍ତ୍ତରେ ଭବନାଥ ପ୍ରକୃତିସ୍ଥ

ହେଇ ପଡୁଛନ୍ତି। ଭାରତ ସରକାରଙ୍କ ପ୍ରତିନିଧି, ଲୋକପ୍ରିୟ କଳାର ଡିଜାଇନର ଓ ଓଡ଼ିଶା ସରକାରଙ୍କ ଜଣେ ଦାୟିତ୍ୱ ସଂପନ୍ନ କର୍ମଚାରୀ ଓମରଖୟାମ୍‌ଙ୍କ ଭୂମିକାରେ। ଓଡ଼ିଶାର ପ୍ରାତଃ ସ୍ମରଣୀୟ ଚିତ୍ରଶିଳ୍ପୀ ଗୋପାଳ ଚରଣ କାନୁନ୍‌ଗୋ ଏଭଳି ଏକ ଭାବପ୍ରବଣତାର ସନ୍ତୁଳି ହେଇ ଅନୁବାଦ କରିଥିଲେ ଓମରଖୟାମ୍। ତାଙ୍କରି କବିତାର ପଂକ୍ତି ଓ ଚିତ୍ରର ରୂପ ସର୍ଜନା ଏବେ ଭବନାଥଙ୍କ ମନେ ପଡ଼ିଯାଉଛି।।

'ଢାଳିଦିଅ ପ୍ରିୟେ ରକ୍ତ-ମଦିରା
ପିଆଲା ମୋ ଭରିଦିଅ,
ଲିଭିଯାଉ ତହିଁ ଅତୀତ ଦୈନ୍ୟ,
ଅନାଗତ ଶତ ଭୟ।'

ଏଇ ତାହାହେଲେ ତାସକେଣ୍ଟ ନଗରୀ। ଐତିହ୍ୟ ଓ ବାଦଶାହୀ ପରଂପରାର ଦୁର୍ଗ।

ଲେଭିସ୍କି ଓ ନେରୁଦିର ପଢ଼େନି। ଉଭୟେ ବୃନ୍ତଚ୍ୟୁତ ଫୁଲ। ପ୍ରଜାପତି ଖୋଜିବାରେ ବ୍ୟସ୍ତ। ଜଣେ ନିଜର ନାରୀତ୍ୱର ଦାବି ନେଇ ଆଉ ଜଣେ ଅପୁରୁଷ ନିଜକୁ ପ୍ରଜାପତିର ଗାଦିରୁ ଖସେଇ ଦେଇ ବୃନ୍ତଚ୍ୟୁତ ଫୁଲମାନଙ୍କ ସାଙ୍ଗରେ ପ୍ରଜାପତି ଖୋଜିବାରେ ବ୍ୟସ୍ତ। ସହକାମୁକ ବ୍ୟାଧିଗ୍ରସ୍ତ ଯୁବକଟିଏ। ଆଖିରେ କଜଳ ନାଏ। ଗାଲକୁ ଏପେଲ ଭଳି ରଂଜିତ କରେ। ଅଧରରେ ଲିପ୍‌ଷ୍ଟିକର ସ୍ପର୍ଶଦିଏ ଆଉ ଭ୍ରୁତଳେ ସବୁଜ ରଙ୍ଗର ଶେଡ୍ ଲଗାଏ। ଚାଲିରେ ମଧ୍ୟ ହଂସର ବିଭବ। ଏଣୁ ଲେଭିସ୍କି କାଳେ ଭବନାଥଙ୍କୁ ନିଜ ଜାଲରେ ଛନ୍ଦିଦେବ ସେଥିପାଇଁ ନେରୁଦି ସତର୍କ କରିଦେଇଥାଏ। ଭବନାଥ ଦେଖ! ଲେଭିସ୍କି ପୁରା ମାଇଚିଆ। ଏତେ ବଡ଼ଟିଏ ହେଲାଣି ହୋଟେଲରେ ରାତି କଟେଇବା ଢଙ୍ଗ ଯାଇନି। ଭବନାଥ ଭାବିଲେ, ହେଲା କଣ? ନେରୁଦି ନିଜ ଆଖିରେ ଚଂଚଳତା ଆଣି ଓଠରେ ହସ ଫୁଟେଇ ମୁଣ୍ଡ ଉପରକୁ ଓଢ଼ଣା ଭଳି ହାତକୁ

କରି ଥରେ ନାଚିଗଲେ। ଲେଭିସ୍କି 'କଲ୍ ବଅଏ'। ଭବନାଥଙ୍କ ମାନସିକ ପରିସୀମା ଭିତରେ 'କଲ୍‌ଗାର୍ଲ' ପର୍ଯ୍ୟନ୍ତ କଥା ଥିଲା। ହଠାତ୍ ବଅଏ କଥା କାନରେ ପଡ଼ିଲାଠୁଁ ବହୁ ଅପ୍ରାସଙ୍ଗିକ, ଅଦ୍ଭୁତ ସ୍ମୃତିଗୁଡ଼ିକ ଆପେ ଆପେ ରୋମନ୍ଥିତ ହୋଇଗଲା। ଶିଶି ଏଇଥି ପାଇଁ ବୋଧହୁଏ କହୁଥିଲା,' ଷ୍ଟକ୍‌ହୋମ୍‌ରେ ମୋ କାନ୍ଧଉପରେ ହାତ ରଖି ଚାଲିଲେ, ବାହୁ ବେଷ୍ଟନୀ ଭିତରେ ସହସ୍ର ଚୁମା ଖାଇଲେ ମଧ ଲୋକେ ସନ୍ଦେହ କରିବେନି। କିନ୍ତୁ ଫୋଗଲ ସାଙ୍ଗରେ ଥରେ ସମୁଦ୍ର କୂଳ ଆଡ଼େ ବା ରଙ୍ଗା ବଗିଚା ଆଡ଼େ ବୁଲି ଆସିଲେ ସମସ୍ତଙ୍କ ଆଖି ଖୋଷିହେଇ ଯିବ।' ଭିତିରିଆ କିଛି ନିଶ୍ଚୟ ଅଛି। ଭବନାଥ ପାସେଞ୍ଜର ଟ୍ରେନ୍‌ରେ ଅବନ୍ତୀଙ୍କ ପାଖକୁ ବାଲେଶ୍ୱର ଗଲାବେଳେ ଗୋଡ଼ରେ ଘୁଙ୍ଗୁର ଲଗେଇ ସଢ଼େଇ ଦୁଇଟି ବ୍ଲାଉଜ ତଳେ ଢାକିନେଇ କୋରଡ଼ିଆ ଆଖିତଳେ କଜ୍ଜଳ ଗାରଟିଏମାନ ନାଇଦେଇ 'ଶ୍ୟାମ ନାଗର' ଗୀତ ଗାଇ ଗାଇ ଯାତ୍ରୀମାନଙ୍କ ଗାଲରେ ହାତ ମାରି ଦଉଥିବା ଏଇ ଫୋଗଲ ଗୋତ୍ରୀଙ୍କୁ ଭେଟିଚନ୍ତି। ସାଙ୍ଗେ ସାଙ୍ଗେ ପକେଟରୁ ପଇସା ବାହାର ନକଲେ ସେମାନଙ୍କ ହାତର ଗତିବିଧି ରୋକି ହେବନି। ତା ହେଲେ ଲେଭିସ୍କି ଏଭଳି ଆଉ ଗୋଟିଏ! ଭବନାଥ ନେରୁଦିଙ୍କ କଥାରେ ହସିଦେଲେ। ଆଉ କ'ଣ ବା କହିଥାନ୍ତେ।

ନେରୁଦି ଖବର ଆଣିଦେଲେ ଯେ ବିମାନର ସମୟ ନିର୍ଘଣ୍ଟରେ ପରିବର୍ତ୍ତନ ଯୋଗୁଁ ସେମାନଙ୍କୁ ତାସକେଣ୍ଟରେ ଆଉ ଦୁଇଦିନ ରହିବାକୁ ହେବ। ମଜାର କଥା। ଆଉ ଦୁଇ ଚାରୋଟି ଗୀର୍ଜାର ସ୍ଥାପତ୍ୟ ନିପୁଣତା ଦେଖିହେବ। ନେରୁଦି, ଲେଭିସ୍କି, ଭବନାଥ ଏକା ହୋଟେଲରେ ତାସକେଣ୍ଟରେ। ନେରୁଦି ଭବନାଥଙ୍କୁ ସତର୍କ କରିଦେଇଥାନ୍ତି, 'ଭବନାଥ! ଲେଭିସ୍କିଠାରୁ ସାମାନ୍ୟତମ ଇସାରା ପାଇଲେ ମୋତେ ତୁରନ୍ତ ଟେଲିଫୋନ କରିବ ବା ଯେତେ

ରାତି ହେଉ ପଛେ କବାଟ ଖୋଲି ମୋ ହୋଟେଲ ରୁମ୍‌କୁ ପଶିଆସିବ।' କଥାରେ ତାଗିଦା ଯେତିକି ନଥିଲା ରସିକତା ଥିଲା ତା ଠାରୁ ବେଶି। ଭବନାଥ କଥାର ଲଥା ଗୁଡ଼ିକ ବୁଝିବାରେ ଅସୁବିଧା ରହିଲାନି। କିନ୍ତୁ ଭିତରୁ କିଏ ଯେମିତି କହିଲା ଲେଭିସ୍କି ଇସାରା ଦେଉ ବା ନଦେଉ ମଧ୍ୟ ରାତ୍ରିରେ ନେରୁଦିର ରୁମ୍ କବାଟରେ ଠକ୍ ଠକ୍ କରି ପଶିହେବ। ହୁଏତ ନେରୁଦି ନିଜର ଆଖି ଖୋଲି ନ ଖୋଲି ଭବନାଥଙ୍କୁ ପ୍ରେମ ବନ୍ଧନୀରେ ବାନ୍ଧିନେବ। ନେରୁଦି ରାତିସାରା ଆଉ ଭବନାଥଙ୍କୁ ନିଜ ରୁମ୍‌କୁ ଫେରିବାକୁ ଦେବନି। କହିବ ମୁଁ ଲେଭିସ୍କିର ଇସାରା କଥା ମିଛରେ କହିଥିଲି। କିନ୍ତୁ ଭବନାଥ ନିଜର ସଂଭ୍ରମ ଓ ମର୍ଯ୍ୟାଦା ଛାଡ଼ିଦେଇ ସେଇ ଝଡ଼ିପଡ଼ିଥିବା ଫୁଲଟିକୁ ଗୋଟେଇବେ ବା ନେରୁଦି ପାଖରେ ନିଜକୁ ସଂପୂର୍ଣ୍ଣଭାବେ ସମର୍ପି ଦେଇ, ଟେଲିଫୋନ୍ କରି ତାକୁ ନିଜ ରୁମ୍‌କୁ ଡାକିବେ ଆଉ ବିଭିନ୍ନ ବାର୍ତ୍ତାଳାପ ଭିତରେ ରାତିଟିକୁ କଟେଇ ଦେବେ। ନେରୁଦି ଏଭଳି ଏକ ଅପେକ୍ଷାକୃତ ଶୁଷ୍କ ପ୍ରସ୍ତାବରେ ସମ୍ମତ ହେଇ ନପାରେ। ନେରୁଦିର ଉଦ୍ଦେଶ୍ୟ ହିଁ ଅଲଗା। ସେ ଜଣେଇ ଦେବାକୁ ଚାହେଁ ଯେ ସାଧାରଣ ମରଦ ପୁଅ ଲେଭିସ୍କିର ପ୍ରେମ ନିବେଦନ ଅପେକ୍ଷା ନେରୁଦି ଶତ ଗୁଣରେ ଯୋଗ୍ୟା। ଭବନାଥଙ୍କ ପାଇଁ ଉଭୟ ଲେଭିସ୍କି ଓ ନେରୁଦି ବୃନ୍ତଚ୍ୟୁତ ପୁଷ୍ପଭଳି ଅଗ୍ରାହ୍ୟ। ବୃନ୍ତରେ ଥିଲେ ମଧ୍ୟ ଭବନାଥ କରନ୍ତେ ବା କ'ଣ? ଏଠି ପ୍ରେମର ସଉଦା ବିକା କିଣା କରିବା ପାଇଁ ତ ସେ ସୋଭିଏତ ଭ୍ରମଣରେ ଆସିନାହାନ୍ତି। ଏଠି ଭବନାଥ ଭବନାଥ ନୁହନ୍ତି ବା ନେରୁଦି ନେରୁଦି ନୁହଁନ୍ତି। ଦୁଇଟି ସାର୍ବଭୌମ ଦେଶର ପବିତ୍ର ସଂପର୍କ। ଦୁଇଟି ସଂସ୍କୃତି ଓ ପରଂପରାର ମିଳନ ହିଁ ଭାରତ ଉତ୍ସବର ପ୍ରଧାନ ଲକ୍ଷ୍ୟ। ଭବନାଥ ଓ ନେରୁଦି, ଏହି ମହାମିଳନର ନିମିତ୍ତ ମାତ୍ର। ଏ ମିଳନ ଦୈହିକ ନୁହେଁ।

କାବ୍ୟିକ ଓ ଭାବଗତ। ଭବନାଥଙ୍କୁ ଏକଥା ଅଛପା ନଥିଲା। ନେରୁଦି ମାତ୍ର ଜଣେ ଗାଇଡ୍ ଆଉ ଭବନାଥ ଆନ୍ତର୍ଜାତିକ ଚିତ୍ରଶିଳ୍ପୀ। ଭାରତ ସରକାରଙ୍କ ଡ଼ିଜାଇନର୍।

ଏରୋଫ୍ଲୋଟ ବିମାନ ମସ୍କୋ ଛାଡ଼ିବା କାର୍ଯ୍ୟକ୍ରମ ଆହୁରି ପଛେଇଲା। ନେରୁଦି, ଭବନାଥଙ୍କୁ ଅନୁମତି ମାଗି ତାସକେଣ୍ଟ ପାଖଗାଁରେ ରହୁଥିବା ତାଙ୍କ ପୁଅ ଘରକୁ ଯିବାପାଇଁ ବାହାରିଲେ। ଭବନାଥଙ୍କୁ ଲୁଚେଇ ଲୁଚେଇ ନେରୁଦି ବହୁତ ଖେଳଣା, ଲୁଗାପଟା କିଣାକିଣି କରିସାରିଛନ୍ତି। ନେରୁଦି ଜାୟା ଭୂମିକାରେ ନିଜକୁ ସଜେଇ ସଜେଇ ଭବନାଥଙ୍କ ମନ କିଣି ପାରିନଥିଲେ। ଏବେ ଜନନୀ ଭୂମିକାରେ ପାଦ ଦେଉ ଦେଉ ଭବନାଥଙ୍କ ହୃଦୟରେ ନେରୁଦିଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନର ଆସନଟି ଖାଲି ହେଇଗଲା।ସରକାରୀ ଟ୍ୟାକ୍ସି ତାସକେଣ୍ଟ ହୋଟେଲରେ ଠିଆହେଇ ରହିଲା। ନେରୁଦି ଖେଳନା ଓ ଲୁଗାପଟାର ଗଣ୍ଠିଲିଟି ଧରି ପୁଅ ଗାଁକୁ ଚାଲିଲେ। ମାତୃତ୍ୱର ସ୍ନେହରେ ନେରୁଦି ନଇଁ ପଡ଼ିଲେ। ତାଙ୍କ ଆଖି କାରୁଣ୍ୟରେ ଭରିଗଲା। ବାତ୍ସଲ୍ୟ ମମତାରେ ନେରୁଦି ଟୁଲ୍ ଟୁଲ୍ ହେଇ ଉଠିଲେ। ନା ମୁହଁରେ ମେକପ୍ ଅଛି ନା ବେଶ ଭୂଷାରେ ଦୁଷ୍ଟାମି ଅଛି। ଗାଁ ହେଉଥିଲେ ଓଢ଼ଣାରେ ଢ଼ାଙ୍କି ହେଇ ପଡ଼ନ୍ତେ। ସକାଳୁ ସକାଳୁ ଟ୍ରେନ୍ ଛୁଟିଲା ଗାଁ ଅଭିମୁଖେ। ନେରୁଦି ଗଣ୍ଠିଲି ନେଇ ବସିଲେ। ମନଭିତରେ କେତେ ସ୍ୱପ୍ନ। ପୁଅ କେତେ ବଡ଼ ହେଇ ଯାଇଥିବ। ଦି ବର୍ଷ ହେଲା ଦେଖାହେଇନି। ଷ୍ଟେସନ ପ୍ଲାଟଫର୍ମ ଉପରେ ଠିଆହେଇଥିବ। ନେରୁଦି ଟ୍ରେନରୁ ଓହ୍ଲାଇଲା ସାଙ୍ଗେ ସାଙ୍ଗେ କୁଣ୍ଢେଇ ପକେଇବ। ଗଣ୍ଠିଲି ହାତରୁ ଛଡ଼େଇ ନେବ। ନେରୁଦି ପୁଅର କପାଳରେ ଚୁମାଟିଏ ଆଙ୍କିଦେବେ। ମୁଣ୍ଡରେ ଦେହରେ ହାତ ବୁଲେଇ ଆଣିବେ। ବାପରେ ଧନରେ କହିବେ। ଗଣ୍ଠିଲି ଖୋଲି ପକେଇବେ। ଜାମାଟି ହାତକୁ ବଢ଼େଇଦେବେ। ଟ୍ରେନ୍ ଛୁଟି ଚାଲିଛି।

ଶାଗୁଆ ଗହମ କ୍ଷେତ। ଗୀର୍ଜାର ଗମ୍ବୁଜ ଗୁଡ଼ିକୁ ପଛରେ ପକେଇ ଦେଇ ଗାଁ ଯେତିକି ଯେତିକି ପାଖେଇ ଆସୁଛି ମନେ ହେଉଛି ନେରୁଦିର ଥନ ଭାଙ୍ଗି ପଡୁଚି। ସେ ପୁଅକୁ କୋଳକୁ ଡାକି ଆଣୁଛନ୍ତି। ଭୁଲିଯାଉଚନ୍ତି ଅନ୍ୟ ସହଯାତ୍ରୀ ମାନଙ୍କର ଅସ୍ତିତ୍ୱ। ଭୁଲି ଯାଉଛନ୍ତି ସେ ଭାରତ ଉତ୍ସବ ପାଇଁ ବରାଦ ହେଇଥିବା ସରକାରୀ ଗାଇଡ୍। ଗାଁ ଷ୍ଟେସନ୍ ଆସିଲା। ନେରୁଦି ଟ୍ରେନ୍‌ରୁ ଓହ୍ଲେଇଲେ। ପୁଅକୁ ଖବର ଦେଇନାହାନ୍ତି ପୁଅ ଆସନ୍ତା କିପରି। ଛୁଆଟା, ମୋ ଧନଟା। ବୁଢ଼ିଟିଏ ହେଲିଣି ନିଜେ ପହଞ୍ଚି ପାରିବିନି ଯେ ପୁଅ ନେବାକୁ ଆସିବ। ପୁଅ ମୋର ଭଲରେ ଥାଉ। ଗଣ୍ଠିଲି ଧରି ନେରୁଦି ଚାଲିଲେ ପୁଅ ଘରକୁ। କାହିଁ ଝରକା ବାଟେ ବି ପୁଅ ଦେଖିପାରୁନି। ସାହି ଗଳି ଦେଇ ଫାଟକ ପାଖରେ ପହଞ୍ଚିଲେ। ଦେଖିଲେ ବଗିଚାରେ ଛୁଆଟିଏ ଗୁରୁଣ୍ଡୁଚି। ଏଇତ ମୋ ନାତି ମୋ କୁଳର ସନ୍ତକ, ପ୍ରଜାପତି ସବୁ ଉଡ଼ିଗଲେ କ'ଣ ହେଲା ନାତି ବଂଚିଥିଲେ ଶହ ଶହ ଫୁଲ ମଧୁ ଚୁଷେଇବା ପାଇଁ ମୋ ନାତି ପ୍ରଜାପତି ପାଖକୁ ଉଡ଼ି ଆସିବେ। ଢେଢେର ଚେହେରା ଆଣିଛି। ନେରୁଦିଙ୍କ ହୃଦୟ ଭିତରେ ଘାଣ୍ଟି ହେଇଗଲା କେତେକ ଅଲୋଡ଼ା ସ୍ମୃତି। ଗଣ୍ଠିଲି ଅଳପ ଖୋଲି ଦେଖିଲେ ଖେଳନା ସବୁ ଠିକ୍ ଅଛି। ଭାବିଲେ ପାଦ ଚାପି ଚାପି ଯିବେ। ନାତିକୁ କୋଳ କରିପକେଇବେ। ତାର କଅଁଳିଆ ଗାଲରେ ଚୁମା ଦେବେ। ହାତରେ କଣ୍ଢେଇ ଧରେଇ ଦେବେ ତା ପରେ ପୁଅକୁ ଡ଼ାକିବେ। ଯେତେ ଯେତେ ଘର ଭିତରକୁ ଗଲେ ସେତିକି ଶୁନ୍‌ସାନ୍ ଲାଗିଲା। ନାତି ପାଖ ହେଇଛନ୍ତି କି ନାହିଁ ବୋହୂ ଝପଟି ଆସିଲା। କୁହାର ମୁଣ୍ଡିଆ ତେଣେ ଥାଉ ଟିକିଏ ହସିଲା ବି ନାହିଁ। ପଦେ କଥା କହିଲା ନାହିଁ। ଛୁଇଁ ଦେଲେ କାଳେ ଦୃଷ୍ଟି ହେଇଯିବ ବୁଢ଼ୀର, ନାତି ଟୋକାକୁ ଝାମ୍ପି ନେଲା ନିଜ କୋଳକୁ। ବୁଢ଼ୀର

ଫାକାସି ଉଡ଼ିଗଲା । ପାଟି ଖନି ମାରିଗଲା । ଥକା ହେଇ ସେମିତି ବଗିଚାର କାଠ ବେଞ୍ଚ ଉପରେ ବସିପଡ଼ିଲା । ଆଉ କହିବ କ'ଣ । ପୁଅ ଜନମ କରିଥିଲା ! ଦଶ ମାସ ଦଶ ଦିନ ଗର୍ଭରେ ଧରିଥିଲା । ଥନ ଭାଙ୍ଗି ଖିର ଖୁଆଇଥିଲା । ଟମକ ବଜେଇ ବାହାକରିଥିଲା, ସୁନ୍ଦର ଉଡିଆ ବୋହୂଆଣିଥିଲା । ଘର ଉଛୁଳି ପଡୁଥିଲା । ନାତିର ନାଁ ଦେଇଥିଲା ସ୍ୱପ୍ନ । ଭାରତୀୟ ନାଁ । କେତେ ଭାରତୀୟଙ୍କ ସଙ୍ଗରେ ଦେଖାହେଉନି ! ଏଇ ନାଁଟି ଭିତରେ ବହୁକଥା ସେ ଲୁଚେଇ ରଖିଥିଲା । ନେରୁଦି ମନରେ ଦମ୍ଭ ଆଣିଲା । ନିଜକୁ ବୁଝେଇବାକୁ ଚେଷ୍ଟାକଲା । ଆଖିରୁ ଲୁହ ପୋଛିନେଲା ରୁମାଲରେ । ଗୋଡ଼ ଦୁଇଟିରେ ଠିଆ ହେବାକୁ ଚେଷ୍ଟାକଲା । ଆଉ ନାତି ପାଖରୁ, ବୋହୂ ପାଖରୁ ମୁହଁ ଫେରାଇଲା । ବୋହୂ ଘରଭିତରୁ ବୁଢ଼ୀକୁ ଚାହିଁଛି । ନେରୁଦିର ପୁଣି କୋହ ଉଠେଇଲା । ଅଦିନ ମେଘ ଭଳି । ପଡ଼ିଶା ଘର ବାରଣ୍ଡାରେ ଥକା ମାରି ବସିଗଲା । ନେରୁଦିର ବାନ୍ଧବୀ ଏଇଠି ରହେ । ନେରୁଦି ଭାଙ୍ଗି ପଡ଼ିଚି । ବାନ୍ଧବୀ ଶାଖାର ଗରମ ଚା କପେ ଆଣି ନେରୁଦି ହାତରେ ଧରେଇ ଦେଲା ଓ ତାର ଦୁଇ ଗାଲରେ ଚୁମା ଖାଇଲା । ପୁଅ ଘରେ ନାହିଁ । ମିଲିଟାରୀ ଜରୁରୀ କାମରେ ଯାଇଛି । ଫେରିବ ସପ୍ତାହକ ପରେ । ନେରୁଦି ଆକାଶକୁ ଚାହିଁ ଦୀର୍ଘ ନିଶ୍ୱାସଟିଏ ଛାଡ଼ିଲା ଓ ଶାଖାର ଠାରୁ ବିଦାୟ ନେଇ ତାସକେଣ୍ଟ ଫେରିଲା । ହୋଟେଲରେ ନେରୁଦି ପହଞ୍ଚିବା ଖବର ଭବନାଥ ଜାଣି ପାରିଲେ । ରୁମ୍‌ରେ ନକ୍ କରିବା ଦରକାର ହେଲାନି । ପୁଅକଥା ଜାଣିବା ପାଇଁ ଭବନାଥ ରୁମ୍‌ଭିତରେ ପଶିଗଲେ । ବୁଡ଼ି ଯାଉଥିବା ମଣିଷ ଭଳି ନେରୁଦି ଭବନାଥଙ୍କୁ ଜାବୁଡ଼ି ଧରିଲା । ତାର ତୁହାକୁ ତୁହା ଉଠୁଥିବା କୋହ ବନ୍ଧ ମାନୁନଥାଏ । ଆଖିରୁ ଅଜସ୍ର ଲୁହ ଗଡ଼ି ଚାଲିଥାଏ । ପାଟିରୁ କଥା ବାହାରୁ ନଥାଏ । ମନେ ହେଉଥାଏ ନେରୁଦି ଆଗକୁ କୋଡ଼ିଏ

ବର୍ଷ ଆଗେଇ ଯାଇଛି। ଆଖି କୋରଡ଼ ପଶିଯାଇଛି। ବାହୁର ବନ୍ଧନୀ ଶିଥିଳ ହେଇଯାଇଛି। ଉନ୍ମାଦନା ନାହିଁ, ପ୍ରାଚୁର୍ଯ୍ୟ ନାହିଁ। ଅଛି କେବଳ ହତାଶାର, ବ୍ୟର୍ଥତାର କାରୁଣ୍ୟର ଅସଫଳ ଢୁଆର। ସେଦିନ ଏୟାର ପୋର୍ଟର ପ୍ରେମିକା ସାଢର ନେରୁଦି ଆଉ ଆଜିର ବୁଢ଼ୀମା ନେରୁଦି ଭିତରେ ଆକାଶ ପାତାଳ ଫରକ। ସେଇ ଆଖି, ସେଇ ଗାଲ ସେଇ ସ୍ତନ ସବୁ ଯିମିତି ମାତୃତ୍ୱର ସ୍ନେହରେ, କାରୁଣ୍ୟରେ, ବାତ୍ସଲ୍ୟ ମମତାରେ ସିକ୍ତହେଇ ଭବନାଥଙ୍କୁ ଜାବୁଡ଼ି ଧରିବାକୁ ଚେଷ୍ଟାକରୁଛି। ଆଉ ନେରୁଦି ପାଖରେ ଭବନାଥ ପୁଅଟିଏ ଭଳି ବସିରହି ମା ନେରୁଦିର ଆଖିରୁ ଲୁହ ପୋଛି ଦେବାକୁ ଚେଷ୍ଟାକରୁଛନ୍ତି।

# ଉଦ୍‌ଘାଟନ ପର୍ବ

ପ୍ରଦର୍ଶନୀ ଉଦ୍‌ଘାଟନର ତିନି ଦିନ ଆଗରୁ କୁଲଟର୍ ହ୍ୟୁସେଟ୍‌ରେ କାମ ଜବରଦସ୍ତି ବନ୍ଦ କରିଦିଆଗଲା । ଏଇଠି କୁଆଡ଼େ ଏଇମିତିକା ହୁଏ । ଭବନାଥ ବିଚାରିଲେ ଖାଲି ପ୍ରଦର୍ଶନୀ ନା ସବୁକଥା ଏଇଠି ଏମିତିକା ? ତାଙ୍କର ପାଠ ପଢ଼ାବେଳର ପରୀକ୍ଷା ଦେବା କଥା ମନେପଡ଼ିଲା । ଯିମିତି ଶେଷ ଘଣ୍ଟା ସରିବାକୁ ପାଞ୍ଚ ମିନିଟ୍ ବାକିଥିବ । ପରୀକ୍ଷା ହଲ ଭିତରେ ଏକ ଅସ୍ୱାଭାବିକ ନିରବତା ମାଡ଼ିଯିବ । ବାକ୍ୟଟିଏ ସରିଥିବ, ଆଉ କଥାଟିଏ କହିବା ପାଇଁ ବାକିଥିବା ଭିତରେ ଯେତିକି ସମୟର ନିରବତା । ଇନ୍‌ଭିଜିଲେଟର୍ ଘଣ୍ଟାକୁ ଚାହିଁବେ ଓ ବଡ଼ ପାଟିରେ ବାଣ ଫୁଟିଲା ଭଳି ସେ ଇଂରାଜୀରେ ଘୋଷଣା କରିବେ "ଫାଇଭ୍ ମିନିଟସ୍ ମୋର୍, ଷ୍ଟିଚ୍ ୟୁଅର ଆନସର୍ ବୁକ୍‌ସ୍" । ତା ପରେ ଦଳେ ପରୀକ୍ଷାର୍ଥୀ ସପାସପ୍ ଖଣ୍ଡାଭଳି କଲମ ଚଳେଇବେ । ମନେ ହେବ ଏଇ ପାଞ୍ଚମିନିଟ୍ ହିଁ ଅସଲ ପରୀକ୍ଷା । ସତେ ଯିମିତି ଏଇ ପାଞ୍ଚ ମିନିଟ୍ ହିଁ ତାଙ୍କ ଭାଗ୍ୟ ବଦଳେଇ ଦେବ । ଭବନାଥ, ଦାଦା, ରୋହିତ, ସଂଗ୍ରାମ ସମସ୍ତଙ୍କ ଏଇ ପାଞ୍ଚମିନିଟିଆ ଖାତା ଲେଖା ଅଭ୍ୟାସ । ଇନ୍‌ଭିଜିଲେଟର୍ ଖାତା ନ ଓଟାରିଲେ ତାଙ୍କ ମନ ମାନିବନି । ଶିଶି, ମାର୍ଗେରିଏତା ତାଗିଦା ଦେଲେ, 'ଭବନାଥ ! ତିନି ଦିନ ଆଗରୁ କାମ ବନ୍ଦ' । ଏମାନଙ୍କ ମୁଣ୍ଡ ଚକ୍କର ଖାଇଲା ।

କାମ ତ ସରିନଥିବ ବନ୍ଦ ହେବ କିମିତି? ଭବନାଥ, ଦାଦା, ଏମାନଙ୍କ ଜୀବଦ୍ଦଶାରେ ଏଭଳି କେବେ ଘଟିନି। ଏଣୁ ପରତେ ଯାଉନି।

ଭବନାଥ ଉପର ଠାଉରିଆ ହଁ ମାରିଲେ। ଦାଦା କହିଲେ, 'ଭବନାଥ ତମେ ଶଶିକୁ କୁହା କୁହିକରି ତିନି ଦିନ ସମୟ ମାଗ। କାମ ସରିବନି। ରକ୍ ସେଲ୍ଟର ଭିତରଟା ଆହୁରି ସ୍ପ୍ରେ ବାକି ଅଛି। ତମେ କହୁଥିଲ ସଉରା ଘରର ଭାଡ଼ି ଟଙ୍କୁ ନିଆଁ ଲଗା ଦରପୋଡ଼ା କାଠରୁ ଧୂଆଁ ବାହାରିବ। ବୋଇତାଙ୍କ ମନ୍ଦିର ଦେହରେ ଦି କୋଟିଙ୍ଗ୍ ରଙ୍ଗ ପଡ଼ିବ। ଅସରପା ହଗିଥିବା ଦାଗ ଦେଖା ଯାଉଛି। କ୍ୟାଂଟିନ କାମ ସିନା ସରିଲାଣି, ବଜାର ଛକରେ ଘୂରା କଣ୍ଢେଇର ମୋଟର୍ ବଦଳିବ। ଏତେ ଜୋରରେ ଶବ୍ଦ କରୁଛି ଯେ କାନ ଅତଡ଼ା ପଡ଼ି ଯାଉଛି। ପ୍ଲାଷ୍ଟରର ମହାତ୍ମା ଗାନ୍ଧୀ ମୂର୍ତ୍ତିଟି ବ୍ରୋଞ୍ଜ ରଙ୍ଗ ହେବ। ତାଙ୍କ ଚଷମା ମରାମତି ପାଇଁ ଦିଆଯାଇଛି। କମ୍ପାନି ସେକ୍ଟରରେ କ୍ୟାପସନ୍ ଯାକ ବାକି ଅଛି। କୁଲଟର ଡ୍ୟୁସେଟ୍ ଆଗ ପଟ ଯାକ ଲିଚୁ ଝୁଲିବ। 'ଦାଦା! ଭବନାଥ ମନେ ପକେଇ ଦେଲେ, 'ଏସବୁ ଦିନେ ଦୁଇ ଦିନର କାମ। ଆପଣ ଭୁଲିଗଲେ ଦଶଟା ଦିନ ଭିତରେ ଆମେ ପ୍ରଗତି ମଇଦାନରେ କୋଣାର୍କର ମୁଖଶାଳା ଗଢ଼ିଦେଇଥିଲେ। ଆଉ ଇଏତ ଛାର କାମ'।

ରୋହିତ କହିଲେ, 'ଏବୁଠୁଁ ଦିନରାତି କରି ସାରିଦେବା। ଫେରିଯିବା ପୂର୍ବରୁ ଦୁଇ ତିନି ଦିନ ଷ୍ଟକ୍‌ହୋମ୍‌ରେ ଘୂରାଘୂରି କରିବା। ଶିଶି କହିଛି ସମୁଦ୍ର ଭିତରେ ତିରିଶି ହଜାର ଦ୍ୱୀପ ଦେଖେଇ ନେବ। ଇଂରାଜୀରେ ତା ନାଁ କ'ଣ କହିଛି ମନେ ପଡୁନି'। ଭବନାଥ କଥା ଯୋଡ଼ିଲେ ଆର୍କିପେଲିଆଗୋ। ରୋହିତଙ୍କ ହିସାବ ନିଆରା। ଚାରିଦିନ ମାନେ ଚାରିରାତି ଚାରିଦିନ। ତା

ମାନେ ଅନ୍ୟମାନଙ୍କ ଆଠଦିନ। ପୁଣି ଦିନକୁ କାମ ବାର ଘଣ୍ଟା ହିସାବ କଲେ ଆଠ ଦିନ ଯାକ ଷୋହଳ ଦିନ ହେବ। ପ୍ରଦର୍ଶନୀମାନଙ୍କ ପାଇଁ ଏଭଳି ହିସାବ ଲାଗୁହୁଏ। ଯେମିତି ମଣିଷଙ୍କ ଯୁଗେ ହେଲେ ଦେବତାଙ୍କ ଦିନେ। ସଂଗ୍ରାମ ମତ ଦେଲା, ଆଉ ହଷ୍ଟେଲକୁ ନ ଫେରି ଏଇଠି ରହିଯିବା। ଝାଡ଼ାଝପଟର ସୁବିଧା ଅଛି। ଥଣ୍ଡା, ନ ଗାଧୋଇଲେ ବି ଚଳିବ। ମୋଠି ପରଫ୍ୟୁମ୍ ସ୍ପ୍ରେ ଅଛି। ଶିଶି କ'ଣ ସବୁବେଳେ ଗାଧାଏ? ସିଏ ହିଁ ମୋତେ ପରଫ୍ୟୁମ୍ ଶିଶିଟିଏ ଦେଇଛି।' ସଂଗ୍ରାମର ପିଲାଳିଆ କଥା। ସମସ୍ତେ ଶୁଣିଲେ ନ ଶୁଣିଲା ପରି ରହିଲେ। ଭବନାଥଙ୍କ ବହୁ ପ୍ରଦର୍ଶନୀରାତି ପ୍ଲାଇପଟା ଉପରେ ହିଁ ବିତିଯାଇଛି। ନିଦ ହେବନି। ଠିଆରେ ଠିଆରେ ରାତି ପାହିଯିବ। ସିନ୍ଦୁରା ଫାଟିବ। ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିବେ। ଠିଆରେ ଠିଆ ଯାହାହେଲେ ଗୁଣ୍ଡେ ଦିଗୁଣ୍ଡା ଗିଳି ଦିଆଯିବ। ଅପରାହ୍ନହେବ। ତାଳ ଗଛର ଛାଇ ଲମ୍ବିଯିବ ପାହାଡ଼ ଯାଏଁ। ସୂର୍ଯ୍ୟ ଅସ୍ତ ହେଇଯିବେ। କାମ ସେମିତି ଚାଲିବ। ଦାଢ଼ି ବଢ଼ି ଗାଲମୂଳ ଗଲୁ ହେବ। ଜାମାପଟା ଝାଳରେ ଗନ୍ଧେଇବ। ଲୁଣି ଫୁଟିଯିବ। କିନ୍ତୁ କାମ ଚାଲିବ। ଯେଉଁଠି ପାର ସେଇଠି ଗଡ଼ି ପଡ଼ିବାକୁ ଇଚ୍ଛା ହେବ। ଉଦ୍‌ଘାଟନ ସମୟ ଆହୁରି ବାକି। ମାର ରଙ୍ଗ, ମାର କଣ୍ଟା, ଚଟାପଟ୍ କ୍ୟାପସନ୍ ଯାକ ଲେଖିପକା। ମାରିଯାଅ, ଯାହା ହାତରେ ପଡୁଛି। ଶଳେ ପ୍ରଦର୍ଶନୀ କ'ଣ ବୁଝନ୍ତି। ସବୁବେଳେ ଏଇ ଧନ୍ଦା। ଶୋଇଥିବେ। ବେଳ ପଡ଼ିଗଲେ ଉଠିପଡ଼ି ବିଳିବିଳେଇବେ। ଶେଷ ବେଳକୁ ବ୍ରାହ୍ମଣ ଶ୍ରାଦ୍ଧରେ ଯିମିତି ହୁଏ। 'ବସ୍ତ୍ର ନାହିଁ ସୂତ୍ର ଦିଅ'। ଯାଉଣୁ ଆସୁଣୁ ପଚାରିବେ ଭବନାଥ! କାମ ସରିଯିବତ? 'ସାର ହଁ। ଆହୁରି ରାତିଏ ଅଛି। ସକାଳୁ ଦେଖିବେ ସବୁ ନାଲେ ନାଲ ହୋଇଯାଇଥିବ। ଭବନାଥ, ଦାଦା, ରୋହିତ, ସଂଗ୍ରାମ ସମସ୍ତେ ଏହି ଫାର୍ମରେ ଏଇମିତି

ଅଭ୍ୟସ୍ତ ଯେ ତିନି ଦିନ ଆଗରୁ କାମ ବନ୍ଦ କହିଲା ବେଳକୁ ସତେରେ ପରତେ ଯାଉନି। ସେମାନେ ସେହି ମୁହୂର୍ତ୍ତକ ପାଇଁ ଭୁଲି ଯାଇଥିଲେ ଷ୍ଟକ୍‌ହୋମ୍ ଭୁବନେଶ୍ୱର ତିନି ନମ୍ବର ପଡ଼ିଆ ବା ଦିଲ୍ଲୀର ପ୍ରଗତି ମଇଦାନ ନୁହେଁ। ଏଇଠି ସାଇବ ବଡ଼େଇ। ସାଇବ ପେଣ୍ଟର। ବ୍ରେକ୍‌ଫାଷ୍ଟ ସାରି ସକାଳ ନଅରୁ ଆସିବେ। ସାଢ଼େ ଦଶରେ କଫି, ଅଧ ଘଣ୍ଟା। ସାଢ଼େ ବାରରେ ଲଞ୍ଚ ଦେଢ଼ ଘଣ୍ଟା। ସାଢ଼େ ଚାରିରେ ପୁଣି ଚା, ଅଧଘଣ୍ଟା। ଛଅରେ ଛୁଟି। ହିସାବ କଲେ ନଅ ଘଣ୍ଟା। ଅସଲ କାମ ସାଢ଼େ ଛ' ଘଣ୍ଟା। କିନ୍ତୁ ଏଇ ସମୟତକ କାମ, ଖାଲି କାମ। ଅଣ୍ଟାରେ ହାତ ଦେଇ ଠିଆ ହେଇ ଆକାଶକୁ ଚାହିଁବା, ବିଡ଼ି ପିଇବା, ନିହଣ ଧାରେଇବା, ଗଳା ଖଁକାରି ମାରିବା, ପର ଭାସୁକୁଟି ହେବା ଏଇଠି ନାହିଁ। ଏଣୁ ବାସ୍ତବିକ ରୋହିତଙ୍କ ଗୁଣିତକ ଏଇଠି ପ୍ରଯୁଜ୍ୟ। ସାଢ଼େ ଛ'ଘଣ୍ଟା ମାନେ ତେର ଘଣ୍ଟା। ତା ମାନେ ତିନି ଦିନ ଛ'ଦିନ ହେଇଯିବ। ଏଣୁ ତିନିଦିନ ଆଗରୁ କାମ ବନ୍ଦ ହେଇଗଲେ ପରବାୟ ନାହିଁ। ହିସାବ ଶୁଣିଲା ପରେ କାରିଗର ଦଳକ ନିଜ ପଘାରେ ନିଜ ବନ୍ଧା ହେଲେ। ଏବେ ଏମାନେ ନାଚାର। ତିନି ଦିନ ଆଗରୁ ସତକୁ ସତ କାମ ବନ୍ଦ ହେଲା।

ଦାଦାଙ୍କ ବଳି ପଡୁଥିବା କାମର ତାଲିକା ପୂରାହେଇଗଲା। ପୁଣି ମନ ମାନୁନି। ସେଇ ପାଞ୍ଚମିନିଟିଆ ଖାତା ଲେଖା ହିସାବ। ଏନୁଏଲ୍ ପରୀକ୍ଷାରେ ଏଇତକ ହେଇ ପାରି ନ ଥିଲା ବୋଲି ଦାଦା ସପ୍ଲିମେଣ୍ଟାରି ପରୀକ୍ଷାରେ ପାସ କରିବାକୁ ବାଧ୍ୟ ହେଲେ। ଦାଦା ଭାବିଲେ ମୋଗଲ ଦରବାରରେ ଆଉ ଅଧିକ ପନ୍ଦର କୋଡ଼ିଏ ଇମିଟେସନ୍ ମାର୍ବଲ ପକେଇଥାନ୍ତେ। ଏଇ କଥାର ମଧ୍ୟ ତାତ୍ପର୍ଯ୍ୟ ଅଛି। କୁଲଟର୍ ହ୍ୟୁସେଟ୍ ବାଲା ବିଚାରି ବସିଲେ ମୋଗଲ କୋର୍ଟରେ ମାର୍ବଲ କିମିତି ପଡ଼ିବ? ଖିଶି ଇଟାଲୀୟ ମାର୍ବଲର

ବର୍ଗମିଟର ହିସାବ ଯୋଡ଼ି କେତେ ଲକ୍ଷ କ୍ରୋନରରେ ପହଞ୍ଚିଲା। ଅସମ୍ଭବ। ଭବନାଥଙ୍କୁ ଡ଼ିଜାଇନ ବଦଳେଇବାକୁ ପଡ଼ିପାରେ। ଭବନାଥ କହିଲେ, 'ଇମିଟେସନ୍ ମାର୍ବଲ ପଡ଼ିବ। ମିଛି ମିଛିକା'। ଶିଶି ଷ୍ଟକ୍‌ହୋମ୍‌ର ବିଶିଷ୍ଟ ଚିତ୍ରଶିଳ୍ପୀ ଫ୍ରାନ୍‌ସିସ୍‌ଙ୍କୁ ଡ଼ାକିଦେଲେ। ଭବନାଥଙ୍କ କାରିଗର ଦଳ ଏକଥା ଜାଣି ନ ଥାନ୍ତି। ଫ୍ରାନ୍‌ସିସ୍ ଉଇନ୍‌ସର ନିଉଟନ୍ ଟିଉବ୍‌ରୁ ଅଏଲ ରଙ୍ଗ ବାହାର କରି ସଫଟ୍ ତୂଳୀରେ ମାର୍ବଲର ଡ଼ିଜାଇନ୍ ଚିତ୍ର କରିବା ଆରମ୍ଭ କଲେ। ସେ ଯିମିତି କୋଣାର୍କର ନର୍ତ୍ତକୀ ଗଢ଼ୁଛନ୍ତି। ଦିନକୁ ବେଶି ହେଲେ ତିନି ଚାରିଟା ମାର୍ବଲ। ଶିଶି ପୁଣି ହିସାବ କଲା ଏହି ଚିତ୍ରିତ ଇମିଟେସନ୍ ମାର୍ବଲ ଗୁଡ଼ିକର ଦାମ ଇଟାଲୀୟ ମାର୍ବଲ୍ ପାଖାପାଖି ହେଉଯାଉଛି। ଶିଶି ବାହାଦୁରି ଦେଖେଇବା ପାଇଁ ନିଜେ ଏ ଦାୟିତ୍ୱ ନିଜ ଉପରକୁ ନେଇଚି। ଭବନାଥ ମଜା ଦେଖୁଛନ୍ତି। ଦେଖିବା ଅଙ୍ଗୁର ଖିଆ ବୁଦ୍ଧିକୁ 'ଟୁଡ଼ା'ର କରାମତି। ଦାଦାଙ୍କ ଦେହ ସହିଲାନି। ହାତ ଖଲଖାଲ ହେଲା 'ଭବନାଥ! ଚାଲ ମାର୍ବଲିଙ୍ଗ୍ ଆରମ୍ଭ କରିଦେବା। ଫ୍ରାନସିସ୍ ଧନ୍ଦା ଚଳିବନି।' ତା ପରେ ପରେ ପ୍ଲାଷ୍ଟିକ୍‌ର ବଡ଼ ବଡ଼ ଟ୍ରେ ଆସିଲା। ରଙ୍ଗ, ତେଲ ଚାହୁଁ ଚାହୁଁ ଯୋଗାଡ଼ ହେଇଗଲା। ପାଣିରେ ତେଲ ରଙ୍ଗ ବୁଲା ହେଲା। ପାଣି ତେଲ ଯାହା ସଂପର୍କ। ରଙ୍ଗ ମିଶିଲାନି ଛେଉଡ଼ା ଖାଇଲେ। ଦାଦା କାଗଜ ପରେ କାଗଜ ପକେଇ ଧରିନେଲେ ବର୍ଣ୍ଣିଳ ସମ୍ଭାର। ଚାହୁ ଚାହୁଁ ମାର୍ବଲ କାଗଜ କୁଢ଼ ହେଇଗଲା। ସାଇବ ମାନଙ୍କ ଫାକାସି ଉଡ଼ିଗଲା। ସାରା କୁଲଟର ହ୍ୟୁସେଟ୍ ଦାଦାଙ୍କୁ ଘେରିଗଲା। କିଏ କରମର୍ଦ୍ଦନ କଲାତ କିଏ ଚୁମା ଖାଇଲା। ଦାଦା କୁରୁଳିଲେ। କଥା କୁଲଟର୍ ହ୍ୟୁସେଟ୍ ବାହାରକୁ ବ୍ୟାପିଲା। ସୁଇଡ଼ିସ୍ ରେଡ଼ିଓ ଓ ଟିଭି ବାଲା ଯନ୍ତ୍ରପାତି ଧରି ହାଜର ହେଲେ। ଗଦା ଭାଇନା ବରା ଛାଣିଲା ପରି ଦାଦା ମାର୍ବଲ ଛାଣିଲେ। ଭବନାଥ ଟିପ୍ପଣୀ

ବାଡ଼ିଲେ, 'ଆଚ୍ଛା ପାଲା ଚାଲିଲା। ଦାଦା କୁତୁ କୁତୁ ହେଲେ। ଯେତେହେଲେ ଶିକ୍ଷିତ, ପ୍ରସ୍ତାବ ଦେଲେ, ଭବନାଥ ପୁରା ପ୍ରଦର୍ଶନୀ ଘର ଚଟାଣ ମାର୍ବଲ ପକେଇଦେବା। ଏଣୁ ଅନ୍ତତଃ ମୋଗଲ ଦରବାରରେ ଆଉ ଅଧିକା ପନ୍ଦର କୋଡ଼ିଏ ଇମିଟେସେନ୍ ମାର୍ବଲ୍ ପକେଇବା ପ୍ରସ୍ତାବ ମନ୍ଦ ନୁହେଁ। ରୋହିତ ଭାବୁଥିଲେ ଠାକୁରାଣୀଙ୍କ ଚଉତରା ଉପରେ ଅଧିକା ଦି ଚାରିଟା ଗୁଜରାଟୀ ଘୋଡ଼ା ଠିଆ କରେଇ ଦେଇଥାନ୍ତେ। ଜାହାଜରେ ଟେରାକୋଟା ଘୋଡ଼ାଗୁଡ଼ିକ ସବୁ ଚୂରମାର ହେଇଯାଇଥିଲେ। ଜାପାନୀ ମାନେ ଧ୍ୱଂସ ସ୍ତୂପରୁ ହିରୋସୀମାକୁ ପୁଣିଥରେ ଗଢ଼ିଲା ପରି ରୋହିତ ଦଶ ପନ୍ଦର ଘୋଡ଼ା ସୁଦ୍ଧୁ ଖପରା ଯୋଡ଼ି ଯୋଡ଼ି ଠିଆ କରେଇଛନ୍ତି। ତାଙ୍କ ମନଟା ଖପରା ଗଦା ପାଖରେ ଲାଖିରହିଛି। ସଂଗ୍ରାମ କ୍ୟାବିନ ଭିତରର ହେମାମାଳିନୀ କଥା ଭାବୁଛି। ଟିକିଏ ସମୟ ପାଇଲେ ସେ ମରଠାକୁ ହତ୍ୟାକରି ତାର ପ୍ରିୟ ଚିତ୍ର ତାରକାଣୀକୁ ଉଦ୍ଧାର କରିବ। ଭେଦାଚଳକମ୍‌ଙ୍କ କାମ ଶେଷ, ମିଷ୍ଟର ଇଣ୍ଡିଆକୁ ଖୋଜିବା ପାଇଁ ଲୋକଙ୍କ ଉପରେ ଛାଡ଼ିଦେଇଛନ୍ତି। ସେ ଆର୍କପେଲିଆଗୋ କଥା ସୁମରୁଛନ୍ତି। ଭବନାଥ ନିଜକଥା କାହାକୁ ବା କହିବେ? ସେ ଇନ୍‌ଭିଜିଲେସନ୍‌ର ଶେଷ ପାଞ୍ଚମିନିଟ୍ କଥା ମନେ ପକେଉଛନ୍ତି। ସେ ହୁଏତ ହ୍ୟାସେଟ୍‌ରେ ଏ ମୁଣ୍ଡ ସେମୁଣ୍ଡ ଘୁରନ୍ତେ। ମନେ ହୁଅନ୍ତା ତର ସହୁନି। କେଉଁଠି ଝୁଣ୍ଟନ୍ତେ ତ କେଉଁଠି ହାବୁଡ଼ି ପଡ଼ନ୍ତେ। କହନ୍ତେ, 'ଦାଦା, ରିଫ୍ରେଶ୍ମେଣ୍ଟ ଆସିବା ବେଳ ହେଇଗଲା ଚଟାପଟ୍। ରୋହିତ, ସେତିକି ଥାଉ ମିଠା ବେଶୀ ହେଇଯାଉଛି। ସଂଗ୍ରାମ ତମ କରତ ସମ୍ଭାଳ। ପେଟ କଣା ହେଇଯିବ। ଭବନାଥଙ୍କ ମୁହଁରୁ ଟୋପା ଟୋପା ଝାଳ ନିଗିଡ଼ି ଆସନ୍ତା। ଭବନାଥ ଗଡ଼ ଜିଣିଲା ଭଳି ପାହୁଲ ପକେଇ ଇନ୍‌ଭିଜିଲେସନ୍ କରନ୍ତେ। ହ୍ୟାସେଟ୍ ବାଲା ଏ ସବୁକିଛି ଯୋଜନା ବନ୍ଦ ବାନ୍ଧ କରିଦେଲେ। ପ୍ରଦର୍ଶନୀ

ଆଉ ତିନିଦିନ ବାକି। ଆମର ଏଠି ସାଧାରଣତଃ ଏବେ ଯାଏଁ ଯାହା ଘଟି ଆସିଛି ଉଦ୍‌ଘାଟନ କରିବାକୁ ଚିଫ୍‌ଗେଷ୍ଟ ଯେତିକି ବେଳେ ଆସିବେ, ଏଇ କାରିଗର ଦଳକ ନ ଥିବେ। ସେମାନେ ପ୍ରଦର୍ଶନୀଟିକୁ ଆକଣ୍ଠ ପାନ କରିସାରିଥିବେ। ଯାହା ପାଇବା କଥା ପାଇ ଯାଇଥିବେ। ସଂସ୍କୃତି କାର୍ପେଟଦୋର ମାନଙ୍କର ଭିଡ଼ ଜମିଥିବ। ସେମାନଙ୍କ ମୁହଁରେ କୃତ୍ରିମ ହସ ଲାଗିରହିଥିବ। ସେମାନେ ଅନ୍ୟମାନଙ୍କୁ ପ୍ରତ୍ୟୟ କରାଉଥିବେ ଯେ ଏହି ପ୍ରଦର୍ଶନୀ ଗୋଟାପଣ ତାଙ୍କର। ସେମାନେ ତାର ସ୍ରଷ୍ଟା। ପାଳନକର୍ତ୍ତା ଓ ବିଧାତା। ଥର କର ଘଟଣା - ଭବନାଥ, ଦାଦା, ରୋହିତ ରାତା ରାତି ପ୍ରଦର୍ଶନୀ ପାଇଁ ମଡ଼େଲ୍ ତିଆରି କଲେ। ସକାଳୁ ଉପନିର୍ଦ୍ଦେଶକ ଆସିଲେ, ଛୁଆକୁ କୁଣ୍ଢେଇଲା ପରି ମଡ଼େଲଟିକୁ କୁଣ୍ଢେଇ ପକେଇଲେ। ସେ ଜିପ୍ ଆଗ ସିଟରେ ବସିଲେ। ଭବନାଥ, ଦାଦ, ମଡ଼େଲଟିକୁ କୋଳରେ ଧରି ଜିପ୍ ପଛପଟେ ଦାଖଲ ହେଲେ। ଆଖି କୋରଡ଼ ପଶିଯାଇଥାଏ। ରାତି ଅନିଦ୍ରାରୁ। ମଡ଼େଲ୍ ଉପସ୍ଥାପନ କରାଗଲା। ନିର୍ଦ୍ଦେଶକଙ୍କ ପୁଟୁକା ଗାଲ ଦୁଇଟି ଚିକ୍ ଚିକ୍ ଦେଖାଗଲା। ତାଙ୍କ ପାନ ଖିଆ ପାଟିଟା ଖୁସିରେ ଫାଡ଼ି ହୋଇଗଲା। ଉପନିର୍ଦ୍ଦେଶକ ବଚନିକା ଆରମ୍ଭ କଲେ। ସାର୍! ମୁଁ ରାତିଯାକ ଅନିଦ୍ରା ରହି କନ୍‌ସିଭ୍ କରିଛି'। ଭବନାଥ ଓ ଦାଦା ପଛକୁ ହାତ କରି ନିର୍ଦ୍ଦେଶକଙ୍କ ଲମ୍ବା ଟେବୁଲ କଡ଼େ ଠିଆ ହେଇଥିଲେ। ପରସ୍ପରକୁ ଚାହାଁଚୁହିଁ ହେଲେ। ମନ୍ତବ୍ୟ ଦେବା ସମ୍ଭବ ନ ଥିଲା। ଏଇଟା ଭୁବନେଶ୍ୱର ହେଇନି ଯେ ଶିଶି କହିବ 'ସାରା ଲୋକପ୍ରିୟ କଳା ପ୍ରଦର୍ଶନୀଟି ମୁଁ କନ୍‌ସିଭ୍ କରିଛି'। ଏଣୁ ତିନି ଦିନ ଆଗରୁ କାମ ବନ୍ଦ ହେଇଗଲେ ଭୟ କରିବାର କିଛି ନାହିଁ। ସନ୍ଦେହ ହେଉଛି ସତେ ଯେମିତି ବାହାଦୁରିଟା ହାତରୁ ଖସିଯିବ।

ନା! ଏଠି କିଛି ଭୟ କରିବାର ନାହିଁ। ପ୍ରଦର୍ଶନୀ ଉଦ୍‌ଘାଟନ

ଦିନ କ'ଣ କ'ଣ କରାଯିବ ଶିଶି ଭବନାଥଙ୍କ ସହିତ ପରାମର୍ଶ କରି ସ୍ଥିର କରିସାରିଛି। ସେଦିନ କାରିଗର ଦଳଙ୍କ ତାଙ୍କର ଭଲ ଲୁଗାପଟା ପିନ୍ଧିବେ। ଭବନାଥ ମଠା ଟ୍ରାଉଜର୍, କୁର୍ତା ନେଇଛନ୍ତି। ତା ଉପରେ ଦକ୍ଷିଣୀ ଦୋସଡ଼ା, ଜାମକୋଳି ରଙ୍ଗର ଧଡ଼ିଥାଇ ଦାଦାଙ୍କ ସିଲ୍କ ପଂଜାବୀ ଅଛି। ରୋହିତ ସଫାରୀ ପିନ୍ଧିବେ। ସଫାରିଟି ପାଞ୍ଚ ବର୍ଷ ତଳର। ଏ ଭିତରେ ତାଙ୍କ ପେଟଟି ବଢ଼ିଯାଇଥିବାରୁ ପେଟ ସାମନା ବୋତାମ ଗୁଡ଼ିକ ଭଲ ଭାବେ ଲଗେଇ ହେଉନି। ରୋହିତ ପୁରୀରେ ମଠା ପଂଜାବୀ ପିନ୍ଧନ୍ତି, ତା ସାଙ୍ଗକୁ କାନ୍ଧ ଉପରେ ନାଲି ଖୋର୍ଦ୍ଧା ଗାମୁଛା ବେଶ୍ ମାନେ। ଏଠିତ ସେ ପଣ୍ଡା ନୁହନ୍ତି, ଏକ ଆନ୍ତର୍ଜାତୀୟ ଚିତ୍ର ପ୍ରଦର୍ଶନୀର ଆର୍ଟିଷ୍ଟ, ଏଣୁ ନିଜେ ନିଜେ ବେଶ ପରିବର୍ତ୍ତନ ପାଇଁ ସ୍ଥିର କରିଛନ୍ତି। ଭୁବନେଶ୍ୱରରେ ଜୋତା କିଣିବା ପାଇଁ ଯେତେ କୁହାଗଲା ଶୁଣିଲେନି। କହିଲେ, 'ହଁ କି ଶୀତ!' ଷ୍ଟକ୍‌ହୋମ୍‌ରେ ପହଞ୍ଚିଲାପରେ ମନ ଘର ଧରିଲା। ଗୋଡ଼ ଫାଟି ଆଁ ହେଇଗଲା। ରୋହିତ ନିଜେ କିଣିଆଣିଛନ୍ତି ହଳେ ସ୍ପୋର୍ଟସ୍ ସୁ। ଜୋତା ନାଇଲେ ସେ ବିଚିତ୍ର ଦେଖାଯାଉଛନ୍ତି। ସଂଗ୍ରାମ କୁଲଟ୍‌ର ହ୍ୟୁସେଟ୍‌ର ଫୋଗଲ ସାଙ୍ଗେ ପଡ଼ି ସାଇବ ହେଇଯିବ ବୋଲି ଭାବୁଚି। କଳା ଜିନ୍ ପେଣ୍ଟ, ଙ୍କଳା ହାତଥିବା ବାନିଆନ୍ ତା ଉପରେ ନାଲିଆ ଓଠର ଛାପା, 'କିସ୍‌ମି' ଲେଖାହେଇଛି। କାଳେ ଭବନାଥ, ଦାଦାଙ୍କ ଆଖିରେ 'କିସ୍‌ମି' ପଡ଼ିଯିବ ତେଣୁ ତା ଉପରେ ଜହର ଜାକେଟ ଭଳି ହାତକଟା ଆଉ ଖଣ୍ଡିଏ ଧଳା ରଙ୍ଗର ପତଳା ଜାମା ପିନ୍ଧିବ ବୋଲି ଭାବିଛି। କିନ୍ତୁ ଧଳା ଜାମା ଟପି 'କିସ୍‌ମି' ଦେଖାଯିବ ନିଶ୍ଚୟ। ନୃସିଂହର ପୋଷାକରେ ବିଶେଷ କିଛି ବିଚିତ୍ରତା ନାହିଁ। ବେଗି ପେଣ୍ଟ ଓ ଧଳା ଷ୍ଟ୍ରାଇପ୍ ବାଲା ମେଘୁଆ ରଙ୍ଗର ହାପ୍ ସାର୍ଟ ଇନ୍ କରିବ। ଭେଦାଙ୍କେମ୍ ର ଫାଳଟା ଦେଖିବା କଥା।

ଗୋଟିଏ ପଟେ ଶାଗୁଆ ଜରିର ବର୍ଡ଼ର, ଅନ୍ୟପଟେ ଆତ୍ରୁରଙ୍ଗର, ଦେହ ଉପରେ ଧଳା, ହାପ୍ ସାର୍ଟ, କାନ୍ଧରେ ଦକ୍ଷିଣୀ ଚାଦର। ଚାଦର ଧରିବା ଢ଼ଙ୍ଗ ଭବନାଥଙ୍କଠାରୁ ଅଲଗା। ଭବନାଥ ଦୋସଡ଼ା ସିଧା ସିଧା କାନ୍ଧରୁ ଲମ୍ବିବ ଓ ଜାମକୋଳି ରଙ୍ଗର ଧଡ଼ି ପରିଷ୍କାର ଦେଖାଯିବ। ଭେଦାଚଲମ୍‌ର ସେତେବେଳର ଚାଦର ପକା ଢ଼ଙ୍ଗ ଏବେ ନରସିଂହ ରାଓଙ୍କ ସଙ୍ଗେ ମିଶିବ। ଉଦ୍‌ଘାଟନ ପାଇଁ ଭବନାଥ ଆପାତତଃ ଏକ ନୂଆ ଫର୍ମୁଲା ନିଶ୍ଚିତ କରିସାରିଛନ୍ତି। ଷ୍ଟକ୍‌ହୋମ୍‌ରେ ଭାରତ ଉତ୍ସବ 'ପ୍ରଦୀପ ପ୍ରଜ୍ଜ୍ୱଳନ' କରି ଉଦ୍‌ଘାଟିତ ହେଇ ସାରିଛି। ଏଣୁ ଲୋକପ୍ରିୟ କଳା ପ୍ରଦର୍ଶନୀରେ ତାର ପୁନରାବୃତ୍ତି ହେଲେ ଭବନାଥଙ୍କ ଓଜନ କମିଯିବାର ସମ୍ଭାବନା। ଏଣୁ ଯଦିଓ ଭବନାଥ ଫର୍ମୁଲା ମଧ୍ୟ ପଞ୍ଚ ମହାଭୂତ ସଂପର୍କିତ ବ୍ୟାପାର ତଥାପି ନୂଆ ଲାଗିବ। ମାଟି ଓ ପାଣି ନେଇ କାରବାର ହେବ। ମାଟିରେ ବେଦୀ ତିଆରି ହେବ। ତା ଉପରେ ନବଧାନ୍ୟରେ ମଣ୍ଡଳ କଟାଯିବ। ମଣ୍ଡଳ ଉପରେ ତାମ୍ର ପାତ୍ର ସ୍ଥାପନ କରାଯିବ। ଭବନାଥ ଅସଲ ବୁଦ୍ଧି କରି ପ୍ଲାଷ୍ଟିକ୍ ବୋତଲରେ ମହାନଦୀ ଜଳ ସିଲ୍ କରି ଆଣିଛନ୍ତି। ବାସ୍ତବିକ କଟକର ମାଟି କାରିଗର ପ୍ରଦୀପ ନିଜେ କେଉଁ ପାଣିତକ ସଂଗ୍ରହ କରିଛି। ମହାନଦୀରୁ କେଉଁ ଭରିଛି ନା ତାଙ୍କ ବାଡ଼ି କୂଅରୁ ପାଣି ଭରିଛି ସେ କଥା ତାକୁ ହିଁ ଜଣା। କହିଛି ତ ମହାନଦୀର ପବିତ୍ର ଜଳ! ପଞ୍ଚମହାଭୂତ ସବୁଠି ଏକ। ନଦୀ, ପୋଖରୀ, ଗଡ଼ିଆ, କୂଅ, ପାଇପ ଭିତରେ ବାଛବିଚାର କରି ହେବନି। ଏଠି ପାଣିରେ ପାଣି ମିଶିବ। ବାଲଟିକ୍ ସାଗରର ଜଳ ସହିତ ମହାନଦୀର ଜଳ ଗୋଟିଏ ଐତିହ୍ୟର ଆତ୍ମା ସହିତ ଅନ୍ୟ ଆତ୍ମାର, ଗୋଟିଏ ଦେଶର ଲୋକଙ୍କ ପ୍ରାଣ ସହିତ ଅନ୍ୟ ଦେଶର ଲୋକମାନଙ୍କ ପ୍ରାଣର। ସୁଇଡ଼େନ୍‌ର ସଂସ୍କୃତି ସହିତ ଭାରତର ମିଳନ ହେବ। ବାଲଟିକ୍ ରୁ ଜଳ ନେଇ

ଶିଶି ତାମ୍ର ପାତ୍ରରେ ଆଗରୁ ଭରି ଦେଇଥିବ। ବ୍ରାସୋ ଦେଇ ମଜା ହୋଇଥିବା ଲୋଟାରେ ମହାନଦୀର ଜଳ ଭର୍ତ୍ତି ହେବ। ଦାଦା ଅଞ୍ଜଳି ହସ୍ତରେ ସୁନା ଭଳି ଚକ୍ ଚକ୍ ଦିଶୁଥିବା ଲୋଟା ଧାରଣ କରି ଧୀର ମନ୍ଥର ଗତିରେ ପାଦ ପକେଇ ବେଦୀ ଆଡ଼କୁ ଆଗେଇବେ। ରୋହିତ ହୁଳହୁଳୀ ପକେଇବେ। ନୃସିଂହ ଶଙ୍ଖନାଦ କରିବ। ଭବନାଥ ବିଷ୍ଣୁସହସ୍ର ନାମ ପାଠ କରିବେ। ଦାଦା କଣ୍ଢିଲୋରେ ତିଆରି ଜଳପୂର୍ଣ୍ଣ ଲୋଟାଟି ଭାରତର ରାଷ୍ଟ୍ରଦୂତଙ୍କ କର କମଳକୁ ବଢ଼େଇଦେବେ। ଦାଦା ସମସ୍ତଙ୍କ ଦାଦା ବା ଡ଼ାଡ଼ା। ବୟୋଜ୍ୟେଷ୍ଠ ଏଣୁ ଭବନାଥ କମିଶନର ହେଲେ ମଧ ଦାଦାହିଁ ଏହି ଶୁଭକାର୍ଯ୍ୟ କରିବେ। ରାଷ୍ଟ୍ରଦୂତ ତାମ୍ର ପାତ୍ରରେ ପାଣି ଢ଼ାଳିଲାବେଳେ କୁଲଟର୍ ହ୍ୟୁସେଟ୍‌ର ନିର୍ଦ୍ଦେଶକ ବୋ, ତାଙ୍କ ଡ଼ାହାଣ ହାତ କହୁଣି ପାଖକୁ ନିଜ ଡ଼ାହାଣ ହାତରେ ଛୁଇଁ ଧରିବେ। ଶିଶି ଓ ମାର୍ଗେରିଏତା ପାଣି ଭିତରକୁ ହଳଦିଆ ଚାଉଳ ପକେଇବେ। ସଂଗ୍ରାମ ମନେ ମନେ ବିଚାରୁଥିଲା, ଏ ପ୍ରଦର୍ଶନୀ ଉଦ୍‌ଘାଟନ ନା ଶିଶିର ଶୁଭ ପରିଣୟ। ଭବନାଥଙ୍କ ଯେଉଁମାନି ଥିଲା କି ନଥିଲା ତାହା ଅବଶ୍ୟ ବିଚାର୍ଯ୍ୟ। ଭବନାଥଙ୍କ ଅସଲ ଉଦ୍ଦେଶ୍ୟ ହେଲା, ଲୋକପ୍ରିୟ କଳା ପ୍ରଦର୍ଶନୀର ଉଦ୍‌ଘାଟନ ଉତ୍ସବ ବହୁଦିନ ଧରି ମନେ ରଖିଲା ଭଳି ଘଟଣାଟିଏ ହେଉ। ପାଣି ଢ଼ଳାଢ଼ଳି କାରବାର ଭବନାଥ ଯେ ନୂଆକରି ଉଦ୍‌ଭାବନ କରିଛନ୍ତି ତା ନୁହେଁ। ସୋଭିଏତ୍ ଦେଶରେ ଭାରତ ଉତ୍ସବ ଉଦ୍‌ଘାଟନ ପାଇଁ ବେଶ ପାଣି ଢ଼ଳାଢ଼ଳି ହେଲା। ସେଇ ଏକା କଥା। ପ୍ରାଣରେ ପ୍ରାଣ, ମନରେ ମନ, ହୃଦୟରେ ହୃଦୟ, ସଂସ୍କୃତି ସହିତ ସଂସ୍କୃତିର ମିଳନ। ପ୍ରତୀକ ହେଲା ସ୍ୱଚ୍ଛ ଜଳ, ପଞ୍ଚମହାଭୂତର ଅପ୍। ଭାରତ ଉତ୍ସବ ବାଲା ବଡ଼ ବଡ଼ ପିତଳ ମାଠିଆରେ ପବିତ୍ର ଗଙ୍ଗାଜଳ ଭରି ମସ୍କୋ ନେଇଯାଉଥିଲେ। ପ୍ରସ୍ତାବ ଥିଲା, ମସ୍କୋଆ ନଦୀରେ

ଚଳନ୍ତି ପାଓ୍ୱାର ବୋଟ୍ ଉପରୁ ଗଙ୍ଗାଜଳ ଢଳାଯିବ ଓ ତାହା ମିଶିଯିବ ସୋଭିଏତ୍ ଦେଶର ଧରାଯାଉ ଗଙ୍ଗାର ପ୍ରତି ଧମନୀରେ, ଯେଉଁଠି ଦିନେ ବିପ୍ଳବୀଙ୍କ ରକ୍ତ ମିଶିଯାଇଥିଲା। ଉଭୟ ଦେଶର ବନ୍ଧୁତା ଏକ ହେଇ ବହିଯିବ, ମିଶିଯିବ ମହାମାନବର ସାଗର ନୀରେ। କିନ୍ତୁ ହେଇପାରିଲାନି। ସୋଭିଏତ୍ ଦେଶର ଜଳ ବିଶେଷଜ୍ଞ ମାନେ କହିଲେ ଗଙ୍ଗାଜଳରେ ଯେତିକି ବ୍ୟାକ୍ଟିରିଆ ଅଛି ତା ଯଦି ମସ୍କୋଆର ପବିତ୍ର ଜଳରେ ମିଶିଯାଏ ତା ହେଲେ ମସ୍କୋଆ କଳଙ୍କିତ ହୋଇଯିବ। ତାର ଧମନୀର ନାଲ ରକ୍ତ ନେଳୀ ପଡ଼ିଯିବ ଗ୍ଲାନିରେ ଭରିଯିବ ସୋଭିଏତ୍ ନଦୀ। ଶେଷରେ ଡ଼ିଂସ୍‌ଟିଲ୍ଡ୍ ପାଣି ବୋତଲ ଥୋଡ଼ାଏ କିଣାଗଲା ଓ ତାହା ଗଙ୍ଗାଜଳ ନାମ ଧାରଣ କରି ପଡ଼ିଲା ମସ୍କୋଆରେ। ପଞ୍ଚମହାଭୂତ, ଦେଶ କାଳ ପାତ୍ରର ଫରକ ନାହିଁ। ପାଣି ତ ପାଣି। ଗଙ୍ଗା ଯାହା ଥେମ୍‌ସ୍ ତାହା। ନୀଳ ଯାହା, ବାଲଟିକ୍ ମଧ ତାହା। ସାଗର ବୋଲି ବାଲଟିକ୍ ଯାହା ଟିକିଏ ଲୁଣିଆ।।

ଷ୍ଟକ୍‌ହୋମ୍‌ରେ ପାଣିର ବାଛ ବିଚାର ହେଲାନି। ବାଲଟିକ୍‌ର ଶୀତଳ ଜଳରେ ମହାନଦୀର ଉଷ୍ଣତା ମିଶିଗଲା। ବାଲଟିକ୍ ତା କୋଳରେ ଗ୍ରହଣ କରିନେଲା ମହାନଦୀର ଆତ୍ମାକୁ।

ଉଦ୍‌ଘାଟନ ସଂଧ୍ୟା ଅପରାହ୍ନର ଝଲମିଳନୀ ଠାରୁ ଆହୁରି ଚଳଚଂଚଳ ହୋଇଉଠିଲା। ଭାରତର କାରିଗରମାନଙ୍କ ପାଇଁ ଏ ସଂଧ୍ୟାଥିଲା ଅତ୍ୟନ୍ତ ମର୍ଯ୍ୟାଦା ପୂର୍ଣ୍ଣ, ଲୋଭନୀୟ ଓ ଅବିସ୍ମରଣୀୟ। କୁଲଟର୍ ହ୍ୟୁସେଟର୍ ସବା ଉପର ମହଲା ଖୋଲା ଛାତ ଉପରେ ପିପିଲି ଚାନ୍ଦୁଆ ତଳେ ଉଦ୍‌ଘାଟନୀ ଭୋଜନର ବ୍ୟବସ୍ଥା ହୋଇଥାଏ। ବହୁବିଧ ଖାଦ୍ୟ ଓ ପାନୀୟ ଟେବୁଲ ମାନଂକରେ ସଜାଯାଇଥାଏ। ଗୋଲାପ, ଅରକିଡ଼, ଟ୍ୟୁଲିପ୍ ସାଙ୍ଗକୁ ବିବିଧ ବ୍ୟଞ୍ଜନମାନଙ୍କର ବାସ୍ନା, ପରଫ୍ୟୁମରେ ଗାଧୋଇ ହେଇ ଆସିଥିବା ଅତିଥିମାନଙ୍କର

ମୃଦୁ ମୃଦୁ ଗନ୍ଧ ସବୁ ମିଶି ମାଶି ଉଦ୍‌ଘାଟନ ସଂଧ୍ୟାକୁ ରମଣୀୟ ଓ ରୋମାଞ୍ଚକର କରିଦେଇଥିଲା। ଭାରତର କାରିଗର ଦଳଙ୍କ ପାଇଁ ଟେବୁଲଟିଏ ଅଲଗା ହେଇ ଚିହ୍ନଟ ହେଇଯାଇଥିଲା। ଟେବୁଲର ଧଳା ଫର ଫର ଚାଦର ଉପରେ ସୁନେଲି ଅକ୍ଷରରେ ସ୍କ୍ରିନ କରା କାର୍ଡ଼ଟିଏ ସୂଚେଇ ଦେଉଥିଲା ହ୍ୟୁସେଟ୍ ଓ ସୁଇଡ଼ିସ୍ ଇନ୍‌ଷ୍ଟିଚ୍ୟୁଟ୍‌ର ଅତିଥେୟତାର ନିଦ୍ଦର୍ଶନ। ତାଙ୍କ ପାଇଁ ହେଇଥିବା ସ୍ୱତନ୍ତ୍ର ବ୍ୟବସ୍ଥାରେ କାରିଗରଦଳଙ୍କ ଆନନ୍ଦ କହିଲେ ନ ସରେ। ସଂଗ୍ରାମ, ରୋହିତ, ଭେଦାଚଳମ୍ ବିଭିନ୍ନ ବର୍ଣ୍ଣର ପାନୀୟ ଗୁଡ଼ିକୁ ଶିଳ୍ପୀର ଦରଦଭରା ଆଖିରେ ଦେଖିବାକୁ ଲାଗିଲେ ଓ ଦର୍ଶନ ମାତ୍ରେ ସେମାନଙ୍କ ରସନେନ୍ଦ୍ରିୟ ପ୍ରକମ୍ପିତ ହେବାକୁ ଲାଗିଲା। 'ଆଘ୍ରାଣଂ ଅର୍ଦ୍ଧ ଭୋଜନଂ' ଭଳି 'ଦର୍ଶନଂ ଅର୍ଦ୍ଧ ପାନଂ' ହେଇଗଲା। ସଂପୂର୍ଣ୍ଣ ସ୍ୱଚ୍ଛ, ଈଷତ୍ କଷାୟ, କିଞ୍ଚିତ ସ୍ୱର୍ଣ୍ଣାଭ, ପୂର୍ଣ୍ଣ ହରିଦ୍ରା, ଆରକ୍ତ ଓ ଘନକୃଷ୍ଣ ବର୍ଣ୍ଣର ପାନୀୟରେ ଭରା ବିଭିନ୍ନ ଆକୃତିର ବୋତଲ ଗୁଡ଼ିକ ଗ୍ରାଫିକ୍ ଚାର୍ଟର ଖମ୍ବ ଭଳି ତଳ ଉପର ହେଇ ଟେବୁଲ ଉପରେ ସଜଡ଼ା ହେଇଥିଲା। ସେମାନେ ଟେବୁଲ ଚାରିପଟେ ଗୁଞ୍ଜର ଭଳି ଘୁରି ବୁଲିଲେ।

ଶିଶି ଓ ମାର୍ଗେରିଏତା ରାଷ୍ଟ୍ରଦୂତ, ବୋ, ଭବନାଥ ଓ ଦାଦାଙ୍କ ପାଇଁ ଟ୍ୟୁଲିପ୍ ଫୁଲ ଭଳି ଦିଶୁଥିବା କାଚ ପାତ୍ର ଗୁଡ଼ିକରେ ସ୍ୱଚ୍ଛ ପାନୀୟ ଢ଼ାଳିଲେ। ଭବନାଥ ମନା କରିବେ କରିବେ ହେଲେ। କିନ୍ତୁ ଏ ଏକ ବିଶେଷ ସଂଧ୍ୟା। ଜୀବନରେ ଥରେ ଅଧେ ଏ ମୁହୂର୍ତ୍ତ ଆସେ କି ଆସେନା। ପ୍ରଦର୍ଶନୀର ସଫଳ କାହାଣୀ ପାଇଁ, ଭବନାଥଙ୍କ ଚମତ୍କାର ଡ଼ିଜାଇନ ଓ କାରିଗରଦଳଙ୍କ ଭଦ୍ର ଓ ମାର୍ଜିତ ବ୍ୟବହାରକୁ ମନେ ପକେଇ ସମସ୍ତେ ପାନ ପାତ୍ରରେ ପ୍ରଥମ ଚୁମା ଦେଲେ। ଚୁମା ଦେବା ଆଗରୁ କାମାସକ୍ତ ବୃଷଭ ଭଳି ଉର୍ଦ୍ଧ୍ୱନାସା ହେଇ ସମସ୍ତେ ଆଘ୍ରାଣ କଲେ ହ୍ୱାଇଟ୍ ୱାଇନ୍।

ତାପରେ ଯେଝାଙ୍କୁ ଯେଝା ଅକ୍ତିଆରେ ଛାଡ଼ି ଦିଆଗଲା । ରୋହିତ ପାନ ପାତ୍ରରେ ଢ଼କାଢ଼କିରେ ବିଶ୍ୱାସ କରନ୍ତିନି । ବୋତଲ ପରେ ବୋତଲ ସିଧା ଢ଼ାଳି ଦେଇଗଲେ ଗଳା ଭିତରେ, ଯିମିତି କିଛି ସମୟ ଆଗରୁ ରାଷ୍ଟ୍ରଦୂତ ମହାନଦୀ ଜଳ ଢ଼ାଳିଥିଲେ । ଭବନାଥଙ୍କ ଉଦ୍ଦେଶ୍ୟରେ ରୋହିତ କହିଲେ, 'ସାର୍ ! ଆମର ସିଆଡ଼ର ଅପେକ୍ଷା ଏଗୁଡ଼ିକ ଖୁବ୍ ଭଲ ଲାଗୁଛି ଦୁଇ ତିନି ବୋତଲ ପିଇଲେ ଚଳିବତ ?' ଭେଦାଚଳମ୍‌ର ପ୍ରଶ୍ନ ମଧ୍ୟ ରୋହିତଙ୍କ ପ୍ରଶ୍ନ ସହିତ ମିଶିଥିଲା । ଭବନାଥ କହିଲେ, 'ଆଜି ସାତଖୁଣ ମାପ୍ । ଚାଲୁ । ସଂଗ୍ରାମର ବକ୍ତବ୍ୟ ହେଲା, 'ବୁଢ଼ା ତ ଦିପହରୁ ପାଣି ଢ଼କାମକି ଶିଖେଇ ଦେଇଛି । ଏବେ ପୁଣି ସେଇ ଢ଼କାଢ଼କି କାରବାର' । ଦାଦା ଏତେ ବିକିଳିଆ ନୁହନ୍ତି । ତର୍ଜନୀ ମୁଦ୍ରାରେ ଟ୍ୟୁଲିପ୍ ଫୁଲଭଳି ଦିଶୁଥିବା କାଚପାତ୍ରକୁ ଧାରଣ କରି ପେଗ୍ ପରେ ପେଗ୍ ଢ଼ାଳି ଦଣ୍ଡେ ଦଣ୍ଡେ ଅପେକ୍ଷା କରି ଢ଼ୋକେ ଢ଼ୋକେ ପିଉଛନ୍ତି । ସିଲକ୍ ପଂଜାବୀ, ଦାଢ଼ି ବର୍ଣ୍ଣିଳ ଆଲୁଅ ଦାଦାଙ୍କୁ ଓମର ଖୟାମ୍ କରିଦେଇଛି । ରୋହିତ, ଭେଦାଚଳମ୍, ବାଲଟିକ୍ ଭିତରେ ବୁଡ଼ି ଯାଉଛନ୍ତି । ସୁପ୍ ପରିବେଷଣ ଆରମ୍ଭ ହେଲାଣି । ବର୍ତ୍ତମାନ କ୍ଲବକୁ ଫେରିବା ବେଳ । ରୋହିତ ଓ ଭେଦାଚଳମ୍‌ଙ୍କୁ ସୋଲଟିପେଇରେ ବାନ୍ଧି ନେଲାପରି ଭିଡ଼ାଗଲା । ତାପରେ ଦି ଚାରିଟା ଚିକେନ୍ ମିକେନ୍ ଗିଳିଦେଇ ବାହୁଡ଼ାବିଜେ ପାଇଁ ସେ ଦୁହେଁ ପ୍ରସ୍ତୁତ ହେଲେ । ହେଲେ ନୁହେଁ, ଭବନାଥ, ଦାଦା, ସଂଗ୍ରାମ, ନୃସିଂହ, ସେ ଦୁହିଁଙ୍କୁ ଟେକି ଟେକି କୁଲଟର୍ ହ୍ୟୁସେଟ୍‌ରେ ଭ୍ୟାନରେ ବସେଇ ଦେଲେ । ସେମାନେ ଭ୍ୟାନ୍‌ର ପଛସିଟରେ ତୁରୀୟ ଭାବରେ ସତିକା ମଗ୍ନ ହେଇଗଲେ ।

ଉଦ୍‌ଘାଟନ ସଂଧ୍ୟାର ପରବର୍ତ୍ତୀ କାର୍ଯ୍ୟକ୍ରମ ଆହୁରି ରୋମାଞ୍ଚକର । ସାଂଧ୍ୟ ଭୋଜନ ସରୁ ନ ସରୁଣୁ ଭାରତୀୟ ଶାସ୍ତ୍ରୀୟ ସଂଗୀତ ପରିବେଷଣ ପାଇଁ ପ୍ରଦର୍ଶନୀର ମୋଗଲ ଦରବାର

ଅଂଚଳରେ ବ୍ୟବସ୍ଥା ଆରମ୍ଭ ହେଇଗଲା। ଭବନାଥ ଓ ଦାଦା କେତେବେଳୁ ଖାଇବା ପାଖରୁ ଉଠିଯାଇଛନ୍ତି ସଂଗ୍ରାମ ଓ ନୃସିଂହ ଜାଣି ପାରିଲେନି। ଭାରତର ବିଖ୍ୟାତ ଶାସ୍ତ୍ର ସଂଗୀତଜ୍ଞ ଭୀମସେନ ଯୋଷୀ ତାଙ୍କ ଦଳକୁ ନେଇ ପହଞ୍ଚିଲେ। ବୋ, ଶିଶି, ଭବନାଥ ପାଛୋଟିନେଲେ ମୋଗଲ ଦରବାର ଆଡ଼କୁ। ଯୋଷୀ ମଞ୍ଚାସୀନ ହେଲେ। ହ୍ୟୁସେଟ୍‌ର ବିଜୁଳୀବତୀ ଗୁଡ଼ିକୁ ନିଷ୍ପ୍ରଭ କରିଦିଆଗଲା। ମଞ୍ଚର ଗୋଟିଏ କଣରେ ପିତଳ ରୁଖା ଉପରେ ଜଳି ଉଠିଲା ପ୍ରଦୀପ। ପରିବେଶ ଭାବନୀୟ ହେଇ ଉଠିଲା। ଅନ୍ଧାର ଓ ନୀରବତା କୋଳେଇ ଆଣିଲା ସମଗ୍ର ସତ୍ତାକୁ। ଭୀମସେନ ଆଖି ମୁଦିଲେ। ଗଳା ସଫା କଲେ। ତାନ୍‌ପୂରା ଗୁଞ୍ଜରିତ ହେଲା। ତାଙ୍କ ମୁଖନିଃସୃତ ଆଳାପର ମୃଦୁଗମ୍ଭୀର ଲହର ନୀରବତାକୁ କୁଞ୍ଚିତ କରିଦେଲା। ଶ୍ରାବଣର ମେଘ ମହ୍ଲାର ଭଳି ନୀରବତାର ପରସ୍ତ ଉପରେ ଦୋଳି ଖେଳିଲା ଭୀମସେନଙ୍କ ଆଳାପ। ମାତ୍ରାଧିକ ପାନ କରିଦେଇଥିବା ଧୋକେ ନୀରବତାର ଶେଯରେ ଗଡ଼ିଗଲେ। ଘୃତ ପ୍ରଦୀପର ସ୍ୱର୍ଣ୍ଣ ଆଲୋକ ଛୁଇଁ ଯାଉଥିଲା ରକ୍ତାଭ ପାନପାତ୍ରମାନଙ୍କର ଗର୍ଭକୁ। ମନେ ହେଉଥିଲା, ଯିମିତି ସେଗୁଡ଼ିକ ଘନକୃଷ୍ଣ ଆକାଶରେ ଉଙ୍କୁଟିଥିବା ତାରା। ଠିକ୍ ଏହି ସମ୍ବେଦନର ପରିବେଶ ଭିତରକୁ ବଳାକା ଭଳି ଉଡ଼ିଆସି ବସିଲା ଗୋରୀଟିଏ। ଅସଂଖ୍ୟ ତାରା ଭିତରେ ଜହ୍ନଟିଏ। ତା ଉପରେ ବି ଭାସିଗଲା ନୀରବତାର କଳା ମେଘ। ଜହ୍ନ ଆହୁରି ରୋମାଞ୍ଚକର ଦେଖାଗଲା। ଦାଦା ତାଙ୍କ ଦାଢ଼ି ଭିତରୁ ଚାହିଁଲେ ଜହ୍ନକୁ। ମନେହେଲା ଅଙ୍ଗୁର ଲତାରୁ ସଁବାଳୁଆଟି ଚାହିଁଛି ଜହ୍ନକୁ। ଜ୍ୟୋତ୍ସ୍ନା ପିଇବ।

# MÖT INDIEN

## INDIEN FESTIVAL 1987

# FOLKLIG KONST

KULTURHUSET • STOCKHOLM

22 AUGUSTI – 15 NOVEMBER 1987




ଲୋକପ୍ରିୟ କଳା ପ୍ରଦର୍ଶନୀର ପୋଷ୍ଟର ।



ସୁଇଡେନ "ଭାରତୋତ୍ସବ" ଅନ୍ତର୍ଭୁକ୍ତ ଲୋକପ୍ରିୟ କଳା ପ୍ରଦର୍ଶନୀରେ ସ୍ଥାନୀୟ ଗୋଟିଏ ଗୁଜୁରାଟୀ ଗୃହର ଦ୍ୱାରଦେଶରେ ଲେଖକ ।



କୁଲଟର୍ ହ୍ୟୁସେଟ୍: ଯେଉଁଠାରେ ଲୋକପ୍ରିୟ କଳା ପ୍ରଦର୍ଶନୀ ଅନୁଷ୍ଠିତ ହୋଇଥିଲା ।




କୁଲଟର୍ ହ୍ୟୁସେଟ୍ ସାମ୍ନା ଫୁଆରା ।




ସୁଇଡେନର ଷ୍ଟକ୍‌ହୋମ୍ ହୋଟେଲ ।



**ସଉରା ଘରେ ଲେଖକ ଓ ତାଙ୍କ ସହଯୋଗୀ ମାର୍ଗାରିଏଟା ଓ ଗିଗି ।**



**ଲୋକପ୍ରିୟ କଳା ପ୍ରଦର୍ଶନୀ ପାଇଁ କାମ କରିଥିବା ୟୁରୋପିଅ୍ ଓ ଭାରତୀୟ** କାରିଗରମାନେ ।
କାରିଗରମାନେ ।



'ଭାରତୋତ୍ସବ' ଉଦ୍‌ଘାଟନୀ ପଟୁଆରରେ ଲେଖକ ।



ସୁଇଡେନ୍‌ର ସ୍ୱର୍ଗୀୟ ପ୍ରଧାନମନ୍ତ୍ରୀ ଓଲଫ ପାମେ ଗୁଳିମାଡ଼ରେ ଯେଉଁଠି ଢଳି ପଡ଼ିଥିଲେ, ସେଇଠି ଭାରତୀୟ କାରିଗରମାନେ ।



ଯୁଦ୍ଧତରୀ 'ଭାସା' ।



'ଭାରତୋତ୍ସବ'ର ଦୁର୍ଗା ।



ଷ୍ଟକହୋମ୍‌ର ''ସିଟିହଲ୍ ଟାୱାର'' ।



ଷ୍ଟକ୍‌ହୋମ୍‌ସ୍ଥିତ 'ସିଟିହଲ୍'ର ''ଗୋଲ୍‌ଡେନ୍‌ହଲ'' (ସ୍ୱର୍ଣ୍ଣ ପ୍ରକୋଷ୍ଠ) ଯେଉଁଠାରେ ନୋବେଲ ବିଜେତାମାନେ ସମ୍ବର୍ଦ୍ଧିତ ହୁଅନ୍ତି ।



'ନିଶର ଲଢ଼ିଆ' ବିଲ୍‌ବୋର୍ଡରେ ଶତ୍ରୁ ।



ଷ୍ଟକହୋମ୍‌ର ରାଜା ବଗିଚା ।



ଗୁଜୁରାଟୀ ଘର, ଚନ୍ଦରା ଓ ସନ୍ଦରା ଘର ।



ଟୀ' କେବିନ୍ ।



ଲୋକପ୍ରିୟ କଳା ପ୍ରଦର୍ଶନୀର ଗୁଜୁରାଟୀ ଘର ।



ଲୋକପ୍ରିୟ କଳା ପ୍ରଦର୍ଶନୀର ମୋଗଲ ଦରବାର ।

